# ଜାହାନାରା ଆତ୍ମକାହାଣୀ

ଅନୁବାଦ ଓ ସମ୍ପାଦନା
**ଗଣେଶ୍ୱର ମିଶ୍ର**

ଧର୍ମଗ୍ରନ୍ଥ ଷ୍ଟୋର

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୨

ମୁଦ୍ରାକର
ଶ୍ରୀ ସତ୍ୟନାରାୟଣ ପ୍ରେସ୍
କଟକ-୨

ପ୍ରଥମ ସଂସ୍କରଣ
୧୫ ଅଗଷ୍ଟ ୧୯୭୦

ମୂଲ୍ୟ :
ବନ୍ଧାଇ : ଛଅ ଟଙ୍କା
ଅବନ୍ଧା : ପାଞ୍ଚ ଟଙ୍କା

**JAHANARA ATMAKAHANI**

**Ganeswar Misra**

Publisher
**Anant Misra**
Cuttack Students' Store
CUTTACK-2

Printer
Sri Satyanarayan Press
Cuttack-2

First Edition
15 th August 1970

PRICE
Bound—Rs. 6.00
Unbound—Rs. 5.00

# ଅନୁବାଦକର ସୂଚନା

ମୋଗଲ ସମ୍ରାଟ ଶାହଜାହାନଙ୍କ କନ୍ୟା ଜାହାନାରା ଇତିହାସର ଏକ ଅର୍ଦ୍ଧବିସ୍ମୃତ ନାମ ହେଲେ ହେଁ ଏବଂ ବାସ୍ତବ ତଥ୍ୟ ଅପେକ୍ଷା କିମ୍ବଦନ୍ତୀ ଓ ଜନଶ୍ରୁତି ତାଙ୍କୁ ଅଧିକ ଆଚ୍ଛନ୍ନ କରି ରଖିଥିଲେ ହେଁ, ସେ ଯେ ଜଣେ ଅପୂର୍ବ ଶକ୍ତିଶାଳିନୀ ନାରୀ ଥିଲେ, ତାହା ଆଜି ସ୍ପଷ୍ଟ ପ୍ରମାଣିତ ହୋଇଅଛି । ଶୈଶବରେ ମୋଗଲ ଅନ୍ତଃପୁରର ବିଳାସ ବ୍ୟସନ ମଧ୍ୟରେ ସୁଦ୍ଧା ସେ କଠୋର ଶାସ୍ତ୍ରଚର୍ଚ୍ଚା କରି ଅସାଧାରଣ ବିଦୁଷୀ ହୋଇ ପାରିଥିଲେ । ଧର୍ମଶାସ୍ତ୍ର, ଦର୍ଶନ ଓ ସାହିତ୍ୟରେ ସେ ନିପୁଣା ହୋଇଥିଲେ । ହିନ୍ଦୁଧର୍ମ ଓ ହିନ୍ଦୁଦର୍ଶନରେ ମଧ୍ୟ ତାଙ୍କର ଗଭୀର ପ୍ରବେଶ ଥିଲା । ଏପରିକି ଶାହଜାହାନଙ୍କ ଶେଷ ଜୀବନ ସାମ୍ରାଜ୍ୟଲୋଭୀ ପୁତ୍ରମାନଙ୍କ କଳହରେ ଦୁର୍ବିସହ ହୋଇ ଉଠିଥିବା ବେଳେ, ଜ୍ୟେଷ୍ଠା କନ୍ୟା ଜାହାନାରା ହିଁ ଥିଲେ ସମ୍ରାଟଙ୍କର ଏକମାତ୍ର ସାନ୍ତ୍ୱନା ।

୧୬୬୭ ଖ୍ରୀ: ରେ ବୃଦ୍ଧ ଶାହଜାହାନ ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହେବା ସମ୍ବାଦ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ କ୍ଷମତା ପାଇଁ ତାଙ୍କର ଚାରିପୁତ୍ର ଦାରା, ସୁଜା, ଆଉରଙ୍ଗଜେବ ଓ ମୁରାଦଙ୍କ ମଧ୍ୟରେ ପ୍ରବଳ ସଂଗ୍ରାମର ସୂତ୍ରପାତ ହୋଇଥିଲା । କନିଷ୍ଠା ଭଗିନୀ ରୋଶେନାରାଙ୍କ ପରି ଜାହାନାରା ଯଦି ଏହି ଗୃହଯୁଦ୍ଧରେ ଚତୁର ଆଉରଙ୍ଗଜେବଙ୍କୁ ସମର୍ଥନ କରିଥାନ୍ତେ, ତେବେ ପରବର୍ତ୍ତୀ ଜୀବନରେ ତାଙ୍କୁ ବନ୍ଦିନୀର ଯନ୍ତ୍ରଣା ଭୋଗ କରିବାକୁ ପଡ଼ି ନ ଥାନ୍ତା; ମାତ୍ର ଜାହାନାରା ଥିଲେ ଦାରାଙ୍କ ସମର୍ଥକ । ଆଉରଙ୍ଗଜେବଙ୍କ ପରି ଦାରା ଧର୍ମାନ୍ଧ ନ ଥିଲେ । ସେ ହିନ୍ଦୁ ଧର୍ମଶାସ୍ତ୍ର ଅଧ୍ୟୟନ କରିଥିଲେ ଏବଂ "ସର୍‌-ଇ-ଆସ୍‌ରାର୍‌" ( ଉପନିଷଦ୍ ସାର ସଂଗ୍ରହ ) ପ୍ରଣୟନ କରିଥିଲେ । ଏଥିପାଇଁ ତାଙ୍କୁ ରକ୍ଷଣଶୀଳ ମୁସଲମାନମାନେ ବିଧର୍ମୀର ଆଖ୍ୟା ଦେଇଥିଲେ । ସମ୍ରାଟଙ୍କ ପ୍ରିୟ ହୋଇ

ମଧ୍ୟ କ୍ଷମତା-ଯୁଦ୍ଧରେ ଦାରା ପରାଜିତ ହେଲେ । ବିଜାପୁରପ୍ରିୟ ଅନ୍ୟ ଦୁଇ ଭାଇ ସୁଜା ଓ ମୁରାଦଙ୍କୁ ଆଓରଙ୍ଗଜେବ ସହଜରେ ପରାଜିତ କଲେ । ଆଓରଙ୍ଗଜେବ ଥିଲେ ଅତ୍ୟନ୍ତ କୌଶଳୀ ଓ ଧୂର୍ତ୍ତ; ମୁସଲମାନଙ୍କ ଦୃଷ୍ଟିରେ ସେ ଥିଲେ "ଜିନ୍ଦାପୀର୍" । ସେ ଫକୀରର ପୋଷାକ ପରିଧାନ କରୁଥିଲେ ଏବଂ ସାମ୍ରାଜ୍ୟପ୍ରାପ୍ତି ନୁହେଁ, ମକ୍କା ଯାତ୍ରା ତାଙ୍କ ଲକ୍ଷ୍ୟ ବୋଲି ପ୍ରଚାର କରୁଥିଲେ । ଏକ ହସ୍ତରେ ତରବାରି, ଅନ୍ୟ ହସ୍ତରେ କୋରାଣ୍ ଓ ମସ୍ତିଷ୍କରେ ଅସାଧାରଣ ବୁଦ୍ଧି ଦ୍ୱାରା ସେ ହିଁ ଅବଶେଷରେ ମୋଗଲ ସିଂହାସନର ଅଧିକାରୀ ହୋଇ ପାରିଥିଲେ ।

ଗୃହଯୁଦ୍ଧର ପୂର୍ବରୁ ଏବଂ ପରେ, ସ୍ୱୀୟ ପକ୍ଷ ସମର୍ଥନ କରିବାକୁ ଆଓରଙ୍ଗଜେବ ଜାହାନାରାଙ୍କୁ କମ୍ ପ୍ରବର୍ତ୍ତାଇ ନ ଥିଲେ । ମାତ୍ର ଜାହାନାରା ତାଙ୍କ ନିଷ୍ପତ୍ତିରେ ଶେଷ ପର୍ଯ୍ୟନ୍ତ ଅଟଳ ରହିଲେ । ବିଜୟୀ ଆଓରଙ୍ଗଜେବ ବୃଦ୍ଧ ପିତା ଶାହଜାହାନଙ୍କୁ ଯେତେବେଳେ ଆଗ୍ରାର କାରାଗାରରେ ନିକ୍ଷେପ କଲେ, ସେତେବେଳେ ଜାହାନାରା ହିଁ ତାଙ୍କର ଏକମାତ୍ର ସଙ୍ଗିନୀ ହୋଇଥିଲେ । ମୋଗଲ ଯୁଗର ବହୁ ଅତ୍ୟାଚାରର ନୀରବ ସାକ୍ଷୀ ଥିଲେ ଜାହାନାରା । ବନ୍ଦୀ ପିତାଙ୍କ ନିକଟକୁ ଆଓରଙ୍ଗଜେବ ଦାରାଙ୍କ ଛିନ୍ନ ମୁଣ୍ଡ ପଠାଇ ଦେଇଥିଲେ । ଏସବୁ ଅତ୍ୟାଚାର ଓ ଅନାଚାରରେ ମ୍ରିୟମାଣ ଜାହାନାରା ପିତାଙ୍କ ମୃତ୍ୟୁ ପରେ, ତାଙ୍କ ପୁରାତନ ସ୍ମୃତିସବୁ ଲିପିବଦ୍ଧ କରିବାକୁ ଲାଗିଲେ । ଶେଷ ଜୀବନରେ ଏକାନ୍ତ ନିଃସଙ୍ଗ ଜାହାନାରା ନିଜକୁ ନିଜର ଦୁଃଖ କାହାଣୀ କହି ହୁଏତ ସାମାନ୍ୟ ସାନ୍ତ୍ୱନା ପାଇଥିବେ । ଏଇ ଆତ୍ମକାହାଣୀର କେତେକାଂଶ ସେ ନଷ୍ଟ କରି ଦେଇଥିଲେ । ଶାହଜାହାନଙ୍କ ମୃତ୍ୟୁପରେ ସେ ଚଉଦ ବର୍ଷ ବଞ୍ଚିଥିଲେ ଏବଂ ଶେଷ ଜୀବନରେ ହିନ୍ଦୁ ସନ୍ନ୍ୟାସିନୀମାନଙ୍କ ପରି, ଜୀବନର ଅସାରତା ଉପଲବ୍ଧି କରିଥିଲେ । ଏପରିକି ତାଙ୍କର ସକଳ ଦୁର୍ଦ୍ଦଶାର କାରଣ ଆଓରଙ୍ଗଜେବଙ୍କୁ ମଧ୍ୟ ସେ କ୍ଷମା କରିଥିଲେ ।

ଜାହାନାରା ଥିଲେ ଚିରକୁମାରୀ । ସାମ୍ରାଜ୍ୟ ପାଇଁ ବିବାଦକୁ ସଙ୍କୁଚିତ କରିବା ଉଦ୍ଦେଶ୍ୟରେ ସମ୍ରାଟ ଆକବର ମୋଗଲ ରାଜକୁମାରୀ-ମାନଙ୍କ ବିବାହ ନିଷିଦ୍ଧ କରିଥିଲେ । ମାତ୍ର ଜାହାନାରା ବୁନ୍ଦେଲର ହିନ୍ଦୁରାଜା ଛତ୍ରଶାଳଙ୍କୁ ଗଭୀର ପ୍ରେମ କରୁଥିଲେ । ବଲ୍‌କ ରାଜ୍ୟର ଅମୀର୍ ନାର

ନଜ୍‌ବତ୍ ଖାଙ୍କ ସଙ୍ଗେ ତାଙ୍କର ବିବାହ କରିବାକୁ ବାପ ଉଦ୍ୟମ କରିଥିଲେ ହେଁ ତାହା ସଫଳ ହୋଇ ନ ଥିଲା । ଜାହାନାରା ଶେଷ ପର୍ଯ୍ୟନ୍ତ ଛତ୍ରଶାଳଙ୍କ ପ୍ରତି କେତେ ଅନୁରକ୍ତ ଥିଲେ, ତାହା ତାଙ୍କ ଆତ୍ମଜୀବନୀରୁ ଜଣାଯାଏ ।

ମୋଗଲ ରାଜଦରବାରରେ ଆତ୍ମଜୀବନୀ ରଚନା ପାରସିକ ସଂସ୍କୃତିର ଅଙ୍ଗରୂପେ ବିବେଚିତ ହେଉଥିଲା । ମୋଗଲ ବଂଶର ପ୍ରତିଷ୍ଠାତା ତୈମୁର ଲେଖିଥିଲେ, 'ମାଲ୍‌ଫୁଜାତ୍-ଇ-ତୈମୁରୀ' ( ତୈମୁରଙ୍କ ଆତ୍ମଜୀବନୀ ) । ବାବର ଲେଖିଥିଲେ—'ତୁଜୁକ୍-ଇ-ବାବରୀ' ( ବାବରଙ୍କ ଘଟନାବଳୀ ) । ଆକବରଙ୍କ ଅନୁରୋଧରେ ବାବରଙ୍କ କନ୍ୟା ଗୁଲ୍‌ବଦନ୍ ବେଗମ ଲେଖିଥିଲେ, 'ହୁମାୟୁନ୍ ନାମା' ( ହୁମାୟୁନଙ୍କ କାହାଣୀ ) । 'ତୁଜୁକ୍-ଇ ଜାହାଙ୍ଗିରୀ' ମଧ୍ୟ ଜାହାଙ୍ଗିରଙ୍କ ରଚିତ ଅପୂର୍ବ ଆତ୍ମଜୀବନୀ । ମୋଗଲ ଯୁଗରେ ପ୍ରତ୍ୟେକ ରାଜସଭାରେ ରାଜ-ଲେଖକ ବା 'ଓୟାକିୟା ନବୀଶ' ଉପସ୍ଥିତ ରହୁଥିଲେ ଏବଂ ବାଦ୍‌ଶାହଙ୍କ ମୁଖନିଃସୃତ ସାମାନ୍ୟତମ କଥା ମଧ୍ୟ ଲେଖି ରଖୁଥିଲେ । ଏଥିରୁ ମୋଗଲ ଯୁଗର ବହୁ ବିରଳ ଘଟନା ସମୂହର ସନ୍ଧାନ ମିଳେ ।

ଜାହାନାରାଙ୍କ ଏଇ ଅମୂଲ୍ୟ ଆତ୍ମଜୀବନୀ ବହୁକାଳ ଅନାବିଷ୍କୃତ ଥିଲା । ୧୮୮୫ ଖ୍ରୀ: ରେ ବିଦେଶିନୀ ଆନ୍ଦ୍ରିୟା ବୁଟେନ୍‌ଶନ ଏହା ଆବିଷ୍କାର କଲେ । କାଶ୍ମୀରରୁ ଏହା ପାରସ୍ୟ ଭାଷାରେ ପ୍ରକାଶିତ ହେବାପରେ ଭାରତର ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କଲା । ମୋର ଏଇ ଓଡ଼ିଆ ଅନୁବାଦ ପାଇଁ ମୁଁ କଲିକତା ବିଶ୍ୱବିଦ୍ୟାଳୟର ପୂର୍ବତନ ଅଧ୍ୟାପକ ଡକ୍ଟର ମାଖନଲାଲ୍ ରାୟ ଚୌଧୁରୀଙ୍କ ନିକଟରେ ଏକାନ୍ତ ଋଣୀ । ଐତିହାସିକ ଡକ୍ଟର ରାୟଚୌଧୁରୀ 'ଜାହାନାରା ଆତ୍ମକାହାଣୀ'କୁ କେବଳ ବଙ୍ଗଭାଷାରେ ଅନୁବାଦ କରି ନାହାନ୍ତି, ସାଧାରଣ ପାଠକର ସୁବିଧା ପାଇଁ କେତେକ ସ୍ଥଳରେ ମୂଲ୍ୟବାନ ଟୀପ୍‌ପଣୀମାନ ପ୍ରଦାନ କରିଛନ୍ତି । ମୁଁ ଯେତେଦୂର ଜାଣେ ମୋଗଲ ଯୁଗରେ ଲିଖିତ କୌଣସି ଆତ୍ମଜୀବନୀ ଏ ଯାଏଁ ଓଡ଼ିଆରେ ପ୍ରକାଶିତ ହୋଇ ନାହିଁ । ଏ ଗ୍ରନ୍ଥ ଅନୁବାଦ କରିବାରେ ମୋର କୌଣସି ଐତିହାସିକ ଉଦ୍ଦେଶ୍ୟ ନାହିଁ । ଐତିହାସିକମାନେ ଏ ଗ୍ରନ୍ଥ

ସମ୍ପର୍କରେ ଯାହା ମତ ଦିଅନ୍ତୁ ନା କାହିଁକି, ଏହାର ଆବେଦନ କୌଣସି ଯୁଗରେ ହ୍ରାସ ହେବାର ନୁହେଁ । ସମକାଳୀନ ମୋଗଲ ରାଜପରିବାରର ବିଭବ ତଥା ଦାରିଦ୍ର୍ୟର ଏତେ ଅନ୍ତରଙ୍ଗ ଚିତ୍ର ଦ୍ୱିତ ଆଉ ନାହିଁ । ମୂଳଗ୍ରନ୍ଥର ସୌନ୍ଦର୍ଯ୍ୟ ଏ ଅନୁବାଦରେ କେତେଦୂର ସୁରକ୍ଷିତ ତାହା ଜାଣିବା ମୋ ପକ୍ଷରେ ସମ୍ଭବ ନୁହେଁ; ମାତ୍ର ସକଳ ଦୁର୍ବଳତା ସତ୍ତ୍ୱେ, ଏ ଅନୁବାଦ ପାଠକମାନଙ୍କ ହୃଦୟକୁ ସ୍ପର୍ଶ କରିବ, ଏହା ମୋର ବିଶ୍ୱାସ ।

ଅଧ୍ୟାପକ ଶ୍ରୀଯୁକ୍ତ ଅଲ୍‌ତାଫ୍ ହୋସେନ ଏଇ ଅନୁବାଦ ପାଇଁ "ଐତିହାସିକ ଦୃଷ୍ଟିରେ ଜାହାନାରା" ନିବନ୍ଧଟି ଲେଖି ମୋତେ ବାଧିତ କରିଛନ୍ତି । କଥାଶିଳ୍ପୀ ଡକ୍ଟର୍ କୃଷ୍ଣପ୍ରସାଦ ମିଶ୍ରଙ୍କ ସସ୍ନେହ ଉତ୍ସାହ ଓ ଉପଦେଶ ମୋତେ ଅନୁବାଦ କାର୍ଯ୍ୟ ସମ୍ପୂର୍ଣ୍ଣ କରିବାରେ ଯଥେଷ୍ଟ ସାହାଯ୍ୟ କରିଛି । ତାଙ୍କୁ ଏ ଗ୍ରନ୍ଥ ପ୍ରକାଶ ଅବସରରେ ଆନ୍ତରିକ କୃତଜ୍ଞତା ଜଣାଉଛି ।

ଗଣେଶ୍ୱର ମିଶ୍ର

# ଐତିହାସିକ ଦୃଷ୍ଟିରେ ଜାହାନାରା

ଜାହାନାରା ବେଗମ୍‌ଙ୍କ ମହାନ୍ ପୂର୍ବପୁରୁଷମାନେ କଳା ଓ ସଂସ୍କୃତିର କେବଳ ପୃଷ୍ଠପୋଷକ ନ ଥିଲେ, ସେମାନେ ମଧ୍ୟ ଉଚ୍ଚକୋଟୀର ଲେଖକ ଥିଲେ ଏବଂ ଜାହାନାରା, ସେମାନଙ୍କ ସାହିତ୍ୟିକ ତଥା ସାଂସ୍କୃତିକ ପରମ୍ପରାର ଉପଯୁକ୍ତ ଉତ୍ତରାଧିକାରିଣୀ ହୋଇ ପାରିଥିଲେ । ମାତୃକୂଳରେ ମଧ୍ୟ ତାଙ୍କର ଜନନୀ ମମ୍‌ତାଜ୍ ମହଲ, ପିତାମହ ଆସଫ୍ ଖାଁ, ମାତାମହୀ ଦିଓ୍ୱାନ୍‌ଜୀ ବେଗମ୍ ( ପ୍ରସିଦ୍ଧ ସାହିତ୍ୟିକ ଗିୟାସୁଦ୍ଦିନ୍ କ୍ୱାଜିନଙ୍କ କନ୍ୟା ) ପ୍ରମୁଖଙ୍କ ଉଜ୍ଜ୍ୱଳ ପ୍ରତିଭା ସଙ୍ଗେ ତାଙ୍କର ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ସଂସ୍କୃତି ଓ ପ୍ରଜ୍ଞାର ଏହି ଦୁଇ ସ୍ରୋତର ମଧୁର ସମନ୍ୱୟ ଜାହାନାରାଙ୍କ ବ୍ୟକ୍ତିତ୍ୱକୁ ଆକର୍ଷଣୀୟ କରିଥିଲା । ଜାହାନାରାଙ୍କ ବ୍ୟକ୍ତିଗତ ତଥା ରାଜନୈତିକ ଜୀବନ ବହୁ ଦୁର୍ବିପାକରେ ମ୍ରିୟମାଣ, ପୁଣି ବର୍ଣ୍ଣିୟାରଙ୍କ 'ଭ୍ରମଣ ବୃତ୍ତାନ୍ତ'ର କେତେକ ଅପ୍ରମାଣିତ ତଥା ଅସଙ୍ଗତ ତଥ୍ୟ ସାମୟିକ ଭାବରେ ତାଙ୍କର ସୁଖ୍ୟାତିକୁ ମଳିନ କରିଥିଲା । ସାମ୍ପ୍ରତିକ ଗବେଷଣା ତାଙ୍କ ଚତୁର୍ଦ୍ଦିଗରୁ କୁତ୍ସା ମେଘମାଳା ଦୂରୀଭୂତ କରି ଭାରତର ଇତିହାସରେ ତାଙ୍କୁ ସୁପ୍ରତିଷ୍ଠିତ କରିବାରେ ସଫଳ ହୋଇଅଛି ।

ଶାହଜାହାନ୍‌ଙ୍କ ଜୀବିତ ସନ୍ତାନମାନଙ୍କ ମଧ୍ୟରେ ସର୍ବ ପ୍ରଥମ ଜାହାନାରା, ୧୬୧୪ ଖ୍ରୀ: ମାର୍ଚ୍ଚ ୨୩ ତାରିଖରେ, ସମ୍ରାଟ୍ ମେଓ୍ୱାର ଅଭିଯାନରେ ବ୍ୟସ୍ତ ଥିବାବେଳେ ମେଓ୍ୱାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଶିକ୍ଷା ପ୍ରସିଦ୍ଧ କବି ତାଲିବ୍ ଅମଲିଙ୍କ ସୁଯୋଗ୍ୟା ଭଗିନୀ ଧାତ୍ରୀ-ଅନ୍-ନିଶା ଖାନମ୍‌ଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଜାହାନାରା ଇତିହାସ, ଧର୍ମଶାସ୍ତ୍ର, ଗଦ୍ୟ, ପଦ୍ୟ ଓ ଅନ୍ୟାନ୍ୟ ବହୁ ବିଷୟରେ ନିପୁଣା ହୋଇଥିଲେ । ସାହିତ୍ୟିକ ଓ ଦାର୍ଶନିକ ଆଲୋଚନାରେ ଭାଗ ନେବା ପାଇଁ ସେ ଆଗ୍ରହ ପ୍ରକାଶ କରୁଥିଲେ । ତାଙ୍କ ଶିକ୍ଷୟିତ୍ରୀଙ୍କଠାରୁ ସେ ଶାସନ ଓ ସଂଗଠନର କୌଶଳ ଶିକ୍ଷା କରିଥିଲେ ଏବଂ ମାତାଙ୍କ ମୃତ୍ୟୁପରେ ରାଜପ୍ରାସାଦକୁ ସୁଚାରୁରୂପେ ପରିଚାଳିତ କରି ପାରିଥିଲେ ।

ଜାହାନାରା ସହନଶୀଳା, ଉଚ୍ଚମନା ତଥା ଦୟାବତୀ ଥିଲେ ଏବଂ ଭାବୁକତା ତାଙ୍କ ଚରିତ୍ରକୁ ଆଚ୍ଛନ୍ନ କରିଥିଲା । ଛବିଶ ବର୍ଷ ବୟସରେ ସେ

ପୃଥିବୀ ବିଖ୍ୟାତ ଗ୍ରନ୍ଥ "ମୁନସ୍-ଉଲ୍-ଆର୍ୱା" ରଚନା କରିଥିଲେ । ଏହି ଗ୍ରନ୍ଥ ପୃଥ୍ୱୀରାଜଙ୍କ ଶାସନ ସମୟରେ ଆଜ୍‌ମିର୍‌ରେ ସୁଫି ମତବାଦ ପ୍ରତିଷ୍ଠିତ କରିଥିବା ପ୍ରସିଦ୍ଧ ସାଧକ ଖ୍ୱାଜା ମୁଇନୁଦ୍ଦିନ ଚିଶ୍‌ତିଙ୍କ ଜୀବନୀ ଓ ବାଣୀର ଏକ ବିବରଣୀ ପ୍ରଦାନ କରେ । କାବ୍ୟ-ଜଗତରେ ସେ ଯେ ଅପୂର୍ବ କୃତିତ୍ୱ ଅର୍ଜନ କରିଥିଲେ, ତାଙ୍କର କବିତା ସବୁରୁ ତାହା ପ୍ରମାଣିତ ହୁଏ ।

ଜାହାନାରା ଅପୂର୍ବ ରୂପସୀ ରମଣୀ ଥିଲେ । ବର୍ଣ୍ଣିଅର୍ ଏବଂ ଟାଭର୍ଣ୍ଣିୟୁରଙ୍କ ସମେତ ଐତିହାସିକମାନେ ତାଙ୍କର ସୌନ୍ଦର୍ଯ୍ୟ, ବୁଦ୍ଧିମତ୍ତା ତଥା ପ୍ରତିଭା ସମ୍ପର୍କରେ ନିଃସନ୍ଦେହ । ପ୍ରାଚ୍ୟ ସଂସ୍କୃତିର ପ୍ରଶଂସକ ଜାହାନାରା ୧୬୪୪ ଖ୍ରୀ: ମାର୍ଚ୍ଚ ମାସରେ ନିଜ ଜନ୍ମତିଥି ପାଳନ କରୁଥିବା ବେଳେ ତାଙ୍କ ବସ୍ତ୍ରରେ ଅଗ୍ନି ସଂଯୋଗ ଘଟିଥିଲେ ମଧ୍ୟ ସାହାଯ୍ୟ ପାଇଁ ଚିତ୍କାର କରିବାରୁ କ୍ଷାନ୍ତ ହୋଇଥିଲେ ।

ପ୍ରଥମା କନ୍ୟାଙ୍କ ପ୍ରତି ଶାହଜାହାନଙ୍କର ପ୍ରଗାଢ଼ ସ୍ନେହ ଥିଲା ଏବଂ ସେ ଜାହାନାରାଙ୍କୁ ବହୁ ଜାଗିର୍ ଓ ସମ୍ପତ୍ତି ପ୍ରଦାନ କରିଥିଲେ । ଏପରିକି ଆଉରଙ୍ଗଜେବ ମଧ୍ୟ ତାଙ୍କ ଶାସନ କାଳର ପ୍ରାରମ୍ଭରେ ଜାହାନାରାଙ୍କ ଜାଗିର୍ ପରିମାଣ ବଢ଼ାଇ ଦେଇଥିଲେ । ଜାହାନାରାଙ୍କର ସହସ୍ର ସହସ୍ର ମୁଦ୍ରା ଆୟ ହେଉଥିଲେ ମଧ୍ୟ ସେ ସାହାଯ୍ୟ, ଦାନ ଓ ଉପହାରରେ ସେହି ଅନୁପାତରେ ବ୍ୟୟ କରୁଥିଲେ । ବେଗମ୍ ସାହେବାଙ୍କ ଦାନଶୀଳତା, ସମ୍ରାଟଙ୍କ ସମ୍ମୁଖରେ ସେ ଯେଉଁ ସାମନ୍ତମାନଙ୍କ ସପକ୍ଷରେ ଯୁକ୍ତି କରୁଥିଲେ, ସେହିମାନଙ୍କ ପ୍ରଦତ୍ତ ଉପହାର ଓ ଲାଞ୍ଚର ପରିଣତି ବୋଲି ବର୍ଣ୍ଣିୟୁର ଯାହା ସୂଚାଇଛନ୍ତି, ତାହା ସମ୍ପୂର୍ଣ୍ଣ ଅମୂଳକ ।

ଶାହଜାହାନ ଏବଂ ଜାହାନାରାଙ୍କ ମଧ୍ୟରେ ଅବୈଧ ସମ୍ପର୍କ ଥିଲା ବୋଲି ବର୍ଣ୍ଣିୟୁର୍ ଯେଉଁ ଅଭିଯୋଗ କରନ୍ତି, ତାହା ତାଙ୍କର ମନ୍ଦ ଅଭି-ପ୍ରାୟର ପରିଣତି । ତାଙ୍କର ସିଦ୍ଧାନ୍ତ ଏହି ମହୀୟସୀ ମହିଳାଙ୍କ ବିରୁଦ୍ଧରେ ହିଂସା ଓ ବିଦ୍ୱେଷବଶତଃ ପ୍ରଚାରିତ ଜନରବ ଉପରେ ହିଁ ପ୍ରତିଷ୍ଠିତ । ଡକ୍ଟର ବନାରସୀ ପ୍ରସାଦ ସାକ୍‌ସେନା ଦୃଢ଼ତାର ସହିତ ଏହି ଅଭିଯୋଗକୁ ମିଥ୍ୟା ବୋଲି ପ୍ରମାଣିତ କରିଛନ୍ତି । ରାଜନୈତିକ କାରଣରୁ ଅନ୍ୟାନ୍ୟ ମୋଗଲ ରାଜକୁମାରୀଙ୍କ ପରି, ଜାହାନାରା ମଧ୍ୟ ବିବାହିତ ଜୀବନ ଯାପନ କରିବାରୁ ବଞ୍ଚିତା ହୋଇଥିଲେ ।

ଦାରାଶୁକୋଙ୍କ ସହିତ ଜାହାନାରାଙ୍କ ଘନିଷ୍ଠତା ତାଙ୍କ ପତନର କାରଣ ହୋଇଥିଲା । ଦାରାଙ୍କ ମୃତ୍ୟୁପରେ ସେ ତାଙ୍କର କନ୍ୟା ଜାହାନ୍‌ଜେବ ବାନୁ ବେଗମଙ୍କୁ ପାଳନ କରିଥିଲେ । ଦାରାଙ୍କ କନ୍ୟାଙ୍କୁ ଉପଯୁକ୍ତ ସ୍ୱୀକୃତି ଦେବା ପାଇଁ ଅନୁରୋଧ କରି ସେ ଆଉରଙ୍ଗଜେବଙ୍କୁ ପତ୍ର ଲେଖିଥିଲେ । ଆଉରଙ୍ଗଜେବଙ୍କୁ ସେ ଆଗ୍ରା ଦୁର୍ଗକୁ ଆସିବା ଲାଗି ନିମନ୍ତ୍ରଣ କରିଥିଲେ ; ମାତ୍ର ଆଉରଙ୍ଗଜେବ ଏଥିରେ ଦୁରଭିସନ୍ଧି ଥିବା ଆଶଙ୍କା କରିବାରୁ, ସାହସିନୀ ଜାହାନାରା ନିଜେ ବୁଝାମଣା ଉଦ୍ଦେଶ୍ୟରେ ଆଉରଙ୍ଗଜେବଙ୍କ ଶିବିରକୁ ଯାଇଥିଲେ ।

ଶାହଜାହାନ ଆଗ୍ରା ଦୁର୍ଗରେ ବନ୍ଦୀ ହେବାପରେ ଜାହାନାରାଙ୍କ ଜୀବନ କଠୋର ତ୍ୟାଗ, ନିଷ୍ଠା ଓ କର୍ତ୍ତବ୍ୟପରାୟଣତାର ଏକ ଆଖ୍ୟାୟିକା । ପିତାଙ୍କ ମୃତ୍ୟୁପରେ ସେ ପ୍ରାର୍ଥନା ଓ ଧର୍ମ କାର୍ଯ୍ୟରେ ତାଙ୍କ ଜୀବନର ଅବଶିଷ୍ଟ ସମୟ ଅତିବାହିତ କରିଥିଲେ । ପିତୃଭକ୍ତି, କର୍ତ୍ତବ୍ୟନିଷ୍ଠା ଓ ଆତ୍ମୋତ୍ସର୍ଗର ଜ୍ୱଳନ୍ତ ଦୃଷ୍ଟାନ୍ତ ରୂପେ ଚିରକାଳ ସେ ଇତିହାସର ପୃଷ୍ଠା ମଣ୍ଡନ କରିବେ ।

ଆଜମିରରେ ତାଙ୍କର ପ୍ରିୟ ସନ୍ଥ ଖ୍ୱାଜା ମୁଇନୁଦ୍ଦିନ୍ ଚିଶ୍ତିଙ୍କ ସମାଧି ପାର୍ଶ୍ୱରେ ତାଙ୍କୁ କବର ଦିଆ ଯାଇଥିଲା । କୌଣସି ରାଜକୀୟ ଆଭରଣରେ ତାଙ୍କ କବର ଆବୃତ ନୁହେଁ । ସବୁଜ ଦୁବାଦଳରେ ଆଚ୍ଛାଦିତ ଏହି କବର—ସଂଯୁକ୍ତ ଫଳକରେ ଯଥାର୍ଥରେ ଲେଖାଅଛି –

"ଦୁବା ବ୍ୟତୀତ ଅନ୍ୟ କିଛି ମୋ ସମାଧିକୁ ଆବୃତ ନ କରୁ । ଆମେ ଯେ ଅତି ନମ୍ର ଦୁବାଦଳ, ଏହା ହିଁ ଆମ ପାଇଁ ଯଥେଷ୍ଟ ।"

ତା ୨୯ । ୭ । ୭୯

ଆଲ୍‌ତାଫ ହୋସେନ୍
ମୁଖ୍ୟ ଅଧ୍ୟାପକ, ଇତିହାସ ବିଭାଗ
ଗଙ୍ଗାଧର ମେହେର କଲେଜ,
ସମ୍ବଲପୁର

## ଜାହାନାରାଙ୍କ ସମାଧି

ବଗାଏସ୍ବର ସବଜ୍ ନା ପୋଶଦ୍ କସେ ମଜାରେ ମରା
କେ କବ୍‌ରୋ-ପୋଷେ ଗରିବାଁ ହାମିନ୍ ଗିୟାବସ୍ ଅସ୍ତ୍ ।

ମୋ ସମାଧି ଉପରେ ତୃଣଗୁଚ୍ଛ ଭିନ୍ନ ଅନ୍ୟ ଆସ୍ତରଣ ଦିଅ ନାହିଁ ।
ଏହି ତୃଣଗୁଚ୍ଛ ହିଁ ଅଧୀନାର ସମାଧି ଆସ୍ତରଣ ହେଉ ।

। ଇତି ।

ସୁଫି ଚିଶ୍ତି-ଶିଷ୍ୟା, ଶାହଜାହାନ-ଦୁହିତା ଜାହାନାରା,
କ୍ଷଣଭଙ୍ଗୁର ଜାହାନାରା, ଅବନମିତା ଜାହାନାରା ।

ଜିଲକଦା, ୧୦୯୨ ହିଜରୀ,
( ୧୬୮୦ ଖ୍ରୀଷ୍ଟାବ୍ଦ, ଜୁଲଇ )

# ପରିଚୟ

| | |
|---|---|
| ତୈମୁର | ଭାରତ-ବିଜେତା, ସମରଖନ୍ଦର ଅମୀର । |
| ବାବର | ତୈମୁରଙ୍କ ଷଷ୍ଠ ବଂଶଧର, ପାନିପଥ-ବିଜେତା । |
| ଆକବର | ଭାରତର ଶ୍ରେଷ୍ଠ ମୋଗଲ ସମାଟ୍ । |
| ଶାହାଜାହାନ | ତାଜମହଲ-ନିର୍ମାତା ମୋଗଲ ସମ୍ରାଟ୍ । |
| ଦାରା<br>ସୁଜା<br>ଆଉରଙ୍ଗଜେବ<br>ମୁରାଦ | ଶାହଜାହାନଙ୍କ ପୁତ୍ର । |
| ସୁଲେମାନ ଶୁକୋ<br>ସିପାର ଶୁକୋ | ଦାରାଙ୍କ ପୁତ୍ର । |
| ଶାଏସ୍ତା ଖାଁ | ଅମୀର, ନୁରଜାହାନଙ୍କ ଭାଇ ଆସଫ ଖାଁ ଙ୍କ ପୁତ୍ର । ପରେ ବଙ୍ଗର ସୁବେଦାର । |
| ଖଲିଲୁଲ୍ଲା ଖାଁ | ମୋଗଲ ମନସବ୍‌ଦାର ଓ ଆଉରଙ୍ଗଜେବଙ୍କ ବନ୍ଧୁ । |
| ନଜରତ୍ ଖାଁ | ଅମୀର, ଜାହାନାରାଙ୍କ ବ୍ୟର୍ଥ ପ୍ରେମିକ, ଦାରାଙ୍କ ଶତ୍ରୁ । |
| ମୀରଜୁମ୍ଲା | ଶାହଜାହାନଙ୍କ ଅମୀର, ଆଉରଙ୍ଗଜେବଙ୍କ ଅନୁଚର, ପ୍ରଥମେ ଗୋଲକୁଣ୍ଡାର ଓ ପରେ ବଙ୍ଗଳାର ସୁବେଦାର । |
| ଆମିନ୍ ଖାଁ | ମୀରଜୁମଲାଙ୍କ ପୁତ୍ର । |
| ଛତ୍ରଶାଳ ବୁନ୍ଦେଲା<br>ଦୁଲେରା | ବୁନ୍ଦେଲାର ରାଜା ମୋଗଲ ସାମ୍ରାଜ୍ୟର ସାମନ୍ତ । |

| | |
|---|---|
| ଜୟ୍ସିଂ | ଅମ୍ବରର ରଜା । |
| ରମ ସିଂ | ଅମ୍ବର ରଜାଙ୍କ ପୁତ୍ର । |
| ଜଲ୍ ଓୟାର ଖାଁ | ପ୍ରଥମେ ଦାରଙ୍କ ଅନୁଚର, ପରେ ‘ଆଉରଙ୍ଗଜେବଙ୍କ ଅନୁଚର । |
| ସଲମ୍ ଶଟ୍ଟ | ମୋଗଲ ଯୁଗର ଅନ୍ୟତମ ଶ୍ରେଷ୍ଠ ବୀର । |
| ଯୋଧବାଈ (ମିରଯୁମ୍ ଜମାନୀ) | ଅମ୍ବରରଜ ବିହାରୀମଲ୍ଲଙ୍କ କନ୍ୟା, ଆକବରଙ୍କ ପ୍ରଧାନ ମହିଷୀ । |
| ନୁରଜାହାନ | ଜାହାଙ୍ଗୀରଙ୍କ ମହିଷୀ । |
| ତାଜ୍‌ବେଗମ | ଶାହଜାହାନଙ୍କ ମହିଷୀ । |
| ଜାହାନାର | ଶାହଜାହାନଙ୍କ କନ୍ୟା । |
| ରୋଶନ୍‌ନାର | ଶାହଜାହାନଙ୍କ କନ୍ୟା । |
| ନାଦର | ଦାରଙ୍କ ସ୍ତ୍ରୀ । |
| ଜାନୀ ବେଗମ୍ | ଦାରଙ୍କ କନ୍ୟା । |

# ପ୍ରଥମ ସ୍ତବକ

ହେ ମୃତ୍ୟୁ ! ତୁମେ ମଣିଷ ରୂପ ଧାରଣ କରି ମୋ ସମ୍ମୁଖରେ ଠିଆ ହୋଇଛ—ତୁମର ପ୍ରାଣହୀନ ଆଖିରେ ମୋତେ ଥଟ୍ଟା କରୁଛ । ତୁମର ଶୀତଳ ନିଃଶ୍ୱାସ ମୋ ମୁଖମଣ୍ଡଳକୁ ଶୀତଳତର କରୁଛି ଓ ସେଥି ସଙ୍ଗେ ସଙ୍ଗେ ମୋ ଶେଷ ଆଶା ମ୍ଳାନ ହୋଇଆସୁଛି । ଏଇ ଯେ ଦାରାର ଛିନ୍ନ ଶିର ଭୂଲୁଣ୍ଠିତ ! ପୁତ୍ରର ଛିନ୍ନ ଶିର ପିତା ଶାହଜାହାନ୍‌ଙ୍କ ନିକଟକୁ ପ୍ରେରିତ ହେଉଛି । ତାପରେ ସେଇ ଶିର ଆସୁଛି କାରାଗାରକୁ, ମୋର ନିକଟକୁ । ଅଭାଗା ହିନ୍ଦୁସ୍ଥାନ ! ଦିନ ଥିଲା, ଯେତେବେଳେ ତୁମର ନାମ ବଂଶୀର ସ୍ୱରରେ, କରତାଳର କଳରୋଳରେ ପୃଥିବୀରେ ଧ୍ୱନିତ ହେଉଥିଲା । ଯେଉଁ ରକ୍ତଧାରା ତୁମର ପୁଣ୍ୟଭୂମି ଧୋଇ ଦେଉଥିଲା, ତାହା ଆଜି ତୁମକୁ କରିଛି ଖଣ୍ଡିତ, ତୁମକୁ ଶକ୍ତିଶାଳୀ ସାମ୍ରାଜ୍ୟରେ ପରିଣତ କରି ପାରିନାହିଁ । କାହିଁକି ପାରିନାହିଁ କୁହ ତ ! ମୁଁ ମୋ ମସ୍ତକର ସୁକୋମଳ କେଶରାଶି ଛିନ୍ନ କରିଛି,—କଣ୍ଠର ହାର ତ୍ୟାଗ କରିଛି,—କିନ୍ତୁ କାହିଁ ? ଉତ୍ତର ତ ପାଇ ନାହିଁ ! ମୋ ଆଖି ଆଗରେ ଲଇଁ ଆସୁଛି ଅନ୍ଧକାର । ମୁଁ ମୋ ହୃଦୟକୁ ପ୍ରଶ୍ନ କରୁଛି—ଫେରି ଚାହୁଁଛି ଅତୀତକୁ, ତଥାପି କୌଣସି ଉତ୍ତର ମିଳି ନାହିଁ ।

ମୁଁ ଦେଖୁଛି, ଝଞ୍ଜାଗ୍ରସ୍ତ ଊର୍ମିମାଳା ପରି, ଅସଂଖ୍ୟ ସୈନ୍ୟଙ୍କର ସ୍ରୋତ, ଭାରତର ପର୍ବତ ପ୍ରାନ୍ତର ଗ୍ରାସ କରୁଛନ୍ତି ! ସେଇ ଝଞ୍ଜା ଦେଶକୁ କ୍ଷତ ବିକ୍ଷତ କରୁଛି, ଉଡ଼ାଇ ନେଉଛି ଯୁଗ ଯୁଗର ସଞ୍ଚିତ ଧନରତ୍ନ ।

ତାପରେ ଅବଶ୍ୟ ପ୍ରତିଷ୍ଠିତ ହୋଇଥିଲା ଶାନ୍ତି । ଭାରତର ପୁଣ୍ୟ ଭୂମିରେ ଗଢ଼ି ଉଠିଥିଲା ପ୍ରାସାଦମାଳା, ଦେବତାଙ୍କ ଆବାସ ପୀଠ । କିନ୍ତୁ ପୁଣି ଆସିଲା ସେଇ ଝଞ୍ଜା—ସୈନ୍ୟଙ୍କର ଅବିଶ୍ରାନ୍ତ ପଦଧ୍ୱନି । ଅବିରାମ ରକ୍ତସ୍ରୋତ !

ଆଗ୍ରା ଦୁର୍ଗର ପଦ ଧୌତ କରି ବହି ଚାଲିଛି ଯମୁନା, ସେହି ଜଳସ୍ରୋତ ରକ୍ତ ସ୍ରୋତରେ ପରିଣତ ହେଲା । ଯୁଗ ଯୁଗର ସଞ୍ଚିତ ରକ୍ତସ୍ରୋତ ବହିଚାଲିଛି ସମୁଦ୍ରକୁ—ସମୁଦ୍ରର ଜଳରାଶି ବି 'ରକ୍ତରଞ୍ଜିତ ହୋଇ ଉଠୁଛି, ରକ୍ତରାଗ ସଞ୍ଚିତ ଊର୍ମିମାଳା ଯେପରି ଊର୍ଦ୍ଧ୍ୱ ଆକାଶକୁ ଉଠି ତାରକାମାନଙ୍କ ବିରୁଦ୍ଧରେ ଆସ୍ଫାଳନ କରୁଛନ୍ତି ! ମୋ ଶିର ଉପରେ ଭାସିଯାଉଛି ମେଘପୁଞ୍ଜ । ସେହି ମେଘ ନିଃଶେଷ କରି ଦେଉଛି ସ୍ଥଳଭାଗ ଓ ଜଳଭାଗର ସମସ୍ତ ଲୋହିତାଂଶ । ବର୍ଷଣମୁଖର ମେଘରୁ ଯେପରି କେବଳ ରକ୍ତହିଁ ଝରୁଛି ।

ଏ ଧାଏଁ ବର୍ଟିଏ-ଏବିତନ— ମୁଁ ଏଇ ଆଗ୍ରା ଦୁର୍ଗରେ ବନ୍ଦୀ । ସେ ଦିନ ଯୁବରାଜ ଦାରା ଆଉରଙ୍ଗଜେବଙ୍କ ବିରୁଦ୍ଧରେ ଯୁଦ୍ଧପାଇଁ ଆଗେଇ ଯାଇଥିଲେ । ଆଜି ବି ମୁଁ ଦେଖିପାରୁଛି, ସୁବର୍ଣ୍ଣମଣ୍ଡିତ ସରୀସୃପ ପରି ଏକ ବିରାଟ ସୈନ୍ୟ ବାହିନୀ ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଅତିକ୍ରମ କରି ଦିଗନ୍ତ ଅଭିମୁଖେ ଛୁଟି ଚାଲିଛି ! ଆଜି ବି ମୁଁ ଶୁଣିପାରୁଛି, ସହସ୍ର ସହସ୍ର ହସ୍ତୀ, ଉଷ୍ଟ୍ର ଓ ଅଶ୍ୱଙ୍କର ପଦଧ୍ୱନି, ପରାକ୍ରମୀ ରାଜପୁତ ସୈନ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଯୁବରାଜ ଦାରା ତାଙ୍କର ପ୍ରିୟ ହସ୍ତୀ (୧) ଫତେଜଙ୍ଗ୍ ଉପରେ ସମାସୀନ—ସୈନ୍ୟଗଣଙ୍କ ଗହଣରେ ଯୁବରାଜ ଦାରା ଶୁକୋ ଦିଶୁଛନ୍ତି ଏକ ଆଲୋକସ୍ତମ୍ଭ ପରି ।

ହା ! ଯୁବରାଜ ଦାରାଙ୍କର ପରାଜୟର ଦୁଃସମ୍ବାଦ ଆଗ୍ରା ଦୁର୍ଗରେ ପ୍ରଚାରିତ ହେଲା । ମୁଁ ଆକୁଳ ଭାବରେ କ୍ରନ୍ଦନ କରିବାକୁ ଲାଗିଲି, କେବଳ କ୍ରନ୍ଦନ । ସେ କ୍ରନ୍ଦନ ଆଜି ବି ଶେଷ ହୋଇନି । ମୋ ଭାଇଙ୍କର କି ଭୟଙ୍କର ଦୁର୍ଭାଗ୍ୟ ! ତାଙ୍କ ନାମ ଉଚ୍ଚାରଣ କରିବା ମୋ ପକ୍ଷରେ

---

(୧) ମୋଗଲ ସମ୍ରାଟମାନଙ୍କର ହସ୍ତୀ ଓ ଅଶ୍ୱ ପ୍ରୀତି ଥିଲା ଅସୀମ । ପ୍ରତି ରାଜକୀୟ ହସ୍ତୀର ନାମକରଣ ହେଉଥିଲା । ହସ୍ତୀ—ଯୁଦ୍ଧ, ରାଜପରିବାରର ଆମୋଦ ପ୍ରମୋଦର ଏକ ଅଂଶ ଥିଲା ଏବଂ ରାଜ୍ୟ ରାଜ୍ୟ ମଧ୍ୟରେ ହସ୍ତୀ ଉପହାର ରୂପେ ପ୍ରେରିତ ହେଉଥିଲା । ପରାଜିତ ଶତ୍ରୁର ଯେଉଁ ସମ୍ପଦରାଶି ବିଜେତାଙ୍କ ହସ୍ତଗତ ହେଉଥିଲା, ହସ୍ତୀ ଥିଲା ତନ୍ମଧ୍ୟରେ ଅନ୍ୟତମ । ଆକବରଙ୍କ ହସ୍ତୀର ନାମ ଥିଲା ଫିଲ୍—ହୁ—ଫିଲ୍ହିଁ (ଅଲ୍ଲାଙ୍କ ହସ୍ତୀ), ଜାହାଙ୍ଗୀରଙ୍କ ହସ୍ତୀର ନାମ-ନୂର୍-ଇ-ଫିଲ୍ (ହସ୍ତୀର ଆଲୋକ), ଦାରା ଶୁକୋଙ୍କ ହସ୍ତୀର ନାମ ଥିଲା ଫତେଜଙ୍ଗ (ଯୁଦ୍ଧ ବିଜୟୀ) ।

ଦୋଷାବହ । ଯୁବରାଜ ଦାରା ! ତୁମ ମନରେ ଥିଲା ଅପୂର୍ବ ଶକ୍ତି । ତୁମ ଅନ୍ତରରେ ଧ୍ୱନିତ ହେଉଥିଲା ସମ୍ରାଟ ଆକବରଙ୍କ ମିଳନର ସ୍ୱର । କେବଳ ଭଗବାନ ହିଁ ଯେପରି ପୃଥିବୀର ଭାଗ୍ୟ ନିୟନ୍ତ୍ରଣ କରନ୍ତି, ସେହିପରି ସମଗ୍ର ବିଶ୍ୱକୁ ନିୟନ୍ତ୍ରଣ କରେ ଗୋଟିଏ ମାତ୍ର ବିଧାନ । ଯୁବରାଜ ଦାରା ! ତୁମର ଗୋଟିଏ ଦୁର୍ବଳତା ଥିଲା, ତୁମେ ଥିଲ ଅହଂକାରୀ । ତାହାରି ଫଳରେ ତୁମର ପତନ ହେଲା । ତୁମ ବିରୋଧୀଙ୍କର ଶକ୍ତି ଥିଲା, ଆଉରଙ୍ଗଜେବଙ୍କର ଥିଲା କୂଟନୀତି ।

ହେ ଶଠ ଆଉରଙ୍ଗଜେବ ! ତୁମକୁ ମୁଁ ଘୃଣା କରେ—ଘୃଣା ଘୃଣା କରେ । ତୁମ ପ୍ରତିଭା ଯେପରି ତୀବ୍ର, ତୁମ ହୃଦୟ ସେହିପରି ନିର୍ମମ । ତୁମର ଗୋଟିଏ ମାତ୍ର ଚିନ୍ତା—ତୁମେ ହେବ ଭାରତର ଏକଚ୍ଛତ୍ର ସମ୍ରାଟ, ମଣିଷର ଦେହ, ମନ, ଉଭୟର ଅଧୀଶ୍ୱର । ତୁମ ଆଖିରେ ଉଜ୍ଜ୍ୱଳ ହସ ଫୁଟି ଉଠୁଛି, ଆଉ ତୁମ ପାଦତଳେ ତୁମର ଶତ୍ରୁ ଦଳିତ, ଲୁଣ୍ଠିତ । ମନେ ପଡୁଛି ? ଶୈଶବର ସେହି ପରିବ୍ରାଜକଙ୍କ ଭବିଷ୍ୟତ୍ ବାଣୀ ? (୧)

ପୁଣି ମୁଁ ଶୁଣିପାରୁଛି—ଅଶ୍ୱ ଓ ହସ୍ତୀମାନଙ୍କ ପଦଧ୍ୱନି । ଏଥର କିନ୍ତୁ ସୈନ୍ୟଦଳ ଅତି କ୍ଷୁଦ୍ର । ଦାରା ପ୍ରତାରିତ, ପରାଜିତ, ବିପର୍ଯ୍ୟସ୍ତ । ଫେରି ଆସୁଛନ୍ତି ସୈନ୍ୟଗଣ । ଯୁଦ୍ଧ କ୍ଷେତ୍ରରେ ଦାରାକୁ ପରାସ୍ତ କରିନାହିଁ ଶତ୍ରୁର ଉନ୍ମୁକ୍ତ ତରବାରି—ପରାଜିତ କରିଛି ଶତ୍ରୁର ଚତୁର କୌଶଳ । ମାତ୍ର ଗୋଟିଏ ବର୍ଷ ପୂର୍ବେ ଯେଉଁ ଯୁବରାଜ ଦାରା ପିତାଙ୍କ ସମୀପରେ ସ୍ୱର୍ଣ୍ଣ-ସିଂହାସନ ଅଳଂକୃତ କରୁଥିଲେ, ସେ ଆଜି ଚାଲିଛନ୍ତି ଦିଲ୍ଲୀର ରାଜପଥରେ, ଏକ ଆଭରଣହୀନ ଅନାବୃତ ରୁଗ୍ଣ ହସ୍ତୀର ପିଠିରେ । ଦାରା ନିରାଭରଣ, ଛିନ୍ନବସ୍ତ୍ର ପରିହିତ, ଶୃଙ୍ଖଳାବଦ୍ଧ, ଦାସଠାରୁ ଆହୁରି ହୀନ । ପ୍ରଜାକୁଳ ଏ ଦୃଶ୍ୟରେ ବିଚଳିତ, ସେମାନେ ଆଉରଙ୍ଗଜେବଙ୍କୁ ଅଭିଶାପ ଦେଉଛନ୍ତି, ଅବଗୁଣ୍ଠନର ଅନ୍ତରାଳରେ କୁଳ-ବଧୂଙ୍କର ଚକ୍ଷୁ ଅଶ୍ରୁସିକ୍ତ । କିନ୍ତୁ ପ୍ରତିବାଦ କରିବ କିଏ ?

---

(୧) କଥିତ ଅଛି, ଜଣେ ପରିବ୍ରାଜକ ମୋଗଲ ରାଜବଂଶଧରଗଣଙ୍କ ହସ୍ତ ପରୀକ୍ଷା କରି ସମସ୍ତ ରାଜକୁମାରଙ୍କ ଭବିଷ୍ୟତ୍ କହିଥିଲେ । ଆଉରଙ୍ଗଜେବଙ୍କୁ କହିଥିଲେ—ତୁମେ ହେବ ତୈମୁର ବଂଶର ବିନାଶକର୍ତ୍ତା । ମୋଗଲ ସମ୍ରାଟଗଣ ଜ୍ୟୋତିଷଶାସ୍ତ୍ର ଓ ସାମୁଦ୍ରିକ ବିଦ୍ୟାରେ ବିଶ୍ୱାସ କରୁଥିଲେ । ଏପରି କି ଯୁଦ୍ଧଯାତ୍ରା ପୂର୍ବରୁ ନକ୍ଷତ୍ରର ଗତି ଉପରେ ସୈନ୍ୟଚାଳନା ନିର୍ଭର କରୁଥିଲା । ରାଜବଂଶର ସମସ୍ତ ସନ୍ତାନଙ୍କ ଜନ୍ମକୁଣ୍ଡଳୀ ଓ କୋଷ୍ଠି ପ୍ରସ୍ତୁତ ହେଉଥିଲା ।

ଆଗ୍ରା ଦୁର୍ଗର ଏକ ପ୍ରକୋଷ୍ଠ କୋଠରୀରେ ମଳିନ ଆଲୋକ ଶିଖା ପାଖରେ ବସି କମ୍ପିତ ହସ୍ତରେ ମୁଁ ଲେଖୁଛି ଏକ ଆତ୍ମକାହାଣୀ, କିନ୍ତୁ ମୋ ମନର ଗୋପନ କାହାଣୀ ଗୋପନ ହିଁ ରହୁଛି । ତା ନହେଲେ ମୁଁ ବଞ୍ଚି ରହିବି କିପରି ? ମୁଁ ସାମାନ୍ୟ ନାରୀ ମାତ୍ର ! ତଥାପି ଏଇଠି ଏଇ ନିର୍ଜନ ପରିବେଶରେ ମୁଁ ମୋ ଦୁଃଖର ସଙ୍ଗୀତ ଦେଇଯାଉଛି ବସୁନ୍ଧରାକୁ — ମୋ ଜୀବନର ଦୁଃଖ କାହାଣୀ ରଖି ଦେଇଯାଉଛି ବସୁନ୍ଧରା ନିକଟରେ ।

ମୁଁ ଭଲ ପାଉଥିଲି ମୋ ଭାଇ ଦାରାଙ୍କୁ । ମୁଁ ଥିଲି ତାଙ୍କର ଅନୁରକ୍ତ ଭଉଣୀ । ଆମର ପୂର୍ବପୁରୁଷ ଆକବରଙ୍କ ସ୍ୱପ୍ନକୁ ସଫଳ କରିବା ଥିଲା ଦାରାଙ୍କର ଅଭିପ୍ରାୟ । ସେଇ ଅମର ପୁରୁଷଙ୍କ ଅମର ଆଦର୍ଶ ଚିର ଦିନ ଉଜ୍ଜ୍ୱଳ ରହିଥାନ୍ତା ! ଅନ୍ଧକାର ଗହ୍ୱରରେ ସଞ୍ଚିତ ନିଦ୍ରିତ ଭାରତର ଧନରତ୍ନ ସମ୍ରାଟ ଆକବରଙ୍କୁ ପ୍ରଲୁବ୍ଧ କରି ପାରି ନ ଥିଲା । ଅତୀତ ଯୁଗ ଧରି ମଣିଷ ଯେଉଁ ଚିନ୍ତା କରିଥିଲା, ଯେଉଁ ସତ୍ୟ ଉପଲବ୍ଧି କରିଥିଲା, ସେଇ ସମ୍ପଦର ଉଦ୍ଧାର ପାଇଁ ଚେଷ୍ଟା କରିଥିଲେ ସମ୍ରାଟ ଆକବର । ସମ୍ରାଟ ସ୍ୱପ୍ନ ଦେଖୁଥିଲେ — ଭାରତ ପୁଣି ଫେରିଯାଉଛି ତାର ଅତୀତ ଆତ୍ମାର ସନ୍ଧାନରେ — ଯେପରି ସେ କୌଣସି ବିଦେଶୀର କ୍ରୀତଦାସ ହୋଇ ନ ପଡ଼େ । ଭାରତ ତାର ଆତ୍ମାର ସୌନ୍ଦର୍ଯ୍ୟରେ ସାମ୍ରାଜ୍ଞୀ ହୋଇଉଠିବ । ଏଇ ସୌନ୍ଦର୍ଯ୍ୟ ଦିନେ ଭାରତକୁ ନେଇ ଚାଲିଥିଲା ଭଗବାନଙ୍କ ସମୀପକୁ ।

ଯମୁନାର ଅପର ତଟରେ ମଥା ଟେକିଛି ତାଜମହଲ । ପୂର୍ଣ୍ଣିମାର ଚନ୍ଦ୍ରାଲୋକରେ ତାଜ୍ ଦେଖାଯାଉଛି ଶୁଭ୍ର ହୀରକ ଖଣ୍ଡପରି, ମୃତ୍ୟୁ-ପରୀର ପକ୍ଷପରି ଶୁଭ୍ର, ଉଜ୍ଜ୍ୱଳ । ସମାଧିରେ ଶାୟିତା ମାଆ ତାଜ୍‌ବିବିଙ୍କ କାନରେ ଏକଦା ମୃତ୍ୟୁର ଗୁଞ୍ଜରଣ ପରି ଧ୍ୱନିତ ହେଉଥିଲା କୋରାନର ପବିତ୍ର ବାଣୀ (୧) ।

ଆଜି ତାଜ୍‌ବିବି ସେ ସଂଗୀତ ଧ୍ୱନିରୁ ବଞ୍ଚିତା । ମାଆଙ୍କ ସମାଧି ପାର୍ଶ୍ୱରେ ପ୍ରଥିତ ହୋଇଛି ଦାରାଙ୍କର ରକ୍ତାକ୍ତ ଶିର ! ଆଜି ମାଆଙ୍କର ଅସ୍ଥିଖଣ୍ଡ ବି ଶୀତରେ କମ୍ପିଉଠୁଛି । ଆଜି ଯେପରି ତାଜ୍ ଦେହର ନିଦ୍ରାରେ

(୧) ସମ୍ଭ୍ରାନ୍ତ ମୁସଲମ ପରିବାରର ସମାଧି ପାର୍ଶ୍ୱରେ କୋରାଣ ଆବୃତ୍ତି କରିବା ପାଇଁ ଲୋକ ନିଯୁକ୍ତ ହେଉଥିଲେ । ସ୍ୱରଲୟ ସମନ୍ୱିତ କୋରାଣର ଆବୃତ୍ତି ଦୂରରୁ ସଙ୍ଗୀତ ଗାନ ହେଲପରି ଶୁଭେ ।

ଜଣ୍ଡିତ ରକ୍ତ ଭାବୁଛନ୍ତି—ଯେଉଁଦିନ ମୋ ପୁତ୍ରର ଶିର ସ୍କନ୍ଧଚ୍ୟୁତ ହୋଇଥିଲା, ସେଦିନ ପୃଥିବୀରେ ଧୂଳିସାତ୍ ହୋଇଥିଲା ଏକ ବିରାଟ ଆଦର୍ଶ।

ଏଇ ଦେଖ ! ତାଜମହଲର ଶୁଭ୍ର ମୀନାର ଅପରପାର୍ଶ୍ୱରେ ସନ୍ଧ୍ୟା ଉଠୁଛି—ତାହା ଆଉ ଶୁଭ୍ର ହୀରକଖଣ୍ଡ ନୁହେଁ, ଯେପରି ଏକ ରକ୍ତବିନ୍ଦୁ !

ଆଉରଙ୍ଗଜେବ ! ତୁମକୁ ମୁଁ ଅଭିଶାପ ଦେଉଛି ! ଅଭାଗା ଦାରାଙ୍କୁ ତୁମେ କରିଛ ପଦଦଳିତ । 'ନିରୀଶ୍ୱର' ବାଦର (୧) ଅପବାଦ ଦେଇ ତୁମେ ତାଙ୍କୁ ହତ୍ୟା କରିଛ ।

ଆଉରଙ୍ଗଜେବ ! ତୁମେ ତୁମ ସାନଭାଇ ମୁରାଦ୍ ଓ ପୁତ୍ରମାନଙ୍କୁ ଗୋୟାଲିୟରର ଦୁର୍ଗରେ ଅଫିମ ବିଷ ଦେଇ ହତ୍ୟା କରିଛ (୨) ।

ମୋତେ ହେଲେ ଦେଇ ବିଷ ଦେଇଥାନ୍ତ ! ତେବେ ତ ମୋର ଅନୁଭବ କରିବାର ଶକ୍ତି ଲୋପ ହୋଇଥାନ୍ତା, ଗଭୀର ନୈରାଶ୍ୟରେ ଆଉ ଜର୍ଜରିତ ହେଉ ନ ଥାନ୍ତି, ଏ ଯନ୍ତ୍ରଣାରୁ ମୁକ୍ତି ମିଳିଥାନ୍ତା ।

ଆଉରଙ୍ଗଜେବ ! ଆଜି ଏ କ୍ଷଣରେ ତଥାପି ମୁଁ ବଞ୍ଚିଛି, ଚିନ୍ତା କରିପାରୁଛି । ଜନଜୋଡର ଅନ୍ଧକାର ମଧ୍ୟରେ ମୁଁ ତୁମ ପାଖକୁ ବାର୍ତ୍ତା ପଠାଉଛି,—ମୃତ୍ୟୁର ରାଜ୍ୟ ଅତିକ୍ରମ କରି ମୋ ବାର୍ତ୍ତା ତୁମ ନିକଟରେ ପହଞ୍ଚିବ ! ଆଜିର ନିଶୀଥରେ କେଉଁ ଏକ ରହସ୍ୟମୟ ଶକ୍ତି ଯେପରି ଆହ୍ୱାନ କରୁଛି, ମୋର ସମସ୍ତ ଇନ୍ଦ୍ରିୟ ।

ଦୃଷ୍ଟିପଥରେ ଫୋଟିଯାଉଛି ନିତାନ୍ତ କୃଷ୍ଣଚ୍ଛାୟା । ତୁମେ ହୁଏତ ଦେଖି ପାରୁନାହଁ, ମୁଁ କିନ୍ତୁ ଦେଖିପାରୁଛି—ଏଇ ଯେ କୃଷ୍ଣଚ୍ଛାୟାମୂର୍ତ୍ତି—କ୍ଷ

(୧) ପରାଜିତ ଦାରା ଶୁକୋଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଥିଲା ଯେ, ସେ ନିରୀଶ୍ୱରବାଦୀ । ମୁସଲିମ୍ ଶାସ୍ତ୍ର ଅନୁସାରେ ନିରୀଶ୍ୱରବାଦୀର ମୃତ୍ୟୁଦଣ୍ଡ ହିଁ ପ୍ରାପ୍ୟ । କିନ୍ତୁ ସେ ଦଣ୍ଡର ଯଥାର୍ଥତା ସମ୍ବନ୍ଧରେ ମତଦ୍ୱୈଧ ଅଛି । ଦାରା ସେ ଈଶ୍ୱରବିଶ୍ୱାସୀ ଥିଲେ, ଏହା ନିଃସନ୍ଦେହ ।

(୨) ରାଜଦ୍ରୋହ ଅପରାଧରେ ମୋଗଲ ବଂଶର ସନ୍ତାନମାନଙ୍କୁ ଗୋୟାଲିୟରର ଦୁର୍ଗରେ ବନ୍ଦୀ କରାଯାଉଥିଲା ; ମୋଗଲ ରାଜବଂଶର ସନ୍ତାନମାନଙ୍କୁ ଅନେକ ସମୟରେ ହତ୍ୟା ନ କରି ଅଫିମ ବିଷ ପ୍ରୟୋଗରେ ଅକର୍ମଣ୍ୟ କରି ଦିଆଯାଉଥିଲା । ତୁର୍କି ଜାତିର ଲୋକଙ୍କ ମଧ୍ୟରେ ଏହି ବିଷ ପ୍ରଚଳିତ ଥିବାର ବହୁ ଦୃଷ୍ଟାନ୍ତ ଅଛି ।

କ୍ଷୁଣ୍ଣିତ ! —ହଠାତ୍ ସେ ଛାୟାମୂର୍ତ୍ତି ସବୁ ଏକ ସଙ୍ଗେ ଆକାଶକୁ ଉଠୁଛନ୍ତି, ଏବଂ, ସେଗୁଡ଼ିକ ମେଘରେ ରୂପାନ୍ତରିତ ହେଉଛନ୍ତି, ତା'ପରେ ଝଂଜ୍ଝା— ବିଦ୍ୟୁତ୍ ଚମକୁଛି—ଉଠୁଛି ଅଗ୍ନିର ଲେଲିହାନ ଶିଖା—ଧ୍ୱଂସ ହୋଇଯିବ ସମସ୍ତ ସାମ୍ରାଜ୍ୟ ।

ଭୁବନ ପୃଷ୍ଠରୁ ତୁମର ଶୃଙ୍ଖଳ ଖସିପଡ଼ିବ । ଭୀଷଣ ଧ୍ୱଂସଲୀଳା ମଧ୍ୟରେ ନଷ୍ଟ ହୋଇଯିବ ଆକବରଙ୍କ ସ୍ୱପ୍ନ—ତୈମୁର ବଂଶଧରଙ୍କ ଛିନ୍ନଚେତ ଅଖଣ୍ଡ ଭାରତର ସ୍ୱପ୍ନ ।

ଆଉରଙ୍ଗଜେବ ! ମୁଁ ଭବିଷ୍ୟତ୍‌ବାଣୀ କରୁଛି—ହେ ଶକ୍ତିମାନ୍ ! ତୁମେ ଭଗବାନଙ୍କୁ ଭୟ କର; କିନ୍ତୁ ତାଙ୍କୁ ଭଲପାଅ ନା । ତୁମକୁ ମଣିଷ ଭୟ କରେ, ଭଲ ପାଏ ନାହିଁ । ଆକବର ଯେଉଁ ତାମ୍ରମୁଦ୍ରା ଦାନ କରୁଥିଲେ, ତାହା ପରିଣତ ହେଉଥିଲା ସ୍ୱର୍ଣ୍ଣମୁଦ୍ରାରେ ; କିନ୍ତୁ ତୁମେ ଯାହା ଦାନ କରୁଛ, ତାହା ପରିଣତ ହେଉଛି କଣ୍ଟକରେ । ଆକବର ଉଦ୍ୟମ କରୁଥିଲେ ସଂହତି ପ୍ରତିଷ୍ଠାପାଇଁ, ତୁମେ ଧ୍ୱଂସପଥରେ ଅଭିଯାନ କରୁଛ । ମୁଁ ତୁମକୁ ଅଭିଶାପ ଦେଉଛି, ଆଉରଙ୍ଗଜେବ ! ତୁମେ ତୁମ ପ୍ରଜାଙ୍କ ପ୍ରତି ଯେଉଁ ବ୍ୟବହାର କରିଛ, ତାହା ଜୀବନରେ ଭୁଲିପାରିବ ନାହିଁ । ତୁମେ ଯେଉଁ ପଥରେ ଯିବ, ସେ ପଥରେ ତୁମର ଛାୟା ତୁମକୁ ଅତିକ୍ରମ କରିଯିବ, ତୁମକୁ ବିପଥଗାମୀ କରିବ । ପବିତ୍ର କୋରାନର ବାଣୀ ତୁମକୁ ସେ ଛାୟାର ଆତଙ୍କରୁ ରକ୍ଷା କରିପାରିବ ନାହିଁ ।

ହିନ୍ଦୁସ୍ଥାନ ଆଜି ବିଜେତାର କ୍ରୀତଦାସ । କେବେ ଲୋଭରେ, କେତେବେ ଘୃଣାରେ, ହିନ୍ଦୁସ୍ଥାନ୍ ହୋଇଛି ଲୁଣ୍ଠିତ । କେଉଁ ମହାନ୍ ପୁରୁଷର ପ୍ରେରଣାରେ ପରିଚାଳିତ ହୋଇଥିଲେ ଭାରତବର୍ଷ ହୋଇଥାନ୍ତା ତାଙ୍କ ସମସ୍ତ ସନ୍ତାନଙ୍କ ଜନନୀ । ଆଜି ହୁଏତ ଦିଲ୍ଲୀ ରାଜପ୍ରାସାଦରେ ମୟୂର ସିଂହାସନ ସ୍ୱୀୟ ଉଜ୍ଜ୍ୱଳତାରେ ଉଦ୍‌ଭାସିତ କିନ୍ତୁ ସିଂହାସନର ମଣିମାଣିକ୍ୟ ଦୂରରୁ ବିପଦକୁହିଁ ଆହ୍ୱାନ କରୁଛି—ଯେପରି ଚୁମ୍ବକ ଆହ୍ୱାନ କରେ ଲୌହକୁ ।

ସୁଦୂରରୁ ଆସୁଛି ଶୀତଳ ପ୍ରଭଞ୍ଜନ । ମୁଁ ଶିହରି ଉଠୁଛି— ଏ ଦେଉଛି ଝଂଜ୍ଝାର ସୂଚନା, ରକ୍ତ ସମୁଦ୍ରର ବାର୍ତ୍ତା । ଶକ୍ତିଶାଳୀ ସମ୍ରାଟର ପାଦତଳେ ରାଜ୍ୟର ମାଟି ଆଜି ଲୁଣ୍ଠିତ, ରକ୍ତର ପ୍ରବାହରେ ପାଦଚିହ୍ନ

ନିଶ୍ଚିହ୍ନ କରିଦେବ ! ଆଜି ରାତିରେ ମୁଁ ଶୁଣିପାରୁଛି—ସମସ୍ତ ଦିଲ୍ଲୀରେ କ୍ରନ୍ଦନରୋଳ, ଯେପରି ଶୁଣାଯାଉଥିଲା ତୈମୁରଙ୍କ ଦିଲ୍ଲୀ ଅଭିଯାନ ବେଳେ । ଯାନପଥରେ ପୁଣି ଥରେ ଝଡ଼ ଉଠିଛି ।

ମୃତ ମଣିଷକୁ କେବଳ ଶାନ୍ତିର ଅଧିକାର—ନା, ନା, ତା'ବି ନୁହେଁ । ଧନରତ୍ନ ଲୋଭରେ ମୃତର ସମାଧି ବି ଲୁଣ୍ଠିତ ହୁଏ । ମୁଁ କିନ୍ତୁ ମୂଲ୍ୟବାନ ପ୍ରସ୍ତର କିମ୍ବା ମର୍ମର ନିର୍ମିତ ବେଦୀତଳେ ସମାଧିସ୍ଥ ହେବାକୁ ଚାହେଁନା, ମୋ ସମାଧିର ଏକମାତ୍ର ଆବରଣ ହେବ ତୃଣଗୁଚ୍ଛ । କାହାର ଚରଣ ଆଘାତରେ ଯଦି କେଉଁଦିନ ଦଳିତ ହୁଏ, ତେବେ ନୂଆହୋଇ ଜନ୍ମିବ ସେଇ ତୃଣ । ଭଗବାନ୍ ! ଏଇ ପଦଦଳିତଙ୍କୁ କୋଳରେ ଆଶ୍ରୟ ଦିଅ ।



## ଦ୍ୱିତୀୟ ସ୍ତବକ

[ଆତ୍ମ କାହାଣୀର ସମସ୍ତ ଅଂଶ ମିଳି ନାହିଁ । ପ୍ରଥମ ଓ ଦ୍ୱିତୀୟ ସ୍ତବକ ମଧ୍ୟରେ ବହୁ ଦିନର କାହାଣୀ ଅବଲୁପ୍ତ ।]

ସୂର୍ଯ୍ୟାସ୍ତ ସମୟ, ପବନର ଗତି ମନ୍ଥର, କୁସୁମର ସୁରଭିରେ ପୃଥିବୀ ଆମୋଦିତ । ଆଗ୍ରା ପ୍ରାସାଦର ଅଙ୍ଗୁରିବାଗର (୧) ପ୍ରତ୍ୟେକଟି ଫୁଲ ସହିତ ଯେପରି ମୋ ଅତୀତର ସ୍ମୃତି ଜଡ଼ିତ ।

ରକ୍ତ କରବୀ ଫୁଲର ରକ୍ତସ୍ତବକ ଭୋଜନ କକ୍ଷର ସମ୍ମୁଖରେ ରକ୍ତ ବର୍ଣ୍ଣର ଆଲୋକ ଶିଖା ପରି ପ୍ରସ୍ଫୁଟିତ । ମୋ ଭାଇଙ୍କ ଉତ୍ସବ ବେଳେ ବହୁ ରାତିରେ ମୁଁ ଏଇ ରକ୍ତ କରବୀ ଫୁଲରେ ପ୍ରସ୍ତୁତ କରିଛି ବାସର ଗୃହର ମାଳା । ମଳାଭ ଅତସୀ ଫୁଲ ମୃଦୁ ପବନରେ ଦୋଳାୟିତ—ତାହାର ମଧୁର ସୁରଭି ପବନ ସଙ୍ଗେ ବହି ଆଣୁଛି ଦୁଃଖର ନିଃଶ୍ୱାସ—ଅତୀତର ସ୍ମୃତି ମୋତେ ଆଚ୍ଛନ୍ନ କରୁଛି ।

ଦେଓ୍ୱାନ୍-ଇ-ଆମର (୨) ସଙ୍ଗୀତ ନିସ୍ତବ୍ଧ; କିନ୍ତୁ ସନ୍ଧ୍ୟାର ଆକାଶରେ ଯେପରି ଗୋଟିଏ କରୁଣ ସ୍ୱର ଭାସିବୁଲୁଛି । ଲାଗୁଛି, ଯେପରି ରକ୍ତ ଗୋଲାପର ଗନ୍ଧ ସଙ୍ଗେ ମିଶିଯାଇଛି ଦୁଲେରାଙ୍କ ସଙ୍ଗୀତ । ସଙ୍ଗୀତ ଛନ୍ଦର ଶିହରଣ ଏଇ ଦୁର୍ଗର ପ୍ରାଚୀର ଭେଦ କରି ମୋ କାମନା-ରାଜ୍ୟରେ ପ୍ରବେଶ କରୁଛି । ମୁଁ ଦୁଲେରାଙ୍କ (୩) ନାମ ଦେଇଥିଲି 'ରାଜ', ଦୁଲେରାଙ୍କ ବାହୁ ବନ୍ଧନକୁ ମୁଁ ସ୍ୱର୍ଗୀୟ ଆନନ୍ଦ ବୋଲି କଳ୍ପନା କରୁଥିଲି । ତାଙ୍କ ସଙ୍ଗୀତ ମୋତେ ଯେପରି ଅନ୍ୟ

---

(୧) ଆଗ୍ରା ରାଜପ୍ରାସାଦର ଅନ୍ତଃପୁର ବାସିନୀମାନଙ୍କ ପାଇଁ ଉଦ୍ଦିଷ୍ଟ ଦେଓ୍ୱାନ୍-ଇ-ଖ—ଆମର ନିକଟବର୍ତ୍ତୀ ଉଦ୍ୟାନ ।

(୨) ମୋଗଲ ରାଜପ୍ରାସାଦର ସାଧାରଣ ଦରବାର କକ୍ଷ ।

(୩) ଶାହାଜାହାନଙ୍କ ବଶ୍ୟତ୍ର ରାଜପୁତ ସାମନ୍ତ ବୁନ୍ଦେଲରାଜ ଛତ୍ରଶାଳଙ୍କ ଛଦ୍ମନାମ ।

କେଉଁ ରାଜ୍ୟକୁ ନେଇ ଯାଉଥିଲ । ଯେଉଁଠି ପାଦ ଭୂମି ସ୍ପର୍ଶ କରେ ନାହିଁ । ଆଜ ତାଙ୍କ ରୂପ ସ୍ପଷ୍ଟ ହୋଇ ଉଠୁଛି ମୋ ସ୍ମୃତି ପଟରେ । ଆଜ ବ ମୁଁ ଶୁଣିପାରୁଛି ତାଙ୍କ ସଙ୍ଗୀତର ପ୍ରତିଧ୍ୱନି ।

ଦିଲ୍ଲୀର ପ୍ରାସାଦରେ ଶାଲମାରବାଗରେ ମଧୁ ମକ୍ଷିକାପରି ମୁଁ ଘୂରୁଛି । ପ୍ରତି ମୁହୂର୍ତ୍ତରେ ପୁଷ୍ପ ପାଖରୁ ମଧୁ ଖୋଜି ବୁଲୁଛି ଏବଂ ପ୍ରତି ମୁହୂର୍ତ୍ତରେ ସେହି ଖୋଜିବା ମଧ୍ୟରେ ଆଗେଇ ଆସିଛି ମୃତ୍ୟୁର ନିକଟକୁ । ମଣିମାଣିକ୍ୟର ବର୍ଣ୍ଣପରି ଉଜ୍ଜ୍ୱଳ ମକ୍ଷିକା ରାଣୀ ପକ୍ଷରେ ସ୍ୱର୍ଣ୍ଣରେଣୁ ମାଖି, ନୃତ୍ୟ ଆବେଗରେ ଛୁଟିଯାଉଛି ସୂର୍ଯ୍ୟ ନିକଟକୁ । ଚିରନ୍ତନ ଆଲୋକ ସାନ୍ନିଧିରେ ପାଇବ ନୂଆ ଜୀବନ—ତାର ମୃତ୍ୟୁ ନାହିଁ । ଆକାଶରେ ଜଳୁଛି ତାରକାମାଳା ।

ମୁଁ ଭୟରେ ଶିହରି ଉଠୁଛି । କଳ୍ପନା ରାଜ୍ୟରେ ପହଞ୍ଚିବା ପୂର୍ବରୁ ଯଦି ମୋ ରୂପ ମଳିନ ହୋଇପଡ଼େ, ତେବେ ମୁଁ ତ ଆଉ ସେଇ ବେଗମ୍-ଜାହାନାର ହୋଇ ରହିବି ନାହିଁ ! ମୋ ପ୍ରିୟତମଙ୍କ ହୃଦୟେଶ୍ୱରୀ ହୋଇ ଜୀବନର ଶେଷ ମୁହୂର୍ତ୍ତ କଟାଇ ପାରିବି ନାହିଁ ! ମୁଁ ଆକଣ୍ଠ ପାନ କରିଛି ଭାଗ୍ୟଦେବୀର ସୁଧାପାନ ; ତଥାପି ମୁଁ ଆଜ ତୃଷିତା ।

ଅସ୍ତ ସୂର୍ଯ୍ୟର ରକ୍ତ ରଶ୍ମି ଜୀର୍ଣ୍ଣ ପଥର ଶିରରେ ପିନ୍ଧାଇ ଦେଉଛି ସୁନାର ମୁକୁଟ । ସେହିପରି ମୁଁ ମୋ ପ୍ରିୟ 'ରଜା'ଙ୍କ ଶିରରେ ପିନ୍ଧାଇ ଦେଉଛି ସ୍ମୃତିର ମୁକୁଟ ।

ଆଜ ବ ସେ ସ୍ମୃତି ଅମ୍ଳାନ । ଦେଓ୍ୱାନ୍-ଇ-ଆମର ଦରବାର କକ୍ଷରେ ଯେଉଁଦିନ ମୋର ପ୍ରିୟତମ, ସମ୍ରାଟ ଶାହାଜାହାନଙ୍କୁ ଅଭିବାଦନ ଜଣାଇଥିଲେ, ସେ ଦିନ ମୁଁ ଥିଲି ତରୁଣୀ— ! ଅଶ୍ୱାରୋହୀର ଦଳ କ୍ରମଶଃ ଆଖି ଆଗରୁ ଅପସରିଗଲେ । ବଂଶୀର ସ୍ୱର, ବାଦ୍ୟର ଧ୍ୱନି, ଶାନ୍ତ— ଚତୁର୍ଦ୍ଦିଗରେ ଗମ୍ଭୀର ନୀରବତା । ମୁଁ ରାଜମହଲର ଗବାକ୍ଷ (୧) ପାର୍ଶ୍ୱରେ ଠିଆ ହୋଇଛି । ଏଇ, ମୋ ରଜା ଧୀର ପଦକ୍ଷେପରେ ସିଂହାସନ ସମୀପକୁ ଅଗ୍ରସର ହେଉଛନ୍ତି ! ମୋତେ ଲାଗୁଛି, ଯେପରି

(୧) ମୋଗଲ ପ୍ରାସାଦମାନଙ୍କରେ ଗବାକ୍ଷମାନ ଅପରବର୍ତ୍ତିନୀସ୍ତୁ ପର୍ଦ୍ଦାପରି ବ୍ୟବହାର କରାଯାଉଥିଲା ।

ମୋ ଶରୀରର ସମସ୍ତ ରକ୍ତ ପ୍ରବାହ ବନ୍ଦ ହୋଇଯାଇଛି । ଏ, କଣ ନିଷାଦବଂଶ ନଳ ? (୧) ରାଜା ନଳ ଯେପରି ପୁଣି ପୃଥିବୀକୁ ଫେରି ଆସୁଛନ୍ତି ।

ଅପୂର୍ବ ଜ୍ୟୋତିରେ ଉଦ୍‌ଭାସିତ ତାଙ୍କର ଦୁଇଟି ଚକ୍ଷୁ—ଯେପରି ସ୍ୱପ୍ନର ଆବେଶରେ ଆଚ୍ଛନ୍ନ । ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ କ୍ଷତ୍ରିୟୋଚିତ ଶୌର୍ଯ୍ୟ ଓ ମର୍ଯ୍ୟାଦାର ପରିଚୟ !—ଏହି କ୍ଷତ୍ରିୟ ବଂଶ ହିଁ ଭାରତବର୍ଷ ଶାସନ କରିବା ପାଇଁ ଉପଯୁକ୍ତ । ଯେଉଁ ମୁହୂର୍ତ୍ତରେ ଗୁରୁଙ୍କ ତାର ବୀଣାରେ ମୃତ୍ୟୁ-ସଙ୍ଗୀତର ଝଙ୍କାର ତୋଳେ, ସେଇ ମୁହୂର୍ତ୍ତରେ ରାଜପୁତ ତାର କୃଷ୍ଣକାୟ-ଅଶ୍ୱକୁ ପ୍ରସ୍ତୁତ କରେ ଯୁଦ୍ଧ ପାଇଁ ।

ଯେବେ ଯେପରି ଦମୟନ୍ତୀ ଦେବତାମାନଙ୍କୁ ତ୍ୟାଗ କରି ନଳଙ୍କୁ ବରଣ କରିଥିଲେ, ମୁଁ ସେହିପରି ଏ ରାଜପୁତ ଉଦ୍ଦେଶ୍ୟରେ ନିଜକୁ ସମର୍ପଣ କରିଥିଲି । ପୂର୍ବରୁ ଆଉ କାହା ନିକଟରେ ମୁଁ ନିଜକୁ ଦୁର୍ବଳ ମନେକରି ନ ଥିଲି, ପରେ ବି କରିନି । ପ୍ରଥମ ଦର୍ଶନରେ ହିଁ ମୁଁ ତାଙ୍କୁ ମୋ ହୃଦୟର ଅର୍ଘ୍ୟ ଅର୍ପଣ କରିଥିଲି । ପ୍ରଥମ ଦର୍ଶନରେ ହିଁ ସେ ହେଲେ ମୋ ହୃଦୟର ଦେବତା— ଆଜି ବି ସେ ସେଇ ଆସନରେ ଆସୀନ ।

ସୂର୍ଯ୍ୟାଲୋକରେ ନୃତ୍ୟ କରୁଛି ପ୍ରଜାପତି—ମୁଁ ମୋର ଶାଶ୍ୱତ ମଧ୍ୟରେ ବିଲୀନ ହୋଇଯିବି । ସାବିତ୍ରୀପରି ଜୟ କରିବି ମୃତ୍ୟୁକୁ । ମୁଁ ମୋର ସୀମାହୀନ କାମନାରାଜ୍ୟର ମଧ୍ୟଦେଇ ଅନୁସରଣ କରିବି 'ରାଜା'ଙ୍କୁ, ପୃଥିବୀର ଅପର ପାର୍ଶ୍ୱରେ—ସେଠି ମୋର କୌଣସି ଭୟ ନାହିଁ ।

ମୋ ଭାଇ ଆଉରଙ୍ଗଜେବ ଘୋଷଣା କରିଛନ୍ତି, ସଙ୍ଗୀତ ଚର୍ଚ୍ଚା ନିଷିଦ୍ଧ । ସଙ୍ଗୀତ ଶିଳ୍ପୀଗଣ ସେମାନଙ୍କ ବାଦ୍ୟ ଯନ୍ତ୍ରକୁ ଏକ ଶବ ଶୋଭା-

---

(୧) ମହାଭାରତ ବର୍ଣ୍ଣିତ ରାଜା ନଳ । ସ୍ୱୟମ୍ବର ସଭାରେ ଦେବତାମାନଙ୍କୁ ଉପେକ୍ଷା କରି ଦମୟନ୍ତୀ ନଳଙ୍କୁ ବରଣ କରିଥିଲେ ସ୍ୱାମୀ ରୂପେ । ନାହା ନାହିଁ ହିନ୍ଦୁ ଶାସ୍ତ୍ରରେ ପାରଦର୍ଶିନୀ ଥିଲେ । ତାଙ୍କ ଅମର ଜୀବନରୁ ଏହାର ଯଥେଷ୍ଟ ପ୍ରମାଣ ମିଳେ ।

ଯାହାଙ୍କୁ ନେଇ ସମାଧି ଦେଇଛନ୍ତି (୧) । କିନ୍ତୁ ସମ୍ରାଟଙ୍କ କେଉଁ ଅନୁଶାସନ ସ୍ତବ୍ଧ କରିପାରିବ ମୋ ଅନ୍ତରର ସଙ୍ଗୀତ ? ମୋ ସମ୍ମୁଖରେ ଦଣ୍ଡାୟମାନ ଏଇ ପ୍ରାଚୀର ପରି ନିର୍ମମ ମୋର ଭାଗ୍ୟ । ମୋଗଲ ସମ୍ରାଟ ଆକବରଙ୍କ ଆଦେଶ ଥିଲା—କୌଣସି ମୋଗଲ ରାଜକୁମାରୀର ବିବାହ ହୋଇପାରିବ ନାହିଁ । ସାମ୍ରାଜ୍ୟର ମଙ୍ଗଳ ପାଇଁ ଆକବର ଉତ୍ସର୍ଗ କରି-ଥିଲେ ମୋଗଲ ରାଜକୁମାରୀଙ୍କୁ ।

ଦୂର ପର୍ବତର ଚୂଡ଼ାରେ ଗୋଟିଏ କ୍ଷୁଦ୍ର ପ୍ରାସାଦ ମୋର ବେଶ୍ ପରିଚିତ । ସେଇ ପ୍ରାସାଦର ଶୁଭ୍ର ମର୍ମର ନିର୍ମିତ ତୋରଣ ଏବଂ ସୁବର୍ଣ୍ଣ ଖଚିତ ଦ୍ୱାର ପ୍ରତିଫଳିତ ହେଉଛି ଶାନ୍ତ ଜଳରାଶିରେ । ଜଳରାଶିକୁ ଆଚ୍ଛନ୍ନ କରିଛି ଗଭୀର ନିସ୍ତବ୍ଧତା । ଆଜି ବିଲୀନ ହୋଇଯାଇଛି ସେଇ ଜଳରାଶିର ଅସ୍ତିତ୍ୱ । ସେଇ ପ୍ରାସାଦରେ ତାଙ୍କୁ ବେଷ୍ଟନ କରି ଆଜି ମୁଁ ରଚନା କରି-ଥାନ୍ତି ମୋ ରାଜସଭା ! ସେଇ ସଭାରେ ମୋଗଲ ରାଜକୁମାରୀର ଆମୋଦ ଉତ୍ସବରେ ସ୍ୱର୍ଗର ଦେବତାମାନେ ବି ଈର୍ଷାନ୍ୱିତ ହୋଇ ଉଠୁଥାନ୍ତେ । ସେ ପ୍ରାସାଦର ଭୋଜନ କକ୍ଷର ମସୃଣ ମର୍ମର ଶିଳା-- ଚଟାଣକୁ କମ୍ପିତ କରୁଥାନ୍ତା ନର୍ତ୍ତକୀର ନୂପୁର-ନିକ୍ୱଣ ।

ଭୋଜନ ସମୟରେ କାବୁଲ୍ ଓ କାଶ୍ମୀରର ରତ୍ନଖଚିତ ପାତ୍ରରେ ସୁରା-ଧାର ରୁଦ୍ଧ କରି ଦେଇଥାନ୍ତା ଚିନ୍ତାର ସ୍ରୋତକୁ । ମୁଁ ଭାଇ ଦାରାଙ୍କ ସ୍ୱପ୍ନକୁ ସଫଳ କରିଥାନ୍ତି ! ହିନ୍ଦୁ ଓ ମୁସଲମାନ ସଂସ୍କୃତି-ଦୁଇ ଧାରାକୁ ମିଳନ କରାଇଥାନ୍ତି । ହୃଦୟବାନ୍ ସୁଫୀ ସାଧୁ ସନ୍ଥ ଯୋଗୀଙ୍କର ପ୍ରେମବାରି ସିଞ୍ଚନ କରି ସୁରାସାର (୨) ପ୍ରସ୍ତୁତ କରିଦିଅନ୍ତି ! ସେଇ ସୁର ରୂପାୟିତ ହୁଅନ୍ତା ବାଦ୍ୟର ଝଙ୍କାରରେ, ଭାଷାର ମୂର୍ଚ୍ଛନାରେ । ମନେପଡ଼ୁଛି, ସମ୍ରାଟ ଆକବରଙ୍କ ରାଜସଭାର ଗୋଟିଏ ଦିନର କାହାଣୀ.........

---

(୧) ଆଉରଙ୍ଗଜେବ ସଙ୍ଗୀତ ଚର୍ଚ୍ଚା ନିଷିଦ୍ଧ କରିବା ପରେ ସଙ୍ଗୀତ-ଶିଳ୍ପୀଗଣ ଦିନେ ଏକ ଶବ-ଯାତ୍ରା ବାହାର କରିଥିଲେ । ଆଉରଙ୍ଗଜେବ କୌତୂହଳୀ ହୋଇ ପ୍ରଶ୍ନ କଲେ, "ଏ କାହାର ଶବଯାତ୍ରା ?" ଉତ୍ତର ମିଳିଲା, "ସଙ୍ଗୀତର" । ଆଉରଙ୍ଗଜେବ କହିଲେ, "ଯେପରି ଭଲ ଭାବରେ କବର ଦିଆଯାଏ !"

(୨) ସୁଫୀ ପରିଭାଷାରେ 'ପ୍ରେମର' ଅନ୍ୟ ନାମ 'ସୁରା' ।

ଏଇ ଶୁଣ, ସ୍ରୋତସ୍ୱିନୀର ବୁକୁରେ ଜଳର ମୃଦୁ କଳତାନ—ଯମୁନାର ସ୍ୱଚ୍ଛ ଶାନ୍ତ ଜଳଧାରା ବହିଚାଲିଛି ଅଙ୍ଗୁର ବାଗର ପାଖ ଦେଇ । ମୁଁ ଶୁଣି ପାରୁଛି, ପବନର ମର୍ମର । ଏଇ ଶାନ୍ତ କରୁଣ ଶବ୍ଦ, ଦିଲ୍ଲୀର ନହବତ୍‌ଖାନାର ସମ୍ମିଳିତ କଣ୍ଠସ୍ୱର ପରି ମୋ ବକ୍ଷରେ ବାଜୁଛି । ଏଇ ସ୍ରୋତସ୍ୱିନୀର ସଙ୍ଗୀତରେ ଯେପରି ଫେରି ଆସୁଛି ଫିରୋଜଶାହଙ୍କ ପରିଖା ନିକଟସ୍ଥ ମୋ ଉଦ୍ୟାନ ବାଟିକାର ପୁରାତନ ସ୍ମୃତି । ଏଇ କରତାଳର କଳରୋଳ, ବୀଣାର ଝଙ୍କାର, ଯମୁନାର ଜଳସ୍ରୋତରେ ଭାସି ଆସି, ମୋ ଦିନାନ୍ତରେ ସ୍ମରଣ କରାଇ ଦେଉଛି ଶ୍ମଶାନ ଚିତାର ଧୂମଶିଖା ! ଦିଲ୍ଲୀ ରାଜପ୍ରାସାଦର ସମ୍ମିଳିତ ସଙ୍ଗୀତ ଧ୍ୱନି ଯେପରି ଆସନ୍ନ ଶ୍ୱାପଦ ଆଶଙ୍କାରେ ମଣିଷର ଆର୍ତ୍ତନାଦ—ମୋ ଅଭିଶାପର ଭଗ୍ନଦୂତ !

ସେ ଯାଏଁ ମୋ ଭାଇ ଶୁଜା ବଙ୍ଗଳାର ଶାସନକର୍ତ୍ତା ହୋଇ ନ ଥାନ୍ତି, ସେ ଯାଏଁ ରାଜପ୍ରାସାଦର ପାଖ ଦେଇ ଅସଂଖ୍ୟ ନାଗୁଣୀଙ୍କ ଅଭିଯାନ (୧) ତାଙ୍କ ଦୃଷ୍ଟିକୁ ଆସି ନ ଥାଏ । ଅର୍ଥଲୋଭୀ ଗଣକ ତାଙ୍କୁ ସେଯାଏଁ କହି ନ ଥାଏ ଯେ, ଯେଉଁ କ୍ଷୁଦ୍ର ଶ୍ୱେତ ସର୍ପଟି ବିରାଟ କାଳସର୍ପ ଫଣାରେ ବସିଥିଲା, ସେ ଥିଲା ଶୁଜାଙ୍କ ଭବିଷ୍ୟତ ସାମ୍ରାଜ୍ୟ ପ୍ରାପ୍ତିର ଇଙ୍ଗିତ (୨)—ସେଯାଏଁ ଭ୍ରାତୃବିବାଦର ଅଗ୍ନିଶିଖା ଜଳି ଉଠି ନ ଥାଏ । ତଥାପି, କେବେ କେବେ ରାଜପ୍ରାସାଦର ଅଭ୍ୟନ୍ତରରେ ଛିଟିକି ପଡୁଥାଏ ଅଗ୍ନିର ସ୍ଫୁଲିଙ୍ଗ । ରାଜପ୍ରାସାଦର ଉତ୍ସବମୁଖର ଦିବସଗୁଡ଼ିକ କଟିଯାଉଥାଏ ବିଳାସ ବ୍ୟସନରେ । ଉତ୍ସବ ଦିନର ବପଣୀରେ ସୂର୍ଯ୍ୟର ଶେଷ ରଶ୍ମି ରେଖାର ସମାବେଶ ପରି ।

---

(୧) କଥିତ ଅଛି ଯେ, ଶାହ ଶୁଜାଙ୍କ ପ୍ରମୋଦ କକ୍ଷ ସମ୍ମୁଖ ଦେଇ ପ୍ରତ୍ୟହ ସନ୍ଧ୍ୟାରେ ଏକ ସହସ୍ର ନାଗ ପଥ ଅତିକ୍ରମ କରୁଥିଲେ । ଏ ଦୃଶ୍ୟ ଶୁଜାଙ୍କ ନୟନ ଚରିତାର୍ଥ କରୁଥିଲା ।

(୨) ମୋଗଲ ରାଜବଂଶରେ ଜ୍ୟୋତିଷ ଚର୍ଚ୍ଚାର ଯଥେଷ୍ଟ ପ୍ରସାର ଥିଲା । ଜୀବନର ପ୍ରତି ଘଟଣାର ବିଶ୍ଳେଷଣ ପାଇଁ ରାଜା ଜ୍ୟୋତିଷଙ୍କୁ ନିମନ୍ତ୍ରଣ କରୁଥିଲେ । ଦିନେ ଏକ କୃଷ୍ଣ ସର୍ପର ମସ୍ତକରେ ଗୋଟିଏ କ୍ଷୁଦ୍ର ଶ୍ୱେତସର୍ପ ରାଜପୁତ୍ରର ପ୍ରାଙ୍ଗଣରେ ଦେଖାଗଲା । ଏଇ ଅଦ୍ଭୁତ ଦୃଶ୍ୟର ଅର୍ଥ କ'ଣ ହୋଇପାରେ, ଏହା ନିର୍ଣ୍ଣୟ କରିବାକୁ ରାଜ-ଜ୍ୟୋତିଷୀ ଆହୂତ ହେଲେ । ଜାହାନାରାଙ୍କର ଜବାନୀରୁ ଏ ଘଟଣାର ସୂଚନା ମିଳେ ।

ମୁଁ ପ୍ରଶଂସା କରିଥିଲି ମୋ ଉଦ୍ୟାନ ବାଟିରେ, ମୋ ରାଖିବନ୍ଧା ଭାଇ କ'ଣ ଆସିବେ ନାହିଁ ? (୧) ଦ୍ୱନ୍ଦ୍ୱ ସ୍ଥାନରେ ଯେତେବେଳେ ଉଦ୍ଦାମ ହୋଇ ଉଠିଛି ଶତ୍ରୁର ରକ୍ତ, ସେ କ'ଣ ମୋ ପାଖରେ ଆସି ଠିଆ ହେବେ ନାହିଁ ? ଆଉ କେଉଁ ନାରୀ କ'ଣ ତାଙ୍କୁ ମୋଠାରୁ ଅଧିକ ମୂଲ୍ୟବାନ ରାଖିବନ୍ଧନରେ ଆବଦ୍ଧ କରିଛି ? ମୁଁ ମୋର ଯୁଦ୍ଧପ୍ରିୟ ଭାଇଙ୍କୁ ଯେଉଁ ପ୍ରୀତିର ବନ୍ଧନରେ ଆବଦ୍ଧ କରିଛି, ତାର ମୂଲ୍ୟ କଳନା କରାଯାଇ ନ ପାରେ ।

ଯେତେବେଳେ ଆକାଶରେ ପ୍ରଥମେ ସନ୍ଧ୍ୟାତାରା ଉଇଁ ଉଠିଥିଲା, ସେତିକିବେଳେ ଆସିଥିଲେ ମୋ ପ୍ରିୟତମ । ସେତେବେଳେ ସୂର୍ଯ୍ୟାସ୍ତର ସଲଜ୍ଜ ଆକାଶରେ ରକ୍ତିମ କିରଣ ବିଚ୍ଛୁରିତ ହୋଇପଡ଼ିଥିଲା ! ତାଙ୍କ ଆଗମନର ପଦଧ୍ୱନି ଶୁଣି ମୁଁ ନତଜାନୁ ହୋଇ ଅଭିବାଦନ ଜଣାଇଲି ।



(୧) ମୋଗଲଙ୍କ ସାମାଜିକ-ଜୀବନରେ ହିନ୍ଦୁମାନଙ୍କ ରାଖିବନ୍ଧନ ଉତ୍ସବ ପାଳିତ ହେଉଥିଲା । ପ୍ରତିବର୍ଷ ଆତ୍ମୀୟ ବା ପ୍ରିୟଜନମାନଙ୍କ ନିକଟକୁ ବନ୍ଧୁତାର ଚିହ୍ନ ସ୍ୱରୂପ ରାଖି ପ୍ରେରଣ କରାଯାଉଥିଲା । ଏହିପରି ଭାବରେ ବୁନ୍ଦେଲା ପରିବାର ସଙ୍ଗେ ତୈମୁର ପରିବାରର ପ୍ରୀତିବନ୍ଧନ ସ୍ଥାପିତ ହୋଇଥିଲା । ଜାହାନାରାଙ୍କ ରାଖିବନ୍ଧା ଭାଇ ଥିଲେ ଛତ୍ରଶାଲ ବା ଦୁଲେରା ।

## ତୃତୀୟ ସ୍ତବକ

ମୁଁ ଶୁଣିପାରୁଛି, ମୋ ପ୍ରିୟତମଙ୍କ କଣ୍ଠସ୍ୱର । ଯବନିକାର ଅପର ପାର୍ଶ୍ୱରେ ଅନବଦ୍ୟ ଭାଷାରେ ସେ ମୋତେ ଅଭିନନ୍ଦନ ଜଣାଇଲେ । —ସେ ଯବନିକା ଭାଗ୍ୟପ୍ରାଚୀର ପରି ଆମ ଦୁହିଁଙ୍କ ମଧ୍ୟରେ ବ୍ୟବଧାନ ସୃଷ୍ଟି କରିଥିଲା । ମୁଁ ଦଣ୍ଡାୟମାନ ହୋଇ ପ୍ରିୟତମଙ୍କୁ ଅଭିନନ୍ଦନ ଜଣାଇଲି । ସେ ଯେପରି ମୋର ବିଶ୍ୱ ଜଗତର ସମ୍ରାଟ ! ତାଙ୍କରି ଭାଷାରେ ତାଙ୍କ ଆଗମନ ପାଇଁ ତାଙ୍କୁ ମୁଁ ଧନ୍ୟବାଦ ଦେଲି । ସେ କହିଲେ, "ସମ୍ରାଟ-ନନ୍ଦିନୀ ସତେ କ'ଣ ମୋତେ ଧନ୍ୟବାଦ ଜଣେଇଲେ ?" ତାଙ୍କ ଚକ୍ଷୁରେ ଥିଲା ସୂର୍ଯ୍ୟର ଦୀପ୍ତି, ସମୁଦ୍ରର ପ୍ରାଚୁର୍ଯ୍ୟ । ଗବାକ୍ଷ ମଧ୍ୟଦେଇ ମୁଁ ଦେଖିଲି, ସ୍ୱର୍ଣ୍ଣାଭ ସନ୍ଧ୍ୟାକାଶର ପୃଷ୍ଠଭୂମିରେ ପ୍ରିୟତମଙ୍କ ଉଜ୍ଜ୍ୱଳ ରୂପ,—ତାଙ୍କର ଶିର ଯେପରି ଅସ୍ତାଚଳଠାରୁ ବି ଉଚ୍ଚତର । ବହୁ ଯୁଦ୍ଧର ବିଜୟୀ ଦୁଲେରି କହିଲେ, "ସମ୍ରାଟ କୁମାରି ! ଆପଣଙ୍କ ଶ୍ରଦ୍ଧାସ୍ପଦ ପିତା ଦିନେ ତାଙ୍କ ଦୁଃସମୟରେ ଆସିଥିଲେ ଉଦୟପୁର । (୧) ତାଙ୍କ ଅଭ୍ୟର୍ଥନା ପାଇଁ ଆମେ ପ୍ରସ୍ତୁତ କରିଥିଲୁ ସମ୍ମାନ-ତୋରଣ । ସେ ତୋରଣରେ ଏବେ ବି ଦିବାରାତ୍ର ଦୀପଶିଖା ପ୍ରଜ୍ୱଳିତ । ଜଣେ ରାଜପୁତ ଜୀବିତ ଥିବାଯାଏଁ ସେ ଶିଖା ନିର୍ବାପିତ ହେବନାହିଁ । ମୋ ବାହୁରେ ଶକ୍ତି ଥିବାଯାଏଁ ଏଇ ଖଡ୍‌ଗ ଉନ୍‌ମୁକ୍ତ ରହିବ ସମ୍ରାଟ କୁମାରୀଙ୍କ ସମ୍ମାନ ରକ୍ଷାପାଇଁ ।"

ଗବାକ୍ଷରେ ମୋର ଅଧର ପୃଷ୍ଠ ଥାପି ଉଦ୍‌ବେଳିତ କଣ୍ଠରେ ପ୍ରଶ୍ନ କଲି, "କିନ୍ତୁ ରାଜପୁତ୍ରର ସମ୍ମାନ ?" ପ୍ରିୟତମଙ୍କ ଅଧରର ହାସ୍ୟରେଖା ମଳିନ ହୋଇପଡ଼ିଲା । ସେ କହିଲେ, ହତଭାଗ୍ୟ ହିନ୍ଦୁସ୍ଥାନ ! ହିନ୍ଦୁସ୍ଥାନର କ୍ଷତ୍ରିୟ ଓ ବ୍ରାହ୍ମଣମାନେ ହିଁ ଏ ଦେଶର ଦୁର୍ଭାଗ୍ୟକୁ ଡାକି ଆଣିଛନ୍ତି ! ବାଦ୍‌ଶା ବେଗମ୍, 'ଆପଣଙ୍କ ମନେ ଅଛି ତ, ଆପଣଙ୍କ ଶିବିରରେ ରାଜସ୍ଥାନର

---

(୧) ସାହାଜାହାନ ଜାହାଙ୍ଗୀରଙ୍କ ବିରୁଦ୍ଧରେ ବିଦ୍ରୋହ କରି ଚିତୋରର ସାହାଯ୍ୟ ଭିକ୍ଷା କରିଥିଲେ । ଚିତୋରର ରାଣା ଆଶ୍ରିତକୁ ସାହାଯ୍ୟ ଦେଇଥିଲେ ।

ରକ୍ତବିନ୍ଦୁ ପ୍ରବାହିତ । ଦିନେ ରାଣା ଅମର ସିଂ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ, ମହମ୍ମଦ ଘୋରୀଙ୍କ ବିରୁଦ୍ଧରେ, ଦିଲ୍ଲୀ ଓ ଆଜମିର୍ ରକ୍ଷା କରିବାପାଇଁ । ସେଇ ବୀରଙ୍କ କୀର୍ତ୍ତି-ଗୌରବରେ ଆପଣ ମହୀୟାନ୍ । ଯୁଦ୍ଧ ସମୟରେ ଦିନେ ଟଖିର ନଦୀଅରେ ସମର ସିଂ ଦେଖିଲେ, ଏକ ଅବଗୁଣ୍ଠିତା ନାରୀ । ଅକସ୍ମାତ୍ ଖୋଲିଗଲା ସେଇ ଅବଗୁଣ୍ଠନ — ଅପୂର୍ବ ମୁଖଶ୍ରୀ । ସମର ସିଂ ଭବିଷ୍ୟତ୍ ବାଣୀ ଶୁଣିଲେ, "ହେ ବୀର ! ତୁମ ପରେ ଭାରତର ଗୌରବ ଲୁପ୍ତ ହେବ ।" ତାପରେ ଦିଲ୍ଲୀର ପତନ ।

ବହୁ ଶତାବ୍ଦୀ ଅତୀତ ହୋଇଯାଇଛି — ଦିଲ୍ଲୀର ଗୌରବ ଏବେ ବି ଧୂଳିରେ ଅବଲୁଣ୍ଠିତ । ରାଜପୁତ ଆମେ — ହିନ୍ଦୁସ୍ଥାନର ପବିତ୍ର ସିଂହଦ୍ୱାର ସୁରକ୍ଷା ଦାୟିତ୍ୱ ଆମ ଉପରେ — ଅଥଚ ଆମେ ଆଜ ଆତ୍ମକଳହରେ ବ୍ୟାପୃତ ।

ମୁଁ ଉତ୍ତର ଦେଲି, "ଆପଣଙ୍କ ପୂର୍ବପୁରୁଷ କନୌଜର ରାଜକନ୍ୟା ସଂଯୁକ୍ତା ପାଇଁ ସଂଗ୍ରାମ କରିଥିଲେ । ଯୁଦ୍ଧଯାତ୍ରାର ପୂର୍ବ ମୁହୂର୍ତ୍ତରେ ପ୍ରିୟତମ ପୃଥ୍ୱୀରାଜଙ୍କୁ ସଂଯୁକ୍ତା ଯାହା କହିଥିଲେ, ଆପଣଙ୍କ ସ୍ମରଣ ଅଛି ତ ? — "ବୀରତ୍ୱ ପ୍ରଦର୍ଶନ କରି ମୃତ୍ୟୁବରଣ କଲେ ମଣିଷ ଅମରତ୍ୱ ଲାଭକରେ । ମୋପାଇଁ ଚିନ୍ତା କରନା ପ୍ରିୟତମ — ଚିନ୍ତା କର ଅମରତ୍ୱ ପାଇଁ । ଶତ୍ରୁକୁ ଦ୍ୱିଖଣ୍ଡିତ କର, — ମୃତ୍ୟୁ ପରେ ମୁଁ ତୁମର ଅର୍ଦ୍ଧାଙ୍ଗିନୀ ହେବି ।" ପୃଥ୍ୱୀରାଜ ଯେତେବେଳେ ଯୁଦ୍ଧକ୍ଷେତ୍ରରେ ନିହତ ହେଲେ, ସଂଯୁକ୍ତା ସହମରଣ ଚିତାରେ ଆରୋହଣ କରି କହିଥିଲେ, "ତୁମର ମୋର ମିଳନ ହେବ ସ୍ୱର୍ଗରେ । ଯୋଗିନୀ ପୁରରେ (୧) ଆଉ ତୁମର ସାକ୍ଷାତ ପାଇବି ନାହିଁ ।" ଇହଲୋକରେ ମିଳନ ଉତ୍ସବ ହୁଏ ନାହିଁ, ପରଲୋକରେ ସମ୍ଭବ ହୁଏ । ମୋ ପ୍ରିୟତମ ଦୁଲେରା ସତେ କ'ଣ ଏହା ବିଶ୍ୱାସ କରନ୍ତି ? ଆମର ଯୁଗ ଯୁଗର ଆକାଙ୍କ୍ଷା ଯେପରି ଏଇ ପ୍ରଶ୍ନଟି ଉପରେ ହିଁ ନିର୍ଭର କରୁଛି ।

ପ୍ରିୟତମଙ୍କ ମୁଖରେ ହସିଉଠିଲା ଅପୂର୍ବ ହାସ୍ୟରେଖା — ସେଇ ହାସ୍ୟରେଖାରେ ମୁଁ ଆଜ ପାଇଲି ମୋ ପ୍ରଶ୍ନର ଉତ୍ତର । ଏକମାତ୍ର ତାରି

(୧) ପୃଥ୍ୱୀରାଜଙ୍କ ରାଜଧାନୀ ଥିଲା ଯୋଗିନୀପୁର ।

ଅଗ୍ନିଶିଖା ମଣିଷର ଆତ୍ମାକୁ ନିର୍ମଳ କରି ଦିଏନା । କୌଣସି ଜଟିଳ ସମସ୍ୟାର ସମାଧାନ ଯେପରି ଗୋଟିଏ ମାତ୍ର ଶବ୍ଦରେ ହୋଇପାରେ, ସେହିପରି ଗୋଟିଏ ହୃଦୟର ସ୍ପର୍ଶ, ଆଉ ଗୋଟିଏ ହୃଦୟକୁ ସଂସାରର ମାୟା ବନ୍ଧନରୁ ମୁକ୍ତ କରି ନେଇପାରେ ଭଗବାନଙ୍କ ନିକଟକୁ — ସେ ମୁକ୍ତି ମିଳିପାରେ ଇହଲୋକରେ କିମ୍ବା ପରଲୋକରେ ।

ଏଇ କେତୋଟି ଶବ୍ଦ ମୋ ମନରେ ଆଶୀର୍ବାଦ-ବାରି ସିଞ୍ଚି ଦେଲା । ମୁଁ ଆଗେଇ ଆସିଲି ଗବାକ୍ଷର ଖୁବ୍ ନିକଟକୁ — ଏଇ ଗବାକ୍ଷ ଯେପରି ମୋତେ ଆନନ୍ଦ ଲୋକଠାରୁ ଦୂରେଇ ରଖୁଛି, ବିଜେତାର ପଦପ୍ରାନ୍ତରେ ଦୁର୍ଗ-ପ୍ରାଚୀର ଅବଲୁଣ୍ଠିତ ହୋଇ ପଡ଼ିଲାପରି । ଏ ଗବାକ୍ଷ ଯଦି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ନ୍ତା, ମୋ ସମ୍ମୁଖରେ ! ଆନନ୍ଦର ଶିହରଣରେ ମୋ ସର୍ବାଙ୍ଗ କମ୍ପିଉଠିଲା ।

ଲଜ୍ଜାକୁ ମୁଁ ଆବୃତ କରିରଖିଲି ଭାଷାର ଆବରଣରେ । ଦେଖିଲି, ଦୁଲେରିଙ୍କ ଅଧରରେ ଫୁଟି ଉଠିଛି ହାସ୍ୟ ରେଖା ।

ଲଲାଟ ଲିଖନ କେ କରିବ ଆନ ?

ଜଳିଉଠିଲା ଅସୁମାରି ଆଲୋକ । ଆକାଶ ବକ୍ଷରେ କିଏ ସଜାଇ ଦେଲା ତାରକାରମାଳା ? ଦେଓୟାନ-ଇ-ଆମର ସଙ୍ଗୀତ ନିସ୍ତବ୍ଧ ; କେବଳ ଶ୍ରୁତିଗୋଚର ହେଉଛି, ଜଳ ସ୍ରୋତର କୁଳୁକୁଳୁ ତାନ । ମୁଁ ଶୁଣି ପାରୁଛି ମୋ ବକ୍ଷ ସ୍ପନ୍ଦନର ପ୍ରତିଧ୍ୱନି । ଆମେ ଗୋପନରେ ମୃଦୁ ସ୍ୱରରେ ଆଳାପ କରିବାକୁ ଲାଗିଲୁ ।

ଭବିଷ୍ୟତ ସମ୍ପର୍କରେ ମୁଁ ପ୍ରଶ୍ନ କଲି, "ଆପଣ ମୋର ପିତା ଶାହାଜାହାନ ଓ ଭାଇ ଦାରାଙ୍କ ପ୍ରତି ଆମରଣ ଅନୁରକ୍ତ ରହିବେ ତ ?" ସେ ହସି ହସି କହିଲେ, "ଏକଦା ଆକବର ଥିଲେ ଦିଗନ୍ତ ବିସ୍ତୃତ ଭାରତର ସମ୍ରାଟ । ବହୁ ଯୁଦ୍ଧର ନାୟକ ପ୍ରତାପ ସିଂହ ଥିଲେ କ୍ଷୁଦ୍ର ରାଜ୍ୟ ମେବାରର ରାଣା । ରାଣା ପ୍ରତାପ ଥିଲେ ସମର ସିଂହଙ୍କ ବଂଶର ସନ୍ତାନ । ମହାନ ଆକବର ସ୍ୱପ୍ନ ଦେଖିଲେ—ସମଗ୍ର ଭାରତ ଜୟ କରିବେ, ନିଖିଳ ଭାରତର ଐକ୍ୟ ସ୍ଥାପନ କରିବେ । ପ୍ରତାପ ସିଂହ ସ୍ଥିର କଲେ, ରକ୍ଷା କରିବେ ଜନ୍ମ ମାଟିର ସ୍ୱାଧୀନତା । ଅକ୍ଷୁଣ୍ଣ ରଖିବେ ପୂର୍ବପୁରୁଷଙ୍କ ରାଜ୍ୟର

ସୀମା । ଅମର ରହନ୍ତୁ ପ୍ରତାପ—ଭାରତବର୍ଷରେ ଜଣେ ବି କ୍ଷତ୍ରିୟ ବଞ୍ଚିଥିବା ଯାଏଁ ରାଣା ପ୍ରତାପଙ୍କ ମୃତ୍ୟୁ ନାହିଁ ।

ସନ୍ଧ୍ୟାର ପବନରେ ଧୀରେ, ଅତି ଧୀରେ ବହି ଆସୁଛି ଦୂର ଉଦ୍ୟାନରୁ ଗୋଲାପର ଗନ୍ଧ—ସେଥି ସଙ୍ଗେ ସଙ୍ଗେ ଶୈଶବର ଆନନ୍ଦ ମୁହୂର୍ତ୍ତଗୁଡ଼ିକ ଜାଗିଉଠୁଛି ମୋ ସ୍ମୃତିରେ । ଏହିପରି ଏକ ସନ୍ଧ୍ୟାରେ ରାଜପୁତନାର ଜଣେ ବୃଦ୍ଧା ନାରୀ ମୋ ରାଜପ୍ରାସାଦରେ ମେବାର, ବୁନ୍ଦେଲ ଓ ଅମ୍ବର ରାଜବଂଶର କୀର୍ତ୍ତି ଗାଥା ଶୁଣାଇ ଯାଉଥିଲା—ଶୁଣୁ ଶୁଣୁ ମୁଁ ନିଜକୁ ଭୁଲି ଯାଇଥିଲି । ମୋତେ ଲାଗିଲା, ମୁଁ ଯେପରି ହିନ୍ଦୁସ୍ଥାନ ରାଜବଂଶର ସନ୍ତାନ ! ଆଗ୍ରହରେ କହିଲି, "ମୋର ପୂର୍ବ ପୁରୁଷ ଥିଲେ ବିଶ୍ୱବିଖ୍ୟାତ ବାଦଶାହ, ବାବର । ପ୍ରତାପ ସିଂହ ଥିଲେ ବାବରଙ୍କ ପ୍ରତିଦ୍ୱନ୍ଦ୍ୱୀ ରାଣା ସଂଗ୍ରାମ ସିଂହଙ୍କ ପୌତ୍ର । ତୈମୁରଙ୍କ ରାଜ୍ୟ ଫର୍ଗଣାରୁ ବିତାଡ଼ିତ ହୋଇ ବାଦଶାହ ବାବର ଭାରତ ସମ୍ରାଟ ଇବ୍ରାହିମ୍ ଲୋଧୀଙ୍କ ରାଜ୍ୟ ଜୟ କଲେ ।

"ଏକ କ୍ଷୁଦ୍ରବାହିନୀ ଉପରେ ଭରସା ରଖି ବାଦଶାହ ବାବର ରାଜସ୍ଥାନର ପ୍ରକାଣ୍ଡ ସେନାର ସମ୍ମୁଖୀନ ହୋଇଥିଲେ । ଆପଣଙ୍କ ମନେ ଅଛି ତ ପ୍ରିୟତମ, ପରାଜୟର ପୂର୍ବ ମୁହୂର୍ତ୍ତରେ ବାଦଶାହ ବାବର ତାଙ୍କ ସ୍ୱର୍ଣ୍ଣ ଓ ରୌପ୍ୟଖଚିତ ସୁରାପାତ୍ର ଦୂରକୁ ଫିଙ୍ଗି ଦେଇ ପ୍ରତିଜ୍ଞା କରିଥିଲେ, ଆଉ କେବେ ସୁରା ସ୍ପର୍ଶ କରିବେ ନାହିଁ । ତାଙ୍କ ମନ ପବିତ୍ର ହୋଇ ଆସିଲା । ବାଦଶାହଙ୍କୁ ଅନୁସରଣ କରି ସଙ୍ଗେ ସଙ୍ଗେ ତାଙ୍କର ତିନିଶହ ହତଭଗ୍ନ ଅନୁଚର ପ୍ରତିଜ୍ଞା କଲେ—ଆଉ ସୁରା ସ୍ପର୍ଶ କରିବେ ନାହିଁ । ସେମାନଙ୍କ ମନରେ ଜାଗି ଉଠିଲା ନୂତନ ଉନ୍ମାଦନା । କୋରାଣ ସ୍ପର୍ଶ କରି ସେମାନେ ଶପଥ କଲେ-ବିଜୟ ଅଥବା ମୃତ୍ୟୁ । 'ଆଲ୍ଲା ହୋ ଆକବର' ଧ୍ୱନି କରି ସେମାନେ ବିରାଟ ରାଜପୁତବାହିନୀ ଆକ୍ରମଣ କଲେ । ରାଣା ସଂଗ୍ରାମ ସିଂହ ବିଜୟ ମୁହୂର୍ତ୍ତରେ ରହିଥିଲେ ନିଶ୍ଚେଷ୍ଟ । ରାଣା ଯେପରି କାହାର ଅପେକ୍ଷା କରୁଥିଲେ । ବାଦଶାହ ବାବର ଲାଭକଲେ ବିଜୟର ଗୌରବ । କୁହନ୍ତୁ ତ ପ୍ରିୟତମ, ରାଣା ସଂଗ୍ରାମ କାହାପାଇଁ ଅପେକ୍ଷା କରୁଥିଲେ ?"

ଦୁଲେରା ଗବାକ୍ଷ ମଧ୍ୟ ଦେଇ ମୋ ଚକ୍ଷୁ ଉପରେ ଦୃଷ୍ଟିନିବଦ୍ଧ କଲେ । କହିଲେ, "ଆମେ ଭାରତୀୟ, ଆମେ ହିନ୍ଦୁ, ଆମେ ଅଦୃଷ୍ଟକୁ

ବିଶ୍ୱାସ କରୁ । ଅଦୃଷ୍ଟ ଉପରେ ଆସ୍ଥା ରଖି ଆମେ ଅନ୍ଧ ହୋଇଯାଉ । ମନେହୁଏ, ଏକମାତ୍ର ରାଣା ସଂଗ୍ରାମ ସିଂହ ଶେଷଥର ପାଇଁ ସ୍ୱାଧୀନ ଭାରତର ରଙ୍ଗୀନ ସ୍ୱପ୍ନ ଦେଖିଥିଲେ । କିନ୍ତୁ ବିଶ୍ୱାସଘାତକ ଦ୍ୱାରା ସେ ହୋଇଥିଲେ ପ୍ରତାରିତ । ସେ ଥିଲେ ବିରାଟ ଯୋଦ୍ଧା, ତାଙ୍କ ଦେହରେ ଥିଲା ଅଶୀଟି ଯୁଦ୍ଧର କ୍ଷତ ଚିହ୍ନ । ସେ ଥିଲେ ଏକଚକ୍ଷୁ, ଏକହସ୍ତ—ଭୟ ବା ଆଶଙ୍କାରେ ସେ ନିଶ୍ଚେଷ୍ଟ ହୋଇ ନ ଥିଲେ ।" ହଠାତ୍ ହସି ଉଠିଲେ ଦୁଲେରା, ସମୁଦ୍ରର ଢେଉପରି ଗମ୍ଭୀର ଉଚ୍ଛ୍ୱସିତ ହସ । ସମୁଦ୍ରର ଢେଉ ଯେପରି ଆଘାତ କରେ ବେଳାଭୂମିକୁ—ତାଙ୍କର ହସ ମୋତେ ସେହିପରି ଆଘାତ କଲା । ମୁଁ ଗବାକ୍ଷ ମଧ୍ୟ ଦେଇ ଦୁଲେରାଙ୍କୁ ଭଲଭାବେ ନିରୀକ୍ଷଣ କଲି—ସତେ ବା ମୋ ଚକ୍ଷୁ ଦୁଲେରାଙ୍କ ଚକ୍ଷୁକୁ ସ୍ପର୍ଶ କରିବ ! ମନେ ପଡ଼ିଲା ଚାରଣ ବରଦାୟୀଙ୍କ ଗାଥା—

ସ୍ୱପ୍ନ ସମ ଫିଙ୍ଗି ଦେଇ ଜୀବନର ପାତ୍ର
ଲମ୍ଫ ଦେଲେ ବୀରଶ୍ରେଷ୍ଠ ସମର ତରଙ୍ଗେ
କଲେ ଯାହା ରଣ-ତୀର୍ଥଭୂମେ ।

କହିଲି, "ପ୍ରିୟତମ, ରାଜପୁତ ମୃତ୍ୟୁକୁ ଭୟ କରେ, ଏ ଅପବାଦ କେହି ଯେପରି ନ ଦିଏ ।" ତାପରେ ସମ୍ରାଟ୍ ଆକବର ଏବଂ ବୀର ପ୍ରତାପ ସିଂହଙ୍କ କୀର୍ତ୍ତିଗାଥା ଆମେ ଆଲୋଚନା କଲୁ ।

ପ୍ରିୟତମ କହିଲେ, "ରାଣା ପ୍ରତାପ ଏକାକୀ ତାଙ୍କ ସାମନ୍ତମାନଙ୍କ ସହ ଆକବରଙ୍କ ବିରୁଦ୍ଧରେ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ରାଜସ୍ଥାନର ସମସ୍ତ ନରପତି ଦିଲ୍ଲୀ ବାଦଶାହଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ସେମାନେ ତ ଦିଲ୍ଲୀର ଅବଲମ୍ବନ ଓ ଅଳଙ୍କାର । ସେମାନେ ସମସ୍ତେ ଦିଲ୍ଲୀକୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ପଚିଶ ବର୍ଷ ଲାଗି ଚାଲିଲା ସେଇ ଭୀଷଣ ସଂଗ୍ରାମ । ଆରାବଳୀ ପର୍ବତମାଳା ହେଲା ରାଣା ପ୍ରତାପଙ୍କ ଦୁର୍ଗ । ନିବିଡ଼ ଅରଣ୍ୟ ହେଲା ରାଜପୁରୀ, ତୃଣ ଭୂମି ହେଲା ରାଣାଙ୍କ ଶଯ୍ୟା । ଫଳରୁଟି ହେଲା ତାଙ୍କ ରାଜଭୋଗ । ସମ୍ରାଟ ଆକବର ବାପ୍ପାରାଓଙ୍କ ରାଜଧାନୀ ଚିତୋର ନିର୍ମମ ଭାବରେ ଲୁଣ୍ଠନ କଲେ । ଆଜି ବି ରାଜପୁତନାର ଚାରଣ ଚିତୋର-ଦୁର୍ଗ ଧ୍ୱଂସର କାହାଣୀ ଶୁଣାଏ !

"ଆଜି ଚିତୋରେଶ୍ୱରୀଙ୍କର ମନ୍ଦିରରେ ସନ୍ଧ୍ୟାର ପ୍ରଦୀପ ଜଳେ ନାହିଁ—ରାଜପୁରୀର ଦାମାମା ଧ୍ୱନି ଆଜି ସ୍ତବ୍ଧ । ଦିନ ଥିଲା, ଯେତେବେଳେ ରାଣାଙ୍କ ଦୁର୍ଗ ପ୍ରବେଶ ଓ ନିଷ୍କ୍ରମଣ ଦାମାମା ଧ୍ୱନି ଦ୍ୱାରା ଘୋଷିତ ହେଉଥିଲା । ମାଲମ୍ବ୍ରାଧିପତି (୧) ସୂର୍ଯ୍ୟ – ଦ୍ୱାର ସମ୍ମୁଖରେ ନିହତ ହେବାପରେ ବାପ୍ପାରାଓଙ୍କ ବଂଶର କୌଣସି ସ୍ୱାଧୀନ ନରପତି ସେ ଦ୍ୱାର ଅତିକ୍ରମ କରିନାହାନ୍ତି ।

ତାପରେ ଦିନେ ସମ୍ବାଦ ଆସିଲା, ରାଣା ପ୍ରତାପ ସନ୍ଧି ଚାହାନ୍ତି । ରାଣା ପ୍ରତାପ ସମସ୍ତ ଦୈନ୍ୟ ସହ୍ୟ କରି ପାରିଥିଲେ, କିନ୍ତୁ ଅରଣ୍ୟରେ ଉପବାସକ୍ଲିଷ୍ଟ ସନ୍ତାନର ରୁଗ୍ଣ ସ୍ୱାସ୍ଥ୍ୟ ସହ୍ୟ କରିପାରିଲେ ନାହିଁ ।

ଆକବରଙ୍କ ରାଜପୁତ ସାମନ୍ତମାନେ ଉଦ୍‌ବିଗ୍ନ ହୋଇ ଉଠିଲେ । ଯଦିଓ ସେମାନେ ସମସ୍ତେ ଆକବରଙ୍କ ବଶ୍ୟତା ସ୍ୱୀକାର କରିଥିଲେ, ତଥାପି ସେମାନେ ରାଣା ପ୍ରତାପଙ୍କ ଅକଳଙ୍କ ଚରିତ୍ର ସ୍ମରଣ କରି ଗୌରବ ଅନୁଭବ କରୁଥିଲେ । ଯୋଧା କବି ପୃଥ୍ୱୀରାଜ ପ୍ରତାପଙ୍କ ନିକଟକୁ ଲେଖିଥିଲେ ହିନ୍ଦୁ ହିଁ ହେବ ହିନ୍ଦୁର ଆଶା । ଏ ପତ୍ର ପଢ଼ି ନୂତନ ପ୍ରେରଣାରେ ପୁଣି ଉଦ୍‌ବୁଦ୍ଧ ହୋଇ ଉଠିଲେ ରାଣା ପ୍ରତାପ । ଏଥରର ଅଭିଯାନ ତାଙ୍କୁ ଆହୁରି ଗୌରବାନ୍ୱିତ କଲା । ଜୀବନରେ ଯେପରି, ମୃତ୍ୟୁରେ ସେହିପରି, ସେ ରହିଲେ ସ୍ୱାଧୀନ । କିନ୍ତୁ ତାଙ୍କର ମୃତ୍ୟୁ ହେଲା ଚିତୋର ଦୁର୍ଗର ବାହାରେ । ରାଣା ପ୍ରତାପଙ୍କ ପୁତ୍ର ଅମର ସିଂ ଶତ୍ରୁବିତାଡ଼ିତ ହୋଇ ଆମ୍ଭମାନଙ୍କ ସମ୍ରାଟ ଶାହାଜାହାନଙ୍କ ନିକଟରେ ଅବନମିତ କଲେ ରାଜପୁତର ଲାଲପତାକା—ସେ ପତାକା ଯୁଗ ଯୁଗ ଧରି ରକ୍ତ ରଞ୍ଜିତ ହୋଇ ଚିତୋର ଦୁର୍ଗର ଗୌରବ ଘୋଷଣା କରୁଥିଲା । ରାଣାଙ୍କ ଚିତା ଭସ୍ମ ସୂର୍ଯ୍ୟ ଦ୍ୱାର (୨) ମଧ୍ୟଦେଇ ବୁହା ହୋଇ ନିଆଗଲା—

ସେଇ ଥିଲା ଚିତୋରର ଶେଷ ସ୍ୱାଧୀନ ରାଣାଙ୍କ ଚିତାଭସ୍ମ—ସାମନ୍ତ ନରପତିର ନୁହେଁ ।"

---

(୧) ଚିତୋରର ପ୍ରଧାନ ସାମନ୍ତନଗର ମାଲୁମ୍ବ୍ରା ।

(୨) ଚିତୋର ଦୁର୍ଗର ବୃହତ୍ତମ ଦ୍ୱାର ସୂର୍ଯ୍ୟ ଦ୍ୱାର । ତାର ଏକ ପାର୍ଶ୍ୱରେ ଥିଲା ରାଜଶ୍ମଶାନ ।

ଚିତୋରର ସାମନ୍ତ ନରପତି !!—ଏହି ଧ୍ୱନି ଯେପରି ପ୍ରତିଧ୍ୱନିତ ହେଲା ସମଗ୍ର ଉଦ୍ୟାନ ବାଟିକାରେ । ସେ ସ୍ୱର କିନ୍ତୁ ଦୁଲେରିଙ୍କ କଣ୍ଠ ସ୍ୱର ପରି ନୁହେଁ । ମନେ ହେଲା, ସେ ସ୍ୱର ଯେପରି ଆଉ କୌଣସି ଜଗତରୁ ଆସୁଛି ।

ଦୁଲେରି କହି ଚାଲିଲେ—ଯେପରି କହୁ ଦୂରାଗତ କଣ୍ଠସ୍ୱର— "ଆଜି ବି ରାଜପୁତ ନାରୀ ଦେବତାର ଚରଣରେ ଅର୍ଘ୍ୟ ଦିଏ, ଯେପରି ଦେଉଥିଲା ଅତୀତ ଯୁଗରେ । ଆଜି ବି ରାଣୀ ପଦ୍ମିନୀଙ୍କ ଭଗ୍ନ ପ୍ରାସାଦରେ ପ୍ରାଚୀର ଉପରେ ବସି କୋଇଲି ବସନ୍ତର ଗାନ ଗାଏ । ଭଗ୍ନ ସ୍ତମ୍ଭ ଉପରେ ବସି ମୟୂର ତାର ବହୁବର୍ଣ୍ଣଶୋଭିତ ପୁଚ୍ଛ ପ୍ରସାରିତ କରି ନୃତ୍ୟ କରେ, ରକ୍ତଗ୍ରୀବ ସବୁଜ ଭଗ୍ନମନ୍ଦିର ଚୂଡ଼ାରେ ବସି ଅପୂର୍ବ ସ୍ୱରରେ ଡାକେ । ରାଣା କୁମ୍ଭଙ୍କ ମେଘସ୍ପର୍ଶୀ ବିଜୟ ସ୍ତମ୍ଭ (୧) ଅତୀତ ଯୁଗର ବହୁ କହୁ ଗୌରବୋଜ୍ଜ୍ୱଳ ସ୍ମୃତି ବହନ କରେ । ସେମାନେ ଚିତୋର ଧ୍ୱଂସର କୌଣସି ସାକ୍ଷୀ ନ ହୋଇପାରନ୍ତି; କିନ୍ତୁ ବିଜୟ ସ୍ତମ୍ଭଗୁଡ଼ିକ ତାକଯ୍ୟର ମୀରବ ସାକ୍ଷୀ । ବିଜୟ ସ୍ତମ୍ଭର ପାଦଦେଶରେ ଗୁରଣ କରି ତାର ବୀଣାର ସ୍ୱରରେ ବୀର ପୁତ୍ତା ଓ ଜୟମଲ୍ଲଙ୍କ (୨) ଗୌରବ ଗାନ କରେ । ସେମାନେ ଚିତୋର ରକ୍ଷା କରିବା ପାଇଁ ଆକବରଙ୍କ ସଙ୍ଗେ ସଂଗ୍ରାମ କରି ପ୍ରାଣ ଉତ୍ସର୍ଗ କରିଥିଲେ । ବୀର ପୁତ୍ତାଙ୍କ ମା,ଆ ଓ ସ୍ତ୍ରୀ ହାତରେ ତରବାରି ଧରି ସୈନ୍ୟମାନଙ୍କ ସମ୍ମୁଖରେ ଠିଆ ହୋଇ ସୈନ୍ୟ-ମାନଙ୍କୁ ଉତ୍ସାହିତ କରୁଥିଲେ—ସେମାନେ ବି ଯୁଦ୍ଧରେ ପ୍ରାଣ ଦେଇଥିଲେ । ଆଜି ବି ଭୂରଣ ଚିତୋରରେ ଜହର ବ୍ରତର କାହାଣୀ ଶୁଣାଏ । ମର୍ଯ୍ୟାଦାସ୍ପର୍ଶୀ ରାଜପୁତ ମହିଳା ଶତ୍ରୁ ହସ୍ତରେ ବନ୍ଦିନୀ ହେବା ପୂର୍ବରୁ ଆତ୍ମରକ୍ଷା ପାଇଁ ଅଗ୍ନିଶିଖା ଆଲିଙ୍ଗନ କରି ଆତ୍ମବିସର୍ଜନ କରୁଥିଲେ । ଆଲ୍ଲାଉଦ୍ଦିନ

---

(୧) ବିଜୟର ଚିହ୍ନସ୍ୱରୂପ ରାଣା କୁମ୍ଭ ଯେଉଁ ସମସ୍ତ ସ୍ତମ୍ଭ ନିର୍ମାଣ କରିଥିଲେ, ତାହା ଏବେ ବି ବିଦ୍ୟମାନ ।

(୨) ଆକବର ଚିତୋର ଅଭିଯାନ ବେଳେ ଦୁଇ ଜଣ ରାଜପୁତ ବୀର ପୁତ୍ତା ଓ ଜୟମଲ୍ଲ ଭୀଷଣ ପ୍ରତିରୋଧ କରିଥିଲେ । ସେମାନଙ୍କ ମୃତ୍ୟୁପରେ ସମ୍ରାଟ ଆକବର ସେମାନଙ୍କ ପାଇଁ ବିରାଟ ସ୍ମୃତିସ୍ତମ୍ଭ ନିର୍ମାଣ କରିଥିଲେ । ସେମାନଙ୍କ ମୃତ୍ୟୁପରେ ସମସ୍ତ ରାଜପୁତ-ନାରୀ ଜହର ବ୍ରତ ଗ୍ରହଣ କରି ଅଗ୍ନିକୁଣ୍ଡରେ ପ୍ରାଣ ବିସର୍ଜନ କରିଥିଲେ ।

ଚିତୋର ଆକ୍ରମଣ କରିବା ସମୟରେ ପଦ୍ମିନୀ ଅନ୍ୟାନ୍ୟ ପୁରନାରୀଙ୍କ ଗହଣରେ ଭୂ-ନିମ୍ନସ୍ଥ ଦୁର୍ଗପଥରେ ଚିତା ଆରୋହଣ କରିଥିଲେ । ପ୍ରବାଦ ମୁଖରୁ ଆଜି ବି ଶୁଣାଯାଏ ସେଇ ମରଣର ସଙ୍ଗୀତ, ସେଇ ଜୀବନର ଜୟଗାନ । ମୃତ୍ୟୁ ବରଣ କରି ବି ସେମାନେ ହେଲେ ଅମର !

"ବହୁଦୂରର ଗହନ ଅରଣ୍ୟରେ ବସିଥିଲେ ସିଦ୍ଧ ମହାପୁରୁଷ, ଧ୍ୟାନମଗ୍ନ । ସେ ଲକ୍ଷ୍ୟ କଲେ—ମଣିଷ ଯେଉଁଥି ପାଇଁ ଯନ୍ତ୍ରଣା ଭୋଗକରେ, ଯାହା ପାଇଁ ସଂଗ୍ରାମ କରେ, ଯା ପାଇଁ ପ୍ରାଣ ବିସର୍ଜନ କରେ, ତାର କୌଣସି ମୂଲ୍ୟ ହିଁ ନାହିଁ । ସେ ସେଇ ବିରାଟ ବ୍ରହ୍ମକୁ ଉପଲବ୍ଧି କରୁଥିଲେ —ଏକମେବା ଦ୍ୱିତୀୟମ୍ । ତାଙ୍କ ନିକଟରେ ସମସ୍ତ ସ୍ୱର ଲୀନ ହୋଇ ଯାଉଥିଲା ଏକ ମାତ୍ର ସଙ୍ଗୀତରେ । ସକଳ ବର୍ଣ୍ଣବୈଚିତ୍ର୍ୟ ମିଳିତ ହେଉଥିଲା ଏକମାତ୍ର ଆଲୋକ ଶିଖାରେ । ସେଇ ବିରାଟ ଆଲୋକ ଶିଖା ସିଦ୍ଧ ମହାପୁରୁଷଙ୍କ ଆତ୍ମାକୁ ଉଜ୍ଜ୍ୱଳ କରୁଥିଲା । ସମସ୍ତ ଇନ୍ଦ୍ରିୟର ପ୍ରଶାନ୍ତି ମଧ୍ୟରେ ସେ ଆତ୍ମୋପଲବ୍ଧି କରୁଥିଲେ । ସେଇ ସିଦ୍ଧ ପୁରୁଷ ହିଁ ଥିଲେ ଭାରତର ପ୍ରକୃତ ସମ୍ରାଟ ।

"ଏଇ ସତ୍ୟ ସମ୍ରାଟ ଆକବର ଉପଲବ୍ଧି କରିଥିଲେ । ଏକଳା ମନ୍ଦିରର ବେଦୀ ଉପରେ ସେ ରଖିଥିଲେ କୋରାଣକୁ । ଚନ୍ଦ୍ର ଓ ତାରକା ମଣ୍ଡିତ ଆକାଶତଳେ ସେ ଉପାସନା କରୁଥିଲେ । ସେ ଚାହୁଁଥିଲେ ବିଶ୍ୱର ପ୍ରତି ମଣିଷ ସେଇ ବିରାଟ ପୂଜାମଣ୍ଡପକୁ ତାର ପୂଜାମଣ୍ଡପ ରୂପେ ଗ୍ରହଣ କରୁ । ସେଇ ପରମ ବିଦେଶୀ ଆମ ବିରୁଦ୍ଧରେ ଅସ୍ତ୍ରଧାରଣ କରିଥିଲେ । କିନ୍ତୁ ସେ ଆମ ପାଇଁ ମୁକ୍ତ ରଖିଥିଲେ ତାଙ୍କ ପ୍ରାସାଦର ଦ୍ୱାର । ପ୍ରାଚୀନ ଯୁଗର ଋଷିଙ୍କ ପରି ତାଙ୍କର ଥିଲା ଅସାଧାରଣ ଶକ୍ତି । ପ୍ରଚଣ୍ଡ ଶକ୍ତିକୁ ସଂଯତ କରି ସେ ହିନ୍ଦୁକୁ ମୁସଲମାନ ନିକଟରେ ସମାନ ଆସନ ଦେଇଥିଲେ ।

"ରାଣା ପ୍ରତାପଙ୍କ, ସଙ୍ଗେ ରାଜପୁତ ସ୍ୱାଧୀନତାର ଚିହ୍ନ ଶେଷ ହେଲା । ଅବଶ୍ୟ ଏହାପରେ ଭାରତବାସୀ ଭାରତର ଗୌରବର ଏକ ନୂତନ ଦିଗନ୍ତ ଆବିଷ୍କାର କଲେ । ଯେତେଦିନ ଯାଏଁ ସମ୍ରାଟ

ଆକବରଙ୍କ ଆଦର୍ଶ ତୈମୁର ବଂଶଧରମାନଙ୍କୁ ଉଦ୍‌ବୁଦ୍ଧ କରିବ, ସେତେ ଦିନ ଯାଏଁ ରଣା ପ୍ରତାପଙ୍କ ବଂଶଧରଗଣ ମଧ୍ୟ ସେଇ ଆଦର୍ଶରେ ଅନୁପ୍ରାଣିତ ହେବେ ! ମୋ ପୂର୍ବ ପୁରୁଷର ତରବାରିକୁ ସାକ୍ଷୀରଖି ମୁଁ ଶପଥ କରୁଛି, —ଯେତେ ଦିନ ବଞ୍ଚିଥିବି, ରାଜକୁମାରୀ ଜାହାନାରାଙ୍କ ପାଇଁ, ଶାହାଜାଦା ଦାରାଙ୍କ ପାଇଁ, ସମ୍ରାଟ୍ ଶାହାଜାହାନଙ୍କ ପାଇଁ ଜୀବନ ଉତ୍ସର୍ଗ କରିବି···।"

ଏହା କହି ଦୁଲେର ତାଙ୍କ ତରବାରିଟି ଊର୍ଦ୍ଧ୍ୱକୁ ଉତ୍ତୋଳନ କଲେ । ତାଙ୍କ ତରବାରି ମସ୍ତକର ଚତୁଃପାର୍ଶ୍ୱରେ ଜ୍ୟୋତିରେଖାର ବଳୟ ପରି ଉଦ୍‌ଭାସିତ ହୋଇଉଠିଲା ।

ସେଇ ଶୁଭଦିନ ପାଇଁ ଭାରତବର୍ଷ ଯୁଗ ଯୁଗ ଧରି ଅପେକ୍ଷା କରି ଥାଉଛି ! ଦିନେ ନା ଦିନେ ସେ ସୁଦିନ ଆସିବ ।



# ଚତୁର୍ଥ ସ୍ତବକ

ଆଲୋକ ସବୁ ଲିଭିଗଲାଣି । ଆକାଶରେ କେବଳ ବହୁ ତାରା ଜଳୁଛନ୍ତି । ମୁଁ ମୋ ବାରନ୍ଦାରେ ବସିଛି—ମୋ ପାଦତଳେ ବହି ଯାଉଛି ଅବିରାମ ଜଳସ୍ରୋତ—ନଦୀ ଧାରରେ ଠିଆ ହୋଇଛି ଗୋଟିଏ ତେନ୍ତୁଳି ବୃକ୍ଷ । ବୃକ୍ଷର ପତ୍ରରାଜି ମୋ ମସ୍ତକ ଉପରେ ଆବରଣ ସୃଷ୍ଟି କରୁଛି ।

ଦୁଲେରା ଅନ୍ତର୍ହିତ ହୋଇଗଲେଣି । ମୁଁ କିନ୍ତୁ ସେଇ ନିବିଡ଼ ନୀଳ ରାତିର ଅନ୍ଧକାରରେ ପ୍ରତି ମୁହୂର୍ତ୍ତରେ ସର୍ବଦା ଅନୁଭବ କଲି ତାଙ୍କର ସାନ୍ନିଧ୍ୟ । ରାତିର ଶୀତଳତା ମୋର ଜ୍ୱଳମାନ ଅଙ୍ଗ ପ୍ରତ୍ୟଙ୍ଗକୁ ଯେପରି ଶୀତଳ କରି ଦେଉଥିଲା । ବାରଣ୍ଡାରେ ଫୁଟିଥିଲା ଅସଂଖ୍ୟ ଯୁଇ ଓ ମଲ୍ଲୀ ଫୁଲ । ମୁଁ ଆଲୋକରେ ବସି ଶୁଭ୍ର ପୁଷ୍ପରେ ମାଳାଟିଏ ଗୁନ୍ଥିଲି । ଦୁଲେରାଙ୍କ ପରିଚ୍ଛଦ ଥିଲା ଶୁଭ୍ର—ପରିଚ୍ଛଦର ମଧ୍ୟସ୍ଥଳରେ ସ୍ୱର୍ଣ୍ଣଖଚିତ କମର-ବନ୍ଧ । କେବଳ ଚନ୍ଦ୍ରର ଚିନ୍ତାରେ ଯେପରି ସମୁଦ୍ରରେ ସୃଷ୍ଟି ହୁଏ ଜୁଆର ଓ ଭଟ୍ଟା, ସେହିପରି ଦୁଲେରାଙ୍କ ଚିନ୍ତା ହିଁ ନିୟନ୍ତ୍ରଣ କରୁଥିଲା ମୋ ଜୀବନର ଗତି । ତାଙ୍କରି ଚିନ୍ତା ହିଁ ମୋ ଜୀବନର ଆନନ୍ଦ ଓ ଉଚ୍ଛ୍ୱାସ ।

ଆଜି ପରି ଆଉ କେଉଁ ଦିନ ଆକାଶ ମୋର ଏତେ ନିକଟକୁ ଆସିଥିଲା କି ? ଆଜିର ଆକାଶ ଯେପରି ମୋ ପାଇଁ ସ୍ୱଚ୍ଛ ପଦ୍ମରାଗଖଚିତ ଗୋଟିଏ ଚନ୍ଦ୍ରାତପ ! ଆଜିର ଧରଣୀ ମୋର ଉତ୍ସବ କକ୍ଷ, ତାରକାରାଜି ମୋ ଉତ୍ସବର ଉଜ୍ଜ୍ୱଳ ପ୍ରଦୀପ ହୋଇ ଜଳୁଛନ୍ତି, ନଦୀର କଳଧ୍ୱନି ମୋ ବୀଣାର ସଂଗୀତ, ମୁଁ ମୋ ଆନନ୍ଦ ଉତ୍ସବରେ ଯୋଗ ଦେବାପାଇଁ ସମସ୍ତ ବିଶ୍ୱକୁ ନିମନ୍ତ୍ରଣ ଜଣାଉଛି । ଆଜି ମୋର ସ୍ୱୟମ୍ବର···!

ମୁଁ ଯେପରି ମୋର ପିତା ସମ୍ରାଟ ଶାହାଜାହାନଙ୍କ ସ୍ୱର୍ଣ୍ଣଖଚିତ ସିଂହାସନ ନିକଟରେ ବସିଥିଲି ! ଦେଖିଲି, ଦେଓ୍ୱାନ୍-ଇ-ଆମରେ

ସମସ୍ତ ସାମନ୍ତ ନରପତି ଏବଂ ସମ୍ଭ୍ରାନ୍ତ ପରିଷଦ ସମବେତ । ସର୍ବଶେଷରେ ଆସିଲେ ମୋର ଦୁଲେରା — ଧୀର ନିଃଶବ୍ଦ ପଦକ୍ଷେପ । ପୂର୍ବପରି ଉନ୍ନତ ଶିର, ଚନ୍ଦ୍ର ପରି ଉଜ୍ଜ୍ୱଳ, ସାମନ୍ତଗଣ ତାଙ୍କ ନିକଟରେ ତାରକା ପରି ନିଷ୍ପ୍ରଭ । ମୋର ଫୁଲ ମାଳାଟି ଦୁଲେରାଙ୍କ ବକ୍ଷ ମଣ୍ଡନ କଲା !

ଝଞ୍ଜା ପବନରେ ପଥର ମର୍ମର ପରି, ଦିଲ୍ଲୀରେ ଦୁଲେରାଙ୍କ ନାମ ବିଚ୍ଛୁରିତ ହୋଇପଡ଼ିଲା । ମୁଁ କିନ୍ତୁ ପ୍ରିୟତମଙ୍କ ନୟନ ଦୁଇଟିକୁ ହିଁ ଦେଖୁଥିଲି, — ସମୁଦ୍ର ପରି ଗମ୍ଭୀର, ସୂର୍ଯ୍ୟ ପରି ଭାସ୍ୱର । ତା'ରି ମଧ୍ୟରେ ମୁଁ ଆଜି ଖୋଜି ପାଇଲି ମୋ ଜୀବନର ସଖାଙ୍କୁ — ଯାହାଙ୍କୁ ମୁଁ ଚିରକାଳ ଖୋଜୁଥିଲି — ଯେ ମୋତେ ଉପଯୁକ୍ତ ପଥ ଦେଖାଇ ପାରିବେ — ଯାହାଙ୍କୁ ମୁଁ ଚିରକାଳ ଅନୁସରଣ କରିପାରିବି ।

ସ୍ୱାମୀ ବିହୀନା ନାରୀ ଓ ସୂର୍ଯ୍ୟହୀନ ଦିବସ, ଉଭୟ ନିରର୍ଥକ ।

ମୁଁ ମୋ ବାରନ୍ଦାରେ ବସି ସ୍ୱପ୍ନ ଦେଖୁଛି — ବିବାହର ଉତ୍ସବ-- ରାତିରେ ଆଲୋକର ମାଳା ପରି ଖଦ୍ୟୋତଗଣ ମୋ ସମୀପରେ ନୃତ୍ୟ କରୁଛନ୍ତି । ଚିନ୍ତା-ଶକ୍ତି ଦ୍ୱାରା ସ୍ୱପ୍ନକୁ ବାସ୍ତବରେ ପରିଣତ କରିବାର ରହସ୍ୟ ଶେଖ୍-ଇବନ୍-ଉଲ୍-ଆରବୀ ଜାଣନ୍ତି । ଦୁଲେରାଙ୍କ ନିକଟକୁ ଚିଠି ଲେଖିବାକୁ ଇଚ୍ଛାହେଲା — ସେ ଚିଠିରେ ଜଣାଇବି ଅନ୍ତରର ସମସ୍ତ ଗୋପନ ବାସନା — ଦାରା ଯଦି ଯୁଦ୍ଧରେ ବିଜୟୀ ହୁଅନ୍ତି, ତେବେ ସମ୍ରାଟ ଆକବରଙ୍କ ବିଧାନକୁ (୧) ପରିବର୍ତ୍ତନ କରି ତାଙ୍କ ଭଉଣୀକୁ ସ୍ୱେଚ୍ଛାରେ ବର ବରଣ କରିବା ପାଇଁ ଅଧିକାର ଦେବେ ! ମୁଁ ଜଣାଇଦେଲି, ସୀତା ଶ୍ରୀ ରାମଚନ୍ଦ୍ରଙ୍କୁ ବନଗମନ ସମୟରେ କହିଥିଲେ, "ଯଦି ମୋ ସ୍ୱାମୀ ରାଜ-ପ୍ରାସାଦରେ ଅଥବା ସ୍ୱର୍ଗରେ ଦେବତାଙ୍କ ସଙ୍ଗରେ ବିଚରଣ କରନ୍ତି, ଯଦି ଶୂନ୍ୟ ଲୋକରେ ବା ଗଭୀର ଅରଣ୍ୟରେ ଭ୍ରମଣ କରନ୍ତି, ତେବେ ସ୍ୱାମୀଙ୍କ ଚରଣ ଛାୟା ହିଁ ସ୍ତ୍ରୀର ଏକମାତ୍ର ଆଶ୍ରୟ । ଭ୍ରମଣ ସମୟରେ ପୃଥିବୀର ଧୂଳି ଝଡ଼ରେ ଯଦି ସ୍ତ୍ରୀର ନିଃଶ୍ୱାସ ରୁଦ୍ଧ ହୋଇଯାଏ, ତେବେ ସେ ଧୂଳିକଣା ସ୍ତ୍ରୀ ପାଇଁ ମଧୁର ଚନ୍ଦନ--ଗନ୍ଧବାହୀ କୁଙ୍କୁମ ।"

---

(୧) ଆକବରଙ୍କ ବିଧାନ ଥିଲା, ମୋଗଲ ବଂଶର ରାଜକୁମାରୀମାନଙ୍କର ବିବାହ ହେବ ନାହିଁ । ପାରିବାରିକ ମନୋମାଳିନ୍ୟ ଏବଂ ସିଂହାସନ ପାଇଁ ପ୍ରତିଦ୍ୱନ୍ଦ୍ୱିତାର ପରିସର ସଙ୍କୀର୍ଣ୍ଣ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । କିନ୍ତୁ ସେ ଉଦ୍ଦେଶ୍ୟ ସଫଳ ହେଲା ନାହିଁ । ସିଂହାସନ ପାଇଁ ଯୁଦ୍ଧ କରି ମୋଗଲ ବଂଶର ପତନ ହେଲା ।

ମୁଁ ମୋ କାହାଣୀ ଆହୁରି ଲେଖିଥାନ୍ତି—କିନ୍ତୁ ଦେଖୁଛି, ରାତ୍ରିର କୋଳରେ ରକ୍ତିମ ଆଭା । ଏଇ ସମୁଦ୍ରରେ ଫୁଟି ଉଠୁଛି, ଅରୁଣ ଆଭାସ । ଅସମୟରେ ଶୁଖିଯାଉଛି ମୋର ଫୁଲମାଳ । ଆଜି କିନ୍ତୁ ମୋ ଜୀବନର ନୂତନ ଅରୁଣୋଦୟ ହୋଇଛି । ତାହା କ'ଣ ଆମରଣ ମୋ ଦିନଗୁଡ଼ିକୁ ଆଲୋକିତ ରଖିପାରିବ ? ମୋ ହୃଦୟ ଆଜି ନବରୂପରେ ରୂପାୟିତ ହୋଇ ଉଠୁଛି । ମୋ ହୃଦୟ କିନ୍ତୁ ମୋ ନିଜ କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ—ଅନ୍ୟ ଜଣଙ୍କର କଥା ଶୁଣିବାକୁ ସେ ବ୍ୟାକୁଳ । ମୋର ସମସ୍ତ ଅସ୍ତିତ୍ୱ ଦୁଲେରଙ୍କ ମଧ୍ୟରେ ଲୁପ୍ତ ହୋଇ ଯାଇଛି । ପ୍ରିୟତମଙ୍କ ମଧ୍ୟଦେଇ ମୁଁ ନିଖିଳ ବିଶ୍ୱରାଜ୍ୟରେ ବିଲୀନ ହୋଇ ଯାଇଛି—ମୋର ଆତ୍ମା ଅପୂର୍ବ ଆଲୋକରେ ଉଦ୍‌ଭାସିତ ହୋଇ ଉଠୁଛି—କାଳ ଓ ଅନନ୍ତ—ସମସ୍ତ ବ୍ୟବଧାନ ଲୀନ ହୋଇ ଯାଇଛି । ଗୋପନ ରହସ୍ୟର ଅର୍ଗଳ ଆଜି ଯେପରି ମୋ ପାଇଁ ମୁକ୍ତ·····!

ପ୍ରଭାତର ଆକାଶ ମୋ ଚିନ୍ତାର ସ୍ରୋତକୁ ବିରାଟର ଦିଗକୁ ନେଇ ଯାଉଛି । ସ୍ୱଚ୍ଛ ନିର୍ମଳ ବାୟୁର ସମୁଦ୍ରରେ ସୂର୍ଯ୍ୟ ନିକଟରେ ସ୍ୱର୍ଗର ନୀଳ ଅପ୍‌ସରାଗଣ ଘୂରି ବୁଲୁଛନ୍ତି—ସେମାନେ ଯେପରି ସମସ୍ତ ଆକାଶ ପରିମାପ କରିବାକୁ ଚାହାନ୍ତି । ମର୍ମର ପ୍ରାଚୀର ଉପରେ "ମୀମାହାନ୍" ପକ୍ଷୀ ବସିଛି—ତା କଣ୍ଠରେ ପ୍ରଭାତର ସଂଗୀତ । ନବ ପ୍ରସ୍ଫୁଟିତ ଗୋଲାପ ତାର ସୁଗନ୍ଧରେ ସୂର୍ଯ୍ୟ ଦେବତାଙ୍କ ପାଇଁ ଅର୍ଘ୍ୟ ସାଜିଛି ।

ତା ପରେ ମୁଁ ଶୁଣିଲି, ଫିରୋଜଶାହଙ୍କ ପରିଖାର ଅନ୍ୟ ପାର୍ଶ୍ୱରେ ଉଷ୍ଟ୍ରମାନଙ୍କ ଘଣ୍ଟିର ଶବ୍ଦ । ଚାଲିଛନ୍ତି ବଣିକ ଦଳ—ରାତି ଆଗତ ହେବା ପୂର୍ବରୁ ସେମାନଙ୍କୁ ଦିନର କାର୍ଯ୍ୟ ଶେଷ କରିବାକୁ ହେବ । କେଉଁ ଏକ ପାରସ୍ୟ—ସଂଗୀତ ପ୍ରଭାତକୁ ଆକୁଳ କରି ଦେଉଛି । ଆବୁସାଇଦଙ୍କ ପ୍ରେମ ସଙ୍ଗୀତ ମୋ ଅନ୍ତରରେ ଧ୍ୱନିତ ହୋଇଉଠିଲା,

"ସମାଧିର ଅଭ୍ୟନ୍ତରେ ମୃତ୍ତିକାର ଅନ୍ତରାଳେ
ଭଙ୍ଗୁର ଏ ଦେହ ମୋର ଯଦି ଯାଏ ମିଶି
ଧରିତ୍ରୀର ଧୂଳିରେ ଯଦି ହଜିଯାଏ ଅସ୍ଥି ମୋର,
ତଥାପି ତୁମର ଡାକେ ଉଠିବି ମୁଁ ହସି !"



# ପଞ୍ଚମ ସ୍ତବକ

ନଇଁ ଆସୁଛି ଅନ୍ଧାର — ଅଙ୍ଗୁରିବାଗ୍‌ରୁ ମୁଁ ଆଲୋକ ଉଦ୍‌ଭାସିତ ଜେସ୍‌ମିନ୍ ପ୍ରାସାଦ ଅଭିମୁଖେ ଚାଲିଛି । ଏଠି ଚୁପ୍‌ଚାପ ବସି ଲେଖି ପାରିବି — ମଣିଷର ପ୍ରତିଧ୍ୱନି ମୋ ଚିନ୍ତାକୁ ବ୍ୟାହତ କରି ପାରିବ ନାହିଁ । କୌଣସି ମଣିଷର କଣ୍ଠସ୍ୱର ଏଠି ମୋତେ ମୋ ଅବସ୍ଥାକୁ ସ୍ମରଣ କରାଇ ଦେଇ ପାରିବ ନାହିଁ — ମୋ ଅଶାନ୍ତକୁ ନିଦରୁ ଉଠାଇ ଦେଇ ପାରିବ ନାହିଁ — ବହନ କରି ଆଣିବ ନାହିଁ ମୋ ବାସ୍ତବ ଜୀବନର ସମ୍ବାଦ । ସମ୍ରାଟ ଶାହାଜାହାନ ଆଜି ମୋତେ ଡକାଇଛନ୍ତି । ଆଉରଙ୍ଗଜେବ୍ ପିତାଙ୍କ କାରବାସ ଯନ୍ତ୍ରଣା ଲାଘବ କରିବା ପାଇଁ କେତୋଟି ହାତୀ ଓ ବାଘ ପଠାଇବାକୁ ଅନୁଗ୍ରହ ପୂର୍ବକ ରାଜି ହୋଇଛନ୍ତି । ହତଭାଗ୍ୟ ଶାହାଜାହାନ ! ଆଜି ରାତିରେ ମୁଁ ସମ୍ରାଟଙ୍କ ନିକଟକୁ ଯିବି ନାହିଁ — ଆଜି ସମ୍ରାଟଙ୍କର ମନ୍ତ୍ରୀ ଓ କାଙ୍କଣୀମାନଙ୍କ ସଙ୍ଗ — ବିଳାସର ଦିନ । ଅଶାନ୍ତର ଦୁଃଖ ମୋ ହୃଦୟକୁ ତିଳେ ତିଳେ ଦଗ୍ଧ କରୁଛି । ମୋ ଦୁଃଖର କାହାଣୀ ମୁଁ ଆଜି ମୋର ଆଗରେ ହିଁ କହିବି । ମୁଁ ହିଁ ମୋ ନିଜର ଅପରିଚିତ ବନ୍ଧୁ । ଶେଷଯାଏ ମୁଁ ଲେଖିଯିବି — ଯଦିଓ ମୁଁ ଜାଣେ, ମୋ ଲେଖାର କେବେ ସମାପ୍ତି ନାହିଁ ......।

ସେହି ଦିନ ପ୍ରାସାଦ ଛାତରେ ବସି ମୁଁ ଭାବୁଥିଲି, ପ୍ରିୟତମଙ୍କ ପାଖକୁ ଚିଠି ଲେଖିବି । ମୋ ନାଜୀର ( କାଙ୍କଣି ) ତାଙ୍କଠାରୁ ମୋ ପତ୍ରର ଉତ୍ତର ନେଇ ଆସିଥିଲା । ଶିବିକାରେ ଆରୋହଣ କରି ଦିଲ୍ଲୀ ନିକଟବର୍ତ୍ତୀ ଭଗ୍ନଦୁର୍ଗ ଅନୁରୂପ ଏକ ମସ୍‌ଜିଦ୍ ଅଭିମୁଖେ ମୁଁ ଯାତ୍ରା କଲି । ମୁଁ ଜାଣିଥିଲି, ସେଇଠି ମିଳିବ ପରମ ଶାନ୍ତି । ଆଶାକମ୍ପିତ ହୃଦୟରେ ମୁଁ ମସ୍‌ଜିଦ୍‌ର ଭଗ୍ନ ସୋପାନ ଶ୍ରେଣୀ ଅତିକ୍ରମ କଲି । ବନ ଫୁଲର ତୀବ୍ର ଗନ୍ଧ [illegible] ମୋତେ ବିଭ୍ରାନ୍ତ କରିଦେଲା । ପ୍ରାଚୀର ଉପରେ ବସିଥିଲା ଗୋଟିଏ ସବୁଜ ରଙ୍ଗର ପକ୍ଷୀ — କର୍କଶ କଣ୍ଠରେ ସେ ମୋତେ ଅଭିବାଦନ ଜଣାଇଲା ।

ପ୍ରବେଶ ପଥ ପାର୍ଶ୍ୱରେ ହରିଣ ଚର୍ମ ଉପରେ ଜଣେ ସନ୍ନ୍ୟାସୀ ଉପବିଷ୍ଟ ଥିଲେ – ନିକଟରେ ଦଣ୍ଡ କମଣ୍ଡଳୁ । ତାଙ୍କ ମସ୍ତକ ଶୁଭ୍ର ଜଟାଶୋଭିତ – । ସେ ଥିଲେ ଧ୍ୟାନ ମଗ୍ନ । ତାଙ୍କର ରୂପ ଥିଲା ଅପୂର୍ବ । ସେ ହିନ୍ଦୁ ଶାସ୍ତ୍ରାନୁସାର ମନ୍ତ୍ର ଉଚ୍ଚାରଣ କରୁଥିଲେ । ମନ୍ତ୍ରର ଅର୍ଥ ଏହିପରି, – ଏହି ମର ଦେହରେ ଯେ ଅମରତ୍ୱ ଇଚ୍ଛାକରେ, ସେ ନିର୍ବୋଧ । ଏହି ଦେହ 'ଶିକାମୋର' (୧) ବୃକ୍ଷର ଶାଖା ପରି କ୍ଷଣ ଭଙ୍ଗୁର –, ସମୁଦ୍ରର ଫେନରାଶି ପରି କ୍ଷଣ ଭଙ୍ଗୁର । ସେ ସନ୍ନ୍ୟାସୀ ଥିଲେ ଦୃଷ୍ଟିହୀନ – ତାଙ୍କ ଭିକ୍ଷା ପାତ୍ରରେ କେତୋଟି ସ୍ୱର୍ଣ୍ଣ ମୁଦ୍ରା ଢାଳି ଦେଲି – ଭାବିଲି, ହୁଏ ତ ଦିବ୍ୟ ଚକ୍ଷୁରେ ସେ ମୋ ଭବିଷ୍ୟତ ଦେଖି ପାରିବେ । ଯୋଗୀ କହିଲେ, "ମା, ତୁମର ସ୍ୱର୍ଣ୍ଣଖଣ୍ଡ ତୁମେ ନେଇଯାଅ ।" ମୋ ଆଡ଼େ ହସ୍ତ ପ୍ରସାରିତ କରି କହିଲେ, "ତୁମର ଆତ୍ମା ତୁମ ସନ୍ତୋଷଠାରୁ ବଡ଼ । ତୁମେ କାହିଁକି ଅନ୍ୟର ସନ୍ତୋଷ କାମନା କରୁଛ ?"

ମୋ ହସ ମୋ ଅଧରରେ ହିଁ ବିଲୀନ ହୋଇଗଲା । ଯୋଗୀ ପୁଣି ଧ୍ୟାନ ମଗ୍ନ ହୋଇଗଲେ – ମୋ ସ୍ୱର୍ଣ୍ଣ ମୁଦ୍ରାକୁ ତାଙ୍କର ପାଦତଳେ ଫିଙ୍ଗିଦେଲି ! ସନ୍ତୋଷ ! ସନ୍ତୋଷ ଟିକିଏ ପାଇବା ପାଇଁ ମୋ ହୃଦୟ କେଡ଼େ ବ୍ୟାକୁଳ !

ଗୋଟିଏ କୂପ ପାଖରେ ବସି ଦୁର୍ଲଭଙ୍କ ଚିଠି ପଢ଼ିଲି – ପ୍ରତି ଶବ୍ଦ ମଧ୍ୟରେ ଫୁଟି ଉଠିଥିଲା ତାଙ୍କର ମହାନୁଭବତା – ଅଥଚ ତାଙ୍କ ହୃଦୟରେ ଥିଲା ଶିଶୁର ସରଳତା । ତୁମକୁ ଅଭିନନ୍ଦନ ଜଣାଉଛି – ହେ ମୋର ରାଜା ! ତୁମେ ପ୍ରକାଶ କରିଛ ତୁମର ଆନନ୍ଦ – କହିଛ, ମୁଁ ତୁମକୁ ଆନନ୍ଦ ଦେଉଛି । ତୁମର ମହତ୍ତ୍ୱରେ ତୁମେ ମହୀୟାନ୍ – ମୋ ହୃଦୟକୁ ତୁମେ ନିଅଁ ର ପରଶମଣିରେ ଛୁଇଁ ଯାଇଛ । ପୃଥିବୀ ଯେପରି ଗୋଟିଏ ପ୍ରାର୍ଥନାର ସ୍ୱରରେ ଝଂକୃତ । ତୁମେ ମୋତେ 'ଦେବୀ' ବୋଲି ସମ୍ବୋଧନ କରିଛ । ତୁମେ ଲେଖିଛ, ମୁଁ ଯଦି ସଂଯୁକ୍ତା ହୋଇଥାନ୍ତି ତୁମେ ପୃଥ୍ୱୀରାଜ ହୋଇ କନୌଜ ଅଭିମୁଖେ ଅଭିଯାନ କରିଥାନ୍ତ । ଆଜି ମୋର ସମସ୍ତ ପୃଥିବୀ ଗୋଲାପ ଫୁଲପରି ଫୁଟି ଉଠିଛି । ସଂଯୁକ୍ତାର କାହାଣୀ ତୁମେ ମୋତେ ସ୍ମରଣ କରାଇ ଦେଇଛ । ଆମେ ନାରୀ—ସବୁବେଳେ ପରି, ତୁମେ

(୧) ଶିକାମୋର ବୃକ୍ଷ ଡିମିରି ବର୍ଗୀୟ । ପ୍ରତିଦିନ ତାର ପୁରୁଣା ଶାଖା ଶୁଖିଯାଏ, ନୂଆ ଶାଖା ଜନ୍ମେ । ଏ ବୃକ୍ଷ ଭାରତରେ ଦେଖା ଯାଏ ନାହିଁ ।

ପୁରୁଷମାନେ ରାଜହଂସ ପରି,—ପଦ୍ମ ଚାରି ଚାଲିଛନ୍ତି । ନାରୀର ହୃଦୟ ଏକ ସରୋବରରୁ ଅନ୍ୟ କେଉଁ ସରକୁ ଗଲେ, ପୁରୁଷ ପାଇଁ ଆଶା କଣ ରହେ ?

ବନ୍ଧୁ ! ତୁମ ପଦ ମୋତେ ଅଭିଭୂତ କରିଛି । ତୁମ ନିକଟରେ ମୁଁ ଅବନତ କରୁଛି ମୋ ଶିର । ମୋ ମସ୍ତକରେ ଏକ ଆଶୀର୍ବାଦର ମୁକୁଟ ଶୋଭା ପାଉଛି । ସେଇ ଶୋଭାରେ ଗୌରବାନ୍ୱିତ ହୋଇ ମସଜିଦ୍ ପ୍ରାଙ୍ଗଣ ତ୍ୟାଗ କରି ମୁଁ ଚାଲିଆସିଲି ।

ପ୍ରତ୍ୟାବର୍ତ୍ତନ ପଥରେ ହୋଇଲା ମୋ ବିଜୟ ଅଭିଯାନ । ମୁଁ ମୋ ଶିବିକା ଭିତରେ ବସିଥିଲି—ବାଦାମୀରଙ୍ଗର ଦୁଇଟି ଝାଲର ଓଠରୁ ଦୁଇ ଟୋପାରୁ ଫୁଲ ଝଡ଼ିଥିଲା । ଓଠ ଦୁଇଟି କି ସୁନ୍ଦର ମନ୍ଦୁର ଗୀତରେ ନାଚିଥିଲେ !

ସେ ଦିନର ବିହଙ୍ଗମ ମୋର ପାଇଁ ଗୀତ ଗାଉଥିଲା—ସୁନ୍ଦର ଗ୍ରୀବାଭଙ୍ଗୀରେ ହରିଣ ଶିଶୁଗୁଡ଼ିକ ମୋତେ ଅଭିନନ୍ଦନ ଜଣାଉଥିଲେ । ମୋର ଆନନ୍ଦରେ ଯେପରି ଆକାଶ ପୃଥିବୀ ଉଲ୍ଲସିତ । ପଥର ଦୁଇ ପାର୍ଶ୍ୱରେ କ୍ୟାକ୍‌ଟାସ୍ ଶ୍ରେଣୀ, ବୃକ୍ଷ ଶୀର୍ଷରେ ଶୋଭା ପାଉଥିଲା ରକ୍ତ କୋରକ । ବେଳାବିହୀନ ସମୁଦ୍ରପରି ସମ୍ମୁଖରେ ବ୍ୟାପିଥିଲା ବିରାଟ ଭୂଖଣ୍ଡ । ସବୁଜ ବସନ୍ତ ଋତୁରେ ନୀଳ ଆକାଶ ନିବିଡ଼ ଅରଣ୍ୟ ଉପରକୁ ନଇଁ ଆସି ସ୍ୱର୍ଣ୍ଣାଭ ଉର୍ଣ୍ଣନାଭର ଜାଲ ବୁଣୁଥିଲା । ଏଇ ଦୂର ନୀଳ ବନ ଗୁମ୍ଫାରେ ମୁଁ ଯଦି ସହସ୍ର ମୀନାର ସମନ୍ୱିତ ପ୍ରାସାଦଟିଏ ନିର୍ମାଣ କରିପାରନ୍ତି ଓ ତାହାକୁ ସଂଯୁକ୍ତ କରନ୍ତି ପାରିବି—ଟର୍କ୍ସର ବୃକ୍ଷର ବନପଥ ।

ଆଜ ମନେ ପଡ଼ୁଛି, ଦିନେ ଚାନ୍ଦନୀଚୌକ୍ ମଧ୍ୟଦେଇ ଯାତ୍ରା ଅତିକ୍ରମ କରୁଥିଲି । ସେତେବେଳେ ଦରବାରର ସମୟ । ପଥ ପାର୍ଶ୍ୱରେ ଉଦ୍ୟାନ ମଧ୍ୟ ଦେଇ ଚାଲିଛନ୍ତି ଦଳେ ଲୋକ । ସେମାନଙ୍କ ଦେହରେ ଉତ୍ସବର ପୋଷାକ । ସେମାନଙ୍କସଙ୍ଗେ ଚାଲିଛନ୍ତି ସୁସଜ୍ଜିତ ବଳୀବର୍ଦ୍ଦ ଓ ଅଶ୍ୱାରୋହୀ । ପବନରେ ଭାସି ଆସୁଛି କସ୍ତୁରୀ ଓ ଜାଫ୍ରାନ୍‌ର ଗନ୍ଧ, ଅଗୁରୁ ଓ ଚନ୍ଦନର ସୁରଭି । ପଥ ପାର୍ଶ୍ୱର ବିପଣିରେ ଶୋଭା ପାଉଛି ଉଜ୍ଜ୍ୱଳ ଅଳଙ୍କାର ସମ୍ଭାର । ମୁଁ ଶୁଣି ପାରୁଛି ପଶୁ କଣ୍ଠରୁ ଲମ୍ବିଥିବା ଘଣ୍ଟାର ଧ୍ୱନି ଏବଂ

ପଥଚାରିଣୀ ନାରୀର ମଣିବନ୍ଧ ଓ ବାହୁର କାଂସ୍ୟ ଅଳଙ୍କାର ନିକ୍ୱଣ । ହଜାର ବର୍ଣ୍ଣର ଘୁଡ଼ି ସବୁ ଶୂନ୍ୟରେ ଉଡ଼ୁଛି; ଗବାକ୍ଷ ନିକଟରେ ଠିଆ ହୋଇଛନ୍ତି, ଅବଗୁଣ୍ଠିତା ନାରୀଗଣ । ସେମାନଙ୍କ ନୟନର କୃଷ୍ଣମଣି ଶରୀରର ହୀରକ ଓ ନୀଳକାନ୍ତ ମଣିଠାରୁ ଅଧିକ ଉଜ୍ଜ୍ୱଳ ମନେ ହେଉଛି ।

ଏପରି ଆନନ୍ଦର ଦିନ ମୋ ଜୀବନରେ ଆଉ କେବେ ଆସିଥିଲା ? ଆଜି ଦରିଦ୍ରତମ ପଥିକ ବି ଆନନ୍ଦମୁଖର । ଦରିଦ୍ରଠାରୁ ମୋର ବା କ'ଣ ଅଧିକ ସମ୍ପଦ ଅଛି ? ନାରୀର ମସ୍ତକରେ ସୂର୍ଯ୍ୟାଲୋକ ଉଦ୍‌ଭାସିତ । ଏହି ଜଳପୂର୍ଣ୍ଣ ତାମ୍ର କଳସ ସମ୍ରାଟଙ୍କ ମୁକୁଟର ଶୁଭ୍ରମଣିଖଣ୍ଡଠାରୁ ଅଧିକ ଉଜ୍ଜ୍ୱଳ । ନାରୀମାନଙ୍କ ଶୁଭ୍ର ଦନ୍ତରାଜି ମୋ କଣ୍ଠର ମୁକ୍ତାହାରଠାରୁ ବି ଶୁଭ୍ରତର ।

ଶାହଜାହାନାବାଦ୍ ଅପୂର୍ବ ନଗର । ଏଇଠି ମୁଁ ନିର୍ମାଣ କରିବି ଗୋଟିଏ ବୃହତ୍ ସୁନ୍ଦର ପାନ୍ଥଶାଳା । ସେ ପରି ପାନ୍ଥଶାଳା ହିନ୍ଦୁସ୍ଥାନରେ ଆଉ କେଉଁଠି ନ ଥିବ । ଏଠାକୁ ଆସି ପଥିକର ଦେହ ମନ ପୁଲକିତ ହୋଇଉଠିବ । ହିନ୍ଦୁସ୍ଥାନରେ ଚିରନ୍ତନ ହେବ ମୋର ନାମ । ମୋର ସକଳ ଧନ ସମ୍ପଦ ମୁଁ ଦରିଦ୍ରମାନଙ୍କ ମଧ୍ୟରେ ବାଣ୍ଟି ଦେବି ।

ମୋ ମନରେ ଖେଳୁଛି ଅବିରାମ ଚିନ୍ତାସ୍ରୋତ । ରାଜପ୍ରାସାଦ ନିକଟରେ ଓଟକୁ ଠିଆ କରାଇଲି । ସୂର୍ଯ୍ୟ ଆଲୋକ ବିତରଣ କଲେ ଅସଂଖ୍ୟ ଅଶ୍ରୁ ମଣିଷର ଆଖିରେ ପଡ଼େ । ଚାନ୍ଦନ୍‌ଚୌକ୍ ପରି ଏଠାର ବିପଣିରେ ଜମିଛନ୍ତି ଅସଂଖ୍ୟ ଲୋକ—ସାରା ପୃଥିବୀର ଲୋକ ଯେପରି ଏଠାରେ ସମବେତ—ଏଇଠି ଯେପରି ବିଭିନ୍ନ ପଥ ମିଶିଯାଉଛି । ଜାଞ୍ଜିବାର୍, ସିରିଆ, ଇଂଲଣ୍ଡ, ହଲାଣ୍ଡ, ତୁରସ୍କ, ଖୋରାସାନ୍, ଜାବୁଲିସ୍ଥାନ୍, ଚୀନ୍, କାବୁଲ, ତୁର୍କିସ୍ଥାନ, ସବୁଠାରୁ ଆସିଛନ୍ତି ମଣିଷର ଦଳ—ଆସିଛନ୍ତି ବି ଆହୁରି ଅନେକ ଦେଶରୁ । ଡାଳିମ୍ବ, କୋଳି, ଖରବୁଜ ଓ ଅଙ୍ଗୁରର ଦୋକାନ ଅସଂଖ୍ୟ । ଆଜିର ଦିନରେ ଆନନ୍ଦ ଉପଭୋଗ କରିବା ପାଇଁ ମଣିଷ ସବୁ କିଛି ଦେଇପାରେ । ଫୁଲ ଦୋକାନ ସବୁ ବହୁ ଉଦ୍ୟାନ ପରି ମନେ ହେଉଛି—ସହସ୍ର ପାତ୍ରରୁ ଯେପରି ବାହାରି ପଡ଼ୁଛି ଫୁଲର ସୁରଭି—ଭୋଜନାଳୟରେ ପ୍ରସ୍ତୁତ ହେଉଛି ସୁଗନ୍ଧ ମସଲାଯୁକ୍ତ

ଖାଦ୍ୟ ପଦାର୍ଥ । ବିକ୍ରେତାଗଣ ଚିତ୍କାର କରି ସେସବୁକୁ ବିଜ୍ଞାପିତ କରୁଛନ୍ତି । ସବୁଠି ଜନତାର କୋଳାହଳ । ଗୋଟିଏ ମାତ୍ର ଜନତାର ବିଭିନ୍ନ ଛନ୍ଦ ପରି ଭାସିଆସୁଛି ବିଭିନ୍ନ ଶବ୍ଦ । ଏଇ ବସି ରହିଛନ୍ତି ଭାଗ୍ୟ-ଗଣକ । ତାହାର ସମ୍ମୁଖରେ ରହିଛି ବିଭିନ୍ନ ଭାଗ୍ୟଚକ୍ର, ଜନ୍ମକୁଣ୍ଡଳୀ । ଗଣକ ରାଶିଚକ୍ର ଆଙ୍କୁଛି — ଶଙ୍କିତା ନାରୀକୁ ଭାଗ୍ୟଫଳ ଜଣାଉଛି, ସେ ତାର ଭାଗ୍ୟଫଳ ଜାଣି ମିଶିଯାଉଛି ଜନତାର ଗହଳରେ । ହେ କରୁଣ ନକ୍ଷତ୍ରର ଭାଷାବିଦ୍ ! କୁହ ତ, ମୋ ଭାଗ୍ୟରେ କଣ ଅଛି ? ମୋ ପାଇଁ କ'ଣ କେବେ ଆନନ୍ଦ ମୁହୂର୍ତ୍ତ ଆସିବ ନାହିଁ ? ଏଇ ଆକାଶର ଆଉ କ'ଣ ମୋ ପାଇଁ କେବଳ ଦୁଃଖର ହିଁ ଇଙ୍ଗିତ ଦେବ ?

ଏଇ ଦେଖ ! ଚାଲିଛନ୍ତି ଅମୀର, ମନ୍‌ସବଦାର୍ ରାଜ ଦରବାର ଅଭିମୁଖେ । ତାଙ୍କ ସଙ୍ଗେ ଚାଲିଛନ୍ତି ଅସଂଖ୍ୟ ଅନୁଚର । ତାଙ୍କର ସୈନ୍ୟ-ଗଣ ବି ଅପୂର୍ବ । ଅସ୍ତ୍ରର ଝଙ୍କାର ଯେପରି ଯୁଦ୍ଧର ଛନ୍ଦହୀନ ସଙ୍ଗୀତ ! ଆହୁରି ବହୁ ଲୋକ ଚାଲିଛନ୍ତି ଦେଓ୍ୱାନ୍ ଇ ଆମ ଅଭିମୁଖେ । ରେଶମି ଆବରଣର ଅନ୍ତରାଳରେ ଉଜ୍ଜ୍ୱଳବେଶା ନର୍ତ୍ତକୀଗଣ ଦୃଷ୍ଟିରେ ପଡୁଛନ୍ତି । ଚାଲିଛନ୍ତି କୃଷ୍ଣରେଖାଙ୍କିତ ହସ୍ତୀଯୂଥ — ସେମାନଙ୍କ ଗ୍ରୀବାରେ ଝୁଲୁଛି ରୁପାର ଘଣ୍ଟା, କାନର ଦୁଇ ପାଖରୁ ଝୁଲୁଛି ତିବ୍ବତର ଚାମର, ପାଖେ ପାଖେ ଚାଲିଛନ୍ତି ଛୋଟ ଛୋଟ ହସ୍ତୀ ଶିଶୁ । ସେମାନେ ଯେପରି ରାଜ ଅନୁଚର ।

ମୋ ଆଖି ଆଗରେ ସେଇ ଦୃଶ୍ୟ ବାରମ୍ବାର ଭାସିଉଠୁଛି । ତା'ପରେ ଆସୁଛି ଚିତା ବାଘ, ତା' ପଛେ ପଛେ ବଙ୍ଗଳାର ବାଘ ! ସେମାନେ ଯେପରି ଅରଣ୍ୟ ରାଜାର ରାଜଦୂତ । ତା'ପରେ ଚାଲିଛି ଶିକାରୀ ବାଜପକ୍ଷୀ, ଶୂନ୍ୟରାଜ୍ୟର ରାଜଦୂତ ପରି । ସମସ୍ତଙ୍କ ପଛରେ ଅଛି ଉଜ୍‌ବେଗ୍ ଦେଶର କୁକୁର । ବଡ଼ ବଡ଼ ପଶୁମାନଙ୍କ ପାଟରେ ପତାକା ଝୁଲୁଛି, ଶୁଭୁଛି ଶିଙ୍ଗାର ଶବ୍ଦ । କିନ୍ତୁ ସବୁଠାରୁ ସୁନ୍ଦର ଏଇ ଦରବେଶ ଦଳଟି ।

ମୋ ଚକ୍ଷୁ ସମ୍ମୁଖରେ ଏହିପରି ଭାସିଯାଉଛି କେତେ ସୁନ୍ଦର ଛବି, କିନ୍ତୁ ମୋ ମନକୁ ଆଚ୍ଛନ୍ନ କରିଛି ଗୋଟିଏ ମାତ୍ର ଚିନ୍ତା । ମୋ ପ୍ରିୟତମ ଯୁଦ୍ଧାସ୍ତ୍ରରେ ସଜ୍ଜିତ ହୋଇ ଅଶ୍ୱାରୋହୀ ବାହିନୀ ସଙ୍ଗେ ଆସିବେ । ମୋତେ ଏଠି ଦେଖିବେ, ଅଭିନନ୍ଦନ ଜଣାଇବେ ··· ।

ସତକୁ ସତ, ସେ ଆସିଲେ । ତାଙ୍କ ଯୁଦ୍ଧ ଅଶ୍ୱ ସତେ ଯେପରି ଭୂମିକୁ ସ୍ପର୍ଶ କରୁ ନ ଥିଲା । ଅଶ୍ୱାରୋହୀ ମର୍ମର ମୂର୍ତ୍ତିପରି ବସିଛନ୍ତି । କି ଭୟଙ୍କର ଅଥଚ କି ଲଳିତ ଦୃଶ୍ୟ । ସ୍ୱରଣର ସଙ୍ଗୀତ ଉନ୍ମାଦନାରେ ସେ କ'ଣ ଅଶ୍ୱ ଚଳାଇ ମୋ ପାଖକୁ ଆସିବେ ? ମୁଁ କଣ ଆଜି ସ୍ପର୍ଶ କରିବି ନାହିଁ ତାଙ୍କର ହସ୍ତଯୁଗଳ ? କଣ୍ଠରୁ ବହୁମୂଲ୍ୟ ମୁକ୍ତାହାର ଖୋଲିଲି, —ଗଜମୋତିର ପାଖୁଡ଼ାରେ କେତୋଟି ଅକ୍ଷର ଖୋଦିତ କରି ତାଙ୍କ ନିକଟକୁ ପଠାଇ ଦେଲି । ପ୍ରିୟତମ ମୋତେ ଅଭିନନ୍ଦନ ଜଣାଉଛନ୍ତି । ବିନମ୍ର ଆଭିଜାତ୍ୟପୂର୍ଣ୍ଣ ଭଙ୍ଗୀରେ ସେ ହୃଦୟ ଉପରେ ହସ୍ତରଖି ମୁହୂର୍ତ୍ତିକ ପାଇଁ ଅଶ୍ୱର ଗତି ବନ୍ଦକଲେ ଓ ତା'ପରେ ବର୍ଷା ବାଷ୍ପମାନ ପଛେ ପଛେ ଅନ୍ତର୍ହିତ ହୋଇଗଲେ ।

ସ୍ୱପ୍ନରେ ସ୍ୱପ୍ନରେ କଟିଗଲା କେତୋଟି ଦିନ । ମୁଁ ଯେପରି ଫେରିଗଲି ମୋର ଅତୀତକୁ, କିନ୍ତୁ ଏଥରର ଅବସ୍ଥା ଭିନ୍ନ—ପରିବେଶ ସ୍ୱତନ୍ତ୍ର । ମୁଁ ଦେଖୁଛି, ମୋ ଉଦ୍ୟାନ ବାଟିକାର ସମୀପରେ ଆଉ ବହୁ ନାହିଁ ଯମୁନାର ଜଳଧାରା । ଏଇ ଦୂର ନୀଳ ଆକାଶର ସୀମାରେଖାର ଆରପାରେ ରଚିତ ହୋଇଛି ମୋର ନୂତନ ଉଦ୍ୟାନ । ସମ୍ରାଟ ଶାହଜାହାନ ମୋ ସମ୍ମାନ ପାଇଁ ଦିଲ୍ଲୀରେ ମର୍ମର ମସଜିଦ୍ ନିର୍ମାଣ କରିଥିଲେ । ଆଜି ସେ ମସ୍‌ଜିଦର ଭଗ୍ନପ୍ରାଙ୍ଗଣ ସୂର୍ଯ୍ୟର ଆଲୋକ ରେଖା ସଙ୍ଗେ ମିଶିଯାଇଛି ।

ହେ ନିର୍ଜନତା ! ଶୁଣ, ଏଥର ତୁମକୁ ମୋ ଜୀବନର ଗୋଟିଏ ସ୍ମରଣୀୟ କାହାଣୀ କହିବି । ଗୋୟାଲିଅରର ନବାଗିନୀ ନର୍ତ୍ତକୀ ଗୁଲ୍‌ରୁଖ୍ ମୋ ନୟନର ପରିତୃପ୍ତି ଉଦ୍ଦେଶ୍ୟରେ ଏକ ନୂତନ ନୃତ୍ୟର ବ୍ୟବସ୍ଥା କରିଥିଲା । ସେଦିନ ତାର ସୂକ୍ଷ୍ମ ଅବଗୁଣ୍ଠନର ଅଞ୍ଚଳକୁ ସେ ସୁଗନ୍ଧିତ କରିଥିଲେ ଗୁଜୁରାଟର ଅତରରେ । ଅବଗୁଣ୍ଠନର ଝାଲରକୁ ବାଦାମ ଫୁଲର ମାଳାରେ ସଜାଇଥିଲା । ମୋ' ପ୍ରଦତ୍ତ ସମସ୍ତ ଅଳଙ୍କାର ସେ ପିନ୍ଧିଥିଲା ସେଦିନ । ସେ ମୋର କେତେ ପ୍ରିୟ ! ମୃତ୍ୟୁର ଆଶ୍ୱାସ ପାଇଲେ ମଣିଷ କ'ଣ ଦିବ୍ୟ ଦୃଷ୍ଟି ଲାଭ କରେ ? ନୃତ୍ୟର ଅବସରରେ ହରିଣୀ ପରି ସେ ହୋଇ ଉଠିଥିଲା ଚଞ୍ଚଳ । ମୃଦୁ କଣ୍ଠରେ ଗୁଲ୍‌ରୁଖ୍ ପୁରାତନ ସଂଗୀତର ଛନ୍ଦ ଆବୃତ୍ତି କରୁଥିଲା । ସେ ସଂଗୀତର ଲହରୀ ଶୋକ ଗୀତି ହୋଇ ଆଜି ବି ମୋ କର୍ଣ୍ଣ ଗହ୍ୱରରେ ପ୍ରତିଧ୍ୱନିତ ହେଉଛି ।

ଅଙ୍ଗନେ ମୋର କେତେ ଯେ ରଜନୀଗନ୍ଧା
ଫୁଟି ଉଠିଥିଲ ସୁରଭି—ଅଳକନନ୍ଦା ।
ପ୍ରିୟତମ ଗଲେ ସ୍ୱର୍ଗ—ଭୁବନେ—କାହିଁ,
ଆକାଶର ମେଘ ପାଦ ଦେଉଥିଲା ଛୁଇଁ ।
ଚିଠି ପଠାଇଲେ ଉତ୍ତର ନାହିଁ ଆସେ
ତଥାପି ଏ ମନ ଆଶାର ସ୍ୱପନେ ଭାସେ ।
ଉଦ୍ୟାନେ ମୋର କେତେ ଫୁଲ ଫୁଟି ଝରେ,
ଶଯ୍ୟା ମୋ ନିତି ଭ୍ରମର ଗନ୍ଧେ ଭରେ ।

ନୃତ୍ୟ ଶେଷ କରି ଗୁଲ୍‌ରୁଖ୍ କକ୍ଷ ତ୍ୟାଗ କରି ଚାଲିଗଲ । ସୁଦୀର୍ଘ ଅଳିନ୍ଦ ଅତିକ୍ରମ କରି ମୁଁ ତାର ଅନୁସରଣ କଲି ତାକୁ ଧନ୍ୟବାଦ ଜଣାଇବା ପାଇଁ । ଲୋହିତ ଓ ନୀଳ ଆଲୋକର ପ୍ରଦୀପ ସଜ୍ଜିତ ଥିଲା ପ୍ରାଚୀର ପାର୍ଶ୍ୱରେ । ପ୍ରଦୀପର ହୃଦୟରେ ଜଳୁଥିଲା ଅଗ୍ନି ଶିଖା । ପବନରେ ଆନ୍ଦୋଳିତ ହୋଇ ତାର ସୂକ୍ଷ୍ମ ଅବଗୁଣ୍ଠନର ଅଞ୍ଚଳ ସ୍ପର୍ଶକଲା ଗୋଟିଏ ଆଲୋକ ଶିଖାକୁ । ମାତ୍ର ଗୋଟିଏ ମୁହୂର୍ତ୍ତରେ ମୋ'ର ଗୁଲ୍‌ରୁଖ୍, ମୋ ମୁଖର ରକ୍ତିମା ପରି ଗୁଲ୍‌ରୁଖ୍ ଅଗ୍ନିରେ ପରିବେଷ୍ଟିତ ହେଲା । ଭୟଭୀତ ହୋଇ ଗୁଲ୍‌ରୁଖ ଧାଇଁବାକୁ ଲାଗିଲା, ଦାବାନଳ ଆକ୍ରମଣରୁ ଯେପରି ବନର ହରିଣୀ ଧାଇଁ ପଳାଏ । ମୁଁ ମଧ୍ୟ ଧାଇଁ ଆସିଲି । ଦୁହେଁ ପହଞ୍ଚିଲୁ ରାଜ ମହଲର ଉନ୍ମୁକ୍ତ ପ୍ରାଙ୍ଗଣରେ । ତା'ର ଅଗ୍ନିଶିଖା ଉପରେ ଫିଙ୍ଗି ଦେଲି ମୋ ବସ୍ତ୍ରର ଅଞ୍ଚଳ । ମୋର ସୂକ୍ଷ୍ମ ମସୃଣ ବସ୍ତ୍ର ମୁହୂର୍ତ୍ତକ ମଧ୍ୟରେ ଅଗ୍ନି ଶିଖାରେ ଜଳି ଉଠିଲା । ଆମେ ଦୁହେଁ ଅଗ୍ନିମଧ୍ୟରେ ଠିଆହୋଇ ରହିଲୁ ।

ସେତେବେଳେ ଚାଲିଥିଲା ଦରବାର୍-ଇ-ଆମର ଅଧିବେଶନ । ଚିତ୍କାର କଲେ ହୁଏତ ଆମକୁ କେହି ସାହାଯ୍ୟ କରିବା ପାଇଁ ଆସି ପାରନ୍ତି । କିନ୍ତୁ କିଏ ? ମୋ ପ୍ରିୟତମ ଦରବାରରେ ଥିଲେ—ମୋର ଅପର୍ଯ୍ୟସ୍ତ ରୂପ ତାଙ୍କ ଚକ୍ଷୁରେ ପଡ଼ିବ କି ? ସେ କ'ଣ ମୋତେ ରକ୍ଷା କରିବେ ? କିମ୍ବା ତାଙ୍କର ଚକ୍ଷୁ ସମ୍ମୁଖରେ ଆଉ କେଉଁ ପୁରୁଷ ମୋତେ

ରକ୍ଷା କରିବ — ସେ ହେବେ ନୀରବ ଦର୍ଶକ ? ଲଜ୍ଜାରେ ମୁଁ ରକ୍ତିମ ହେଲି — ଅଗ୍ନିଶିଖାଠାରୁ ଆହୁରି ଉଷ୍ମ ସେ ରକ୍ତିମା । କିନ୍ତୁ ମୁଁ ନୀରବ ହିଁ ରହିଲି ।

ସେ ଦିନ ମୋ ଶରୀର ଦଗ୍ଧ ହୋଇ ଯାଇଥିଲା । ଶଯ୍ୟାଶାୟିନୀ ହେଲି ଅନେକ ଦିନ ଯାଏଁ । ଆଉରଙ୍ଗଜେବଙ୍କ ସଙ୍ଗେ ମୋ ପ୍ରିୟତମ ଦାକ୍ଷିଣାତ୍ୟ ଯାଇଥିଲେ ଯୁଦ୍ଧ ଅଭିଯାନରେ । ମୋ ରାକ୍ଷିର ପ୍ରତିଦାନରେ ପ୍ରିୟତମ ମୋ ପାଇଁ ଗୋଟିଏ କାଁଚୁଲି ପଠାଇଥିଲେ (୧) । ସେଇ ସୁନେଲି କାଁଚୁଲିର ପ୍ରଚ୍ଛଦ ଭାଗଟି ଘନ ନୀଳ ରେଶମରେ ପ୍ରସ୍ତୁତ ହୋଇଥିଲା । ସେଥିରେ ଖଚିତ ଥିଲା ପଦ୍ମରାଗମଣି, ମୁକ୍ତା, ହୀରା ଓ ପ୍ରବାଳ । ସେ ଦାନର ମର୍ଯ୍ୟାଦା ରକ୍ଷା କରିବା ପାଇଁ ମୁଁ ତାଙ୍କ ପାଖକୁ ପତ୍ର ଲେଖିଲି — ମୋର ରାକ୍ଷିବନ୍ଧ ଭାଇ ଯଦି ଗଜଦନ୍ତ ଉପରେ ଅଙ୍କିତ ଛବିଟିଏ ଭଉଣୀ ପାଖକୁ ଅନୁଗ୍ରହ କରି ପଠାନ୍ତି, ତେବେ ତାଙ୍କ ଭଉଣୀ ଖୁବ୍ ଆନନ୍ଦିତ ହେବ । ସମ୍ରାଟ ଶାହଜାହାନ ଜାଣିଲେ — ତାଙ୍କର କନ୍ୟା ତାଙ୍କର ଅନ୍ୟତମ ଶ୍ରେଷ୍ଠ ସାମନ୍ତ ବନ୍ଧୁ ନିକଟକୁ ପତ୍ର ଲେଖିଛି । ସେ ମଧ୍ୟ ଲେଖିଲେ, ଅନ୍ୟ ଏକ ଆବଶ୍ୟକୀୟ ପତ୍ର-ଛଦ୍ମବେଶୀ ଦୂତ ହାତରେ ସେ ପତ୍ର ଆଉରଙ୍ଗଜେବଙ୍କ ଶିବିରକୁ ପଠିତ ହେଲା ।

ଗଡ଼ି ଚାଲିଲା ଦିନ ପରେ ଦିନ — ଅନେକ ଦିନ — ତା'ପରେ ଆସିଲା ଉତ୍ତର । ପତ୍ରଖୋଲି ଦେଖିଲି, — ଶିଥିଳ ହସ୍ତଲିପି — ପତ୍ର ପଢ଼ି ଆଶ୍ଚର୍ଯ୍ୟ ହେଲି ହିମାଳୟ ଯେପରି ସ୍ଥାନ ପରିବର୍ତ୍ତନ କରିଛି ! କିମ୍ବା ପଶ୍ଚିମ ଗଗନରେ ସୂର୍ଯ୍ୟୋଦୟ ଘଟିଛି ! କେଉଁ ପ୍ରେମ ଯେପରି ଆକ୍ରାନ୍ତ କରିଛି ମୋ ପ୍ରିୟତମଙ୍କୁ ! ପତ୍ରଟି କ୍ଷୁଦ୍ର — କିନ୍ତୁ ଖୁବ୍ ଗାରିଭ ବ୍ୟଞ୍ଜକ — ହିମ ଶୀତଳ ତାର ସ୍ୱର । ସେ ପତ୍ର ମୋ ହୃଦୟରେ ଜୀବନର ଗତିକୁ ସ୍ତବ୍ଧ କରି ଦେଲା । ନିଜ କର୍ତ୍ତବ୍ୟ ପାଳନରେ ଦିବା ରାତି ସେ କ'ଣ ଏତେ ବ୍ୟସ୍ତ ଯେ ମନର ଭାବକୁ ଯଥାର୍ଥ ରୂପ ଦେବାକୁ ତାଙ୍କୁ ସମୟ ନାହିଁ ? ଶେଷରେ ଲେଖିଥିଲେ—

(୧) କାଁଚୁଲି ଏକ ପ୍ରକାର ବକ୍ଷ ବାସ (ବଡ଼ିସ୍) ଯାହା ବେଗମ୍ ନୂରଜାହାନ୍ ଭାରତବର୍ଷରେ ଚଳାଇଥିଲେ । ସେ 'ବାଦଲ୍ କି ନାଗ୍' ଓଢ଼ଣା, ଖାଦ୍ୟ— ଟେବୁଲ୍‌ର ଦସ୍ତର୍ ଖାନ୍ (ଗୁଦଡ଼ି) ବ୍ୟବହାର ଆରମ୍ଭ କରିଥିଲେ; ଏବଂ ଅତରର ପୁନଃ ପ୍ରବର୍ତ୍ତନ କଲେ ।

"ମୋଗଲ ରାଜ କୁମାରୀଙ୍କ ଆଲେଖ୍ୟ ସଂଗ୍ରହଶାଳାରେ ଚୌହାନ୍ ରାଜପୁତର ଚିତ୍ରପଟ୍ଟ ଶୋଭାପାଇ ନ ପାରେ !"

ଗୋଟିଏ ମାତ୍ର ମୁହୂର୍ତ୍ତରେ ନିଃଶେଷ ହୋଇଗଲା ମୋର ସମସ୍ତ ଆନନ୍ଦ । "ଖୋରସାନ୍‌ର ଅଶ୍ରୁ" କାବ୍ୟରେ କବି ଆନୋୟାର୍ ଲେଖିଥିଲେ, "ଅନ୍ତରର ବ୍ୟଥା ଦେଇ ଚିଠି ଲେଖିବା ଆରମ୍ଭ କରିଥିଲି, କିନ୍ତୁ ଶେଷରେ ତାହାର ସମାପ୍ତି ହେଲା ଅନ୍ତରକୁ ଆଘାତ କରି !"

ମନେ ହେଲା, ମୁଁ ଯେପରି ପୋଡ଼ା ଜଳି ଅଙ୍ଗାର ହୋଇଯାଇଛି । କାହାଠାରୁ ମୋର ନିନ୍ଦା ଶୁଣିଲେ କି ? ସେ ନିନ୍ଦାକୁ ବା ସେ ବିଶ୍ୱାସ କଲେ କିପରି ? ପ୍ରିୟତମ, ଯଦି ସହସ୍ର ସାଧୁ ଆସି ତୁମ ବିରୁଦ୍ଧରେ କହିଥାନ୍ତେ, ତଥାପି ମୁଁ ତାହା ଆଦୌ ବିଶ୍ୱାସ କରି ନ ଥାନ୍ତି—ତୁମଠାରୁ ନଶୁଣିବା ଯାଏଁ । ଆଉରଙ୍ଗଜେବ ଓ ଉଦ୍ଧତୀ ରୋଶେନାରାଙ୍କଠାରୁ ତୁମେ କିଛି ଶୁଣିଛ କି ? ସେମାନେ ଦାରାଙ୍କର ଶତ୍ରୁ, ମୋର ବି ଶତ୍ରୁ । ମୁଁ କ'ଣ ମୋର ସବୁ ପ୍ରଧାନ ଆଶ୍ରୟ ହରାଇଛି—ସେ ଆଶ୍ରୟ ଯେ ଚୌହାନ ବଂଶ ବୁନ୍ଦିର ରାଜ ବଂଶ ଭାରତର ସର୍ବଶ୍ରେଷ୍ଠ ବୀର ବଂଶ ! ତୁମ ନାମରେ କୌଣସି କଳଙ୍କ ନାହିଁ—ତୁମ ଦୃଷ୍ଟି ପଡ଼ିଲେ ବିପଦ ଆପେ ଆପେ ଦୂରକୁ ହଟିଯାଏ ।

ଏପରି ବହୁ ପ୍ରଶ୍ନ ପଚାରିଲି କିନ୍ତୁ କୌଣସି ଉତ୍ତର ପାଇଲି ନାହିଁ । ନିଜେ ନିଜର କର ପଲ୍ଲବ ଦଂଶନ କଲି । ମନେ ପଡ଼ିଲା, କୃଷ୍ଣ ମେଘର ଡମ୍ବରୁ ଧ୍ୱନି—ସେ ଧ୍ୱନିରେ ଥିଲା ସହସ୍ର ବଜ୍ରର ରୁଦ୍ଧ ସ୍ୱର । ଆକାଶରେ ଯେପରି କେଉଁ ଶ୍ମଶାନ ଯାତ୍ରୀର କଳରୋଳ ଉଠୁଛି ! କେଉଁ ସ୍ୱର୍ଗ-ଶିଶୁର ମୃତ୍ୟୁ ହୋଇଛି କି ? ଏଇ ଯେ ମୂଷଳ ଧାରରେ ବାରିପାତ ହେଉଛି । ଚମକୁଛି ବିଦ୍ୟୁତ୍—ବିଦ୍ୟୁତ୍ ଶିଖା କୃଷ୍ଣ ମେଘ ଖଣ୍ଡକୁ ଦ୍ୱିଖଣ୍ଡିତ କରିଦେଲା—ମୁଁ ଦେଖି ପାରିଲି ଏକ ବିରାଟ ଛେଦ-ଚିହ୍ନ-ମୋ ଦୁଃଖର ପ୍ରାଚୀର ମଧ୍ୟ ଦେଇ ଶବ୍ଦଟିଏ ଆସୁଛି—ଅତଳ ସ୍ପର୍ଶୀ ସେ ଶବ୍ଦ··· ।

ନୃତ୍ୟ ଚାଲିଛି । ରବିର ଆଗମନରେ ମୋ ମହଲରେ ଶତ ପ୍ରଦୀପ ଜଳି ଉଠିଲା;—ମୋ କୋଠରୀର ସ୍ୱର୍ଣ୍ଣ-ଖଚିତ ଯବନିକା ପ୍ରସାରିତ ହେଲା—ସାରା ରାତି ବଂଶୀ, ବୀଣା ଓ କରତାଳର ଧ୍ୱନିରେ କମ୍ପିତ

ହେଉଥିଲି । ସକଳ ବସ୍ତୁ କ'ଣ ଈଶ୍ୱରଙ୍କ ଦାନ ନୁହେଁ ? ଏଇ ଅସହ୍ୟମାନ୍ଦ ଦୁଃଖ ତାଙ୍କର ତ ଦାନ ? ଏଇଥିରୁ ପ୍ରମାଣିତ ହେଉଛି, ମୁଁ ଈଶ୍ୱରଙ୍କୁ ତ୍ୟାଗ କରି ବଞ୍ଚି ପାରିବ । — ବାଦ୍ୟକରଗଣଙ୍କୁ ଆଦେଶ ଦେଲି — ଝଡ଼ର ଗତିରେ ବାଦ୍ୟ ବଜାଅ ! ବାଘୁଣୀ ପରି ଦ୍ରୁତ ପଦକ୍ଷେପରେ ଛନ୍ଦହୀନ ଗତିରେ ମୁଁ ଚାଲିଛି । ମୋ ଶରୀରରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତାର ଭାବ ହିଁ ଥିଲା । ଶାନ୍ତ ହୋଇ ଆସିଲା କରତାଳର ଧ୍ୱନି — ତଥାପି ଭାସି ବୁଲୁଥିଲା ଶେଷ ପ୍ରତିଧ୍ୱନି, ନିଶା ଭ୍ରମଣକାରୀ ପରି ଗାଲାରୀ ଅତିକ୍ରମ କରି ମୁଁ ଚାଲି ଆସିଲି । ବର୍ତ୍ତମାନ ଶୁଣି ପାରୁଛି, ଫିରୋଜଶାହ ଜଳ ପରିଖାର କଳଧ୍ୱନି — ଆଉ କିଛି ନାହିଁ !

ମୁଁ ଚାଲିଛି—ଚାଲିଛି । ହଠାତ୍ ପ୍ରସ୍ତର ଚଟାଣ ଉପରେ ନଜର ଦେବାକୁ ଯାଇ ଦେଖିଲି — ନିସ୍ତବ୍ଧ, ନିଶ୍ଚଳ—କିଏ ଯେପରି ଆସି ମୋତେ ଧରି ନେଲା — ମୋ ବକ୍ଷ ମଧ୍ୟରେ ହୃଦୟଟି କାଚ ଖଣ୍ଡପରି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା ।

କେତେ ଯେ ଲେଖିବି ପତ୍ର ତୁମରି ପାଇଁ
ଥରୁଟିଏ ହେଲେ ଉତ୍ତର ପାଇ ନାହିଁ
ଆଜିର ନିଶିଥେ ରଜନୀ ଗନ୍ଧା ଫୁଟିଛି ମୋ'ରି ବନେ
ଗନ୍ଧ ତାହାର ବିଛୁରି ପଡ଼ୁଛି ଏଇ ମୋ ଦେହ ଓ ମନେ ।

ଦିନେ ଦରବାରରେ ଖୁବ୍ ଚୋଟାଏ ଚାଞ୍ଚଲ୍ୟ ଖେଳିଗଲା । ଦୁଲେରିଙ୍କ ପାଇଁ ଭାବିବି — ବିପୁଳ ସ୍କନ୍ଧ ଛତାକଟି ଦୁଲେରିଙ୍କ ପାଇଁ ? କିନ୍ତୁ ସେ ଯେ ଏକ ନର୍ତ୍ତକୀର ସନ୍ତାନ (୧) ! ତାଙ୍କ ସଙ୍ଗେ ମୋର କି ସମ୍ପର୍କ ? ତାଙ୍କର ବସନ୍ତ ସଙ୍ଗୀତ, ବର୍ଷାର ସ୍ୱର ଏବଂ ହରିଣ-ନୟନ ଏକଦା ମୋତେ ବିଭ୍ରାନ୍ତ କରିଥିଲା ।

ଶାହାଜାହାନଙ୍କ-ପ୍ରିୟ କନ୍ୟା ଜାହାନାରା ଯାହା ଇଚ୍ଛା କରି ପାରେ । ଏଇ ସାମ୍ରାଜ୍ୟରେ କାହାର ଏପରି କ୍ଷମତା ଅଛି ଯେ, ସମ୍ରାଟ

(୧) ଜନଶ୍ରୁତି ଅଛି, ଛତ୍ରଶାଲଙ୍କ ମାତା—ପ୍ରଥମ ଜୀବନରେ ନର୍ତ୍ତକୀ ଥିଲେ । ମାତ୍ର ଏହା ସତ୍ୟ ନୁହେଁ, ଶତ୍ରୁର ନିନ୍ଦା ମାତ୍ର । ଛତ୍ରଶାଲଙ୍କର କିନ୍ତୁ ସଙ୍ଗୀତ ପ୍ରୀତି ଓ ଜ୍ଞାନ ଅସାଧାରଣ ଥିଲା ।

କୁମାରୀ ଜାହାନାରା ବିରୁଦ୍ଧରେ ଶବ୍ଦଟିଏ ଉଚ୍ଚାରଣ କରିବ ? ତେଣୁ ଦିଲ୍ଲୀର ଶ୍ରେଷ୍ଠ ଗାୟକଙ୍କୁ ମୋ କୃପାଦାନରେ କୃତାର୍ଥ କଲି—ତାଙ୍କୁ ଦରବାରର ଭୂଷଣରେ ଭୂଷିତ କଲି । ହିନ୍ଦୁସ୍ଥାନର ବରେଣ୍ୟତମ ସନ୍ତାନଙ୍କୁ ଯାହା ମିଳି ନ ଥିଲା, ଆଜି ହୀନତମ ସନ୍ତାନଙ୍କୁ ତାହା ମିଳିଲା, ମୋଗଲ ରାଜକୁମାରୀର ଅନୁଗ୍ରହରୁ ! ଆଉ ଚିନ୍ତା କରି ପାରୁନାହିଁ ! କି ନିର୍ମମ !

ମୋର ଅନୁଗୃହୀତ ଗାୟକ ଯବେ ଅଶ୍ୱାରୋହୀ ପଦାତିକ ବାହିନୀ ସହ ପତାକା ଉଡ଼ାଇ ପ୍ରାସାଦକୁ ଆସିଥିଲେ । ସମ୍ରାଟ ଜାହାଙ୍ଗୀରଙ୍କ ଅନ୍ୟତମ ପ୍ରସିଦ୍ଧ ସେନାନାୟକ ମହବତ୍ ଖାଁଙ୍କ ସଙ୍ଗେ ରାସ୍ତାରେ ତାଙ୍କର ଦେଖା ହେଲା । ମହବତ୍ ରାଣା ପ୍ରତାପଙ୍କ ଭ୍ରାତୁଷ୍ପୁତ୍ର—ସେ ଦେଶଦ୍ରୋହୀ, ଧର୍ମଦ୍ରୋହୀ । ମହବତ୍ ଖାଁ ଦରବାର ଅଭିମୁଖେ ଆସୁଥିଲେ । ରାସ୍ତାରେ ଆମୀର୍ ମହବତ୍ ଖାଁଙ୍କ ଅନୁଚରମାନଙ୍କ ସଙ୍ଗେ ଗାୟକଙ୍କ ଅନୁଚର-ମାନଙ୍କର କଳହ ହେଲା । ମହବତ୍ ଯୁବରାଜ ଦାରାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ—ବର୍ତ୍ତମାନ ମୋ ଉପରେ ଅସନ୍ତୁଷ୍ଟ ହେଲେ । ଶିଶୋଦୀୟ ବଂଶଜ ମହବତ୍ ଖାଁ ପ୍ରବେଶ କଲେ । ଦରବାରରେ କୌଣସି ପତାକା ନ ଥିଲା ତାଙ୍କର । ସମ୍ରାଟ ପ୍ରଶ୍ନ କଲେ, "ପତାକା କାହିଁ ?" ମହବତ୍ ଉତ୍ତର ଦେଲେ—"ପ୍ରୟୋଜନ କ'ଣ ? ଯେଉଁଠି ଗାୟକ ପତାକା ସହିତ ଦରବାରରେ ପ୍ରବେଶ କରିବାର ଅଧିକାର ପାଇଛି, ସେଠାରେ ଆମୀରଙ୍କ ପତାକାର କି ପ୍ରୟୋଜନ ?" ସମ୍ରାଟ ଆଦେଶ ଦେଲେ,—"ଗାୟକର ପତାକାର ବି କୌଣସି ଆବଶ୍ୟକତା ନାହିଁ ।" ଏଥିରୁ ମୁଁ ବୁଝିଲି, ରାଜ-ଦରବାରରେ ମୋର ଅନେକ ଶତ୍ରୁ, ଆଉରଙ୍ଗଜେବଙ୍କର ଅସଂଖ୍ୟ ମିତ୍ର, ସ୍ୱଭାବତଃ ଯୁବରାଜ ଦାରା ଥିଲେ ଉଦ୍ଧତ—ତାଙ୍କର ବ୍ୟଙ୍ଗୋକ୍ତିଗୁଡ଼ିକ ଅନେକ ସମୟରେ ମହତ୍ ଲୋକଙ୍କୁ ଅପଦସ୍ତ କରୁଥିଲା । ପୁଣି ସମ୍ରାଟ ଶାହାଜାହାନ ଥିଲେ ବିଶେଷ ଅନ୍ତଃପୁର ବିଳାସୀ ।

## ଷଷ୍ଠ ସ୍ତବକ

ଆଉ ଦିନେ ଦୁଲେରି ରାଜପ୍ରସାଦକୁ ଆସିଥିଲେ । ସେଦିନ ମହବତ୍ ଖାଁ ମଧ୍ୟ ଦରବାରକୁ ଆସିଥିଲେ । ସେମାନଙ୍କର ସାକ୍ଷାତ ହେଲା । ମହବତ୍ ଖାଁ ପୂର୍ବରୁ ବିରକ୍ତ ହୋଇ ରହିଥିଲା । ସେ ଦୁଲେରିଙ୍କୁ କହିଲେ, "ତୁମେ ଜଣେ ସାମାନ୍ୟ ଗାୟକ ! କେହି ବିଶିଷ୍ଟ ଲୋକ ରାସ୍ତାରେ ଯାଉ-ଥିଲେ ବାଟ ଛାଡ଼ି ଦେବା କଥା, କିନ୍ତୁ ଦିଲ୍ଲୀରେ ଗାୟକ ପାଇଁ ମଧ୍ୟ ବାଟ ଛାଡ଼ିବାକୁ ପଡ଼େ ।"

ଏ କଥା ଶୁଣି ଲଜ୍ଜାରେ ମୋ ମୁଣ୍ଡ ତଳକୁ ନଇଁଗଲା । ମୁଁ ମୋ ଅନ୍ତଃପୁରରେ ଆଶ୍ରୟ ନେଲି । ଯାନ ଭିକ୍ଷୁଣୀଟି ପରି ମୁଁ ନିଜକୁ ନିଭୃତ ଗୃହକୋଣରେ ଲୁଚାଇ ରଖିଲି । ମୁଁ ମଧ୍ୟ ଦିନେ ମୋ ପିତା ଶାହାଜାହାନଙ୍କ ନୟନର ମଣି ଥିଲି — ନୂର୍‌ଜାହାନ କିମ୍ବା ତାଜ୍ ବେଗମ୍‌ଙ୍କ ପରି ମୁଁ ରାଜ୍ୟ ଶାସନ କରି ପାରିଥାନ୍ତି ! କିନ୍ତୁ ନିଷାଦରାଜ ନଳ କିମ୍ବା ଅଯୋଧାର ରାଜା ରାମଙ୍କ ପରି ମୋର ସ୍ୱାମୀ ନ ଥିଲେ — ଥିଲେ ପ୍ରେମିକ — କିନ୍ତୁ ତାଙ୍କର ଆଭିଜାତ୍ୟ, ବାଦ୍‌ଶା ବେଗ୍‌ମଙ୍କ ଐଶ୍ୱର୍ଯ୍ୟ ନିକଟରେ ଥିଲା ଏକାନ୍ତ ମ୍ଳାନ ।

ମୁଁ ମୋ ବସ୍ତ୍ରକୁ ଛିଣ୍ଡାଇ ପକାଇଲି ! ମୋ ଭାଇ ଦାରା ବି ଦିନେ ଭଲ ପାଉଥିଲେ ରାଣା ଦିଲ୍‌ଙ୍କୁ — ରାଣା ଦିଲ୍ ଥିଲେ ଦିଲ୍ଲୀର ପଥଚାରିଣୀ ନର୍ତ୍ତକୀ । ସମ୍ରାଟ ଶାହଜାହାନ ଦାରାଙ୍କ ସଙ୍ଗେ ରାଣା ଦିଲଙ୍କ ବିବାହ ପ୍ରସ୍ତାବରେ ସମ୍ମତି ଦେଉଥିଲେ — ରାଣା ଦିଲ୍ ସମ୍ରାଟ ଆକବରଙ୍କ ପୌତ୍ରୀ (୧) ନାଦିରା ବେଗମଙ୍କ ସପତ୍ନୀ ହେବାର ଅଧିକାର ପାଇଥିଲେ । ରାଣା-ଦିଲ୍‌ଙ୍କ ଶିବିକାକୁ କେହି କେବେ ରାଜପଥରେ ଅବରୋଧ କରୁ ନ ଥିଲେ । କାରଣ ସେ ଥିଲେ ଦାରାଙ୍କ ପ୍ରେମିକା ।

---

(୧) ନାଦିରା ବେଗମ୍ ଥିଲେ ଜାହାଙ୍ଗୀରଙ୍କ ପୁତ୍ର ପାରଭେଜ୍‌ଙ୍କ କନ୍ୟା ଏବଂ ଦାରାଙ୍କ ପତ୍ନୀ ।

ଶୋକାଛନ୍ନ ହୃଦୟରେ ଅନ୍ତଃପୁରରେ ବସି ଆକାଶ ପାତାଳ ଭାବୁଛି—ଚିନ୍ତାର ଶେଷ ନାହିଁ । ଅଭିମାନିନୀ ଜାହାନାରା ବେଗମ୍ ! ତୁମର ପ୍ରାଣ ଯଦି କ୍ଷୁବ୍ଧିତ ନ ହୋଇଥାନ୍ତା...... । ଲଜ୍ଜାଶୀଳ ଜାହାନାରା ! କ୍ଷୋଭ-ଅଭିମାନରେ ତୁମେ ଯଦି ତୁମର ଗାୟକକୁ ଦୁନିଆ ସମ୍ମୁଖରେ ଅସମ୍ମାନିତ କରିବାକୁ ଚେଷ୍ଟା କରି ନ ଥାନ୍ତ...... ! ବିକ୍ଷିପ୍ତ ବସନାଞ୍ଚଳ ସଜାଡ଼ି ଗବାକ୍ଷ ଅଭିମୁଖେ ଅଗ୍ରସର ହେଲି ।

ମୁଁ ଦେଖୁଛି—ଉଦ୍ୟାନର ମାଳୀ ତାର ଦିନର କାର୍ଯ୍ୟ ସାରି ସାଇପ୍ରସ୍ ବୃକ୍ଷ ପାଖ ଦେଇ ଘରକୁ ଫେରୁଛି । ତାର ଏକମାତ୍ର ପତ୍ନୀ ଆଜି ହୋଇଛି ପୁତ୍ର-ସନ୍ତାନର ଜନନୀ ! କି ଗୌରବ ଆଜି ଏ ନାରୀର ! ଏଇ ସାମାନ୍ୟ ନାରୀ ଯେପରି ଗୋଟିଏ ରାଜ୍ୟର ଅଧିଶ୍ୱରୀ—ସେଇ ରାଜ୍ୟରେ ଅଛି ଅସଂଖ୍ୟ ଫୁଲମାଳ, ତାର ପ୍ରିୟତମ ସ୍ୱାମୀ—ଆଉ ଭବିଷ୍ୟତର ଆଶା ଭରସା ସେଇ ସନ୍ତାନଟି ।

କି ହୀନ ଦୁଃଖିନୀ ଏଇ ବାଦ୍‌ଶା ବେଗମ୍ । ତାର ବିବାହ ବସନ ଆଜି ଶତଧା ବିଚ୍ଛିନ୍ନ ।

ମୋ ଆଖିରୁ ବହି ଚାଲିଛି ଅଶ୍ରୁର ବନ୍ୟା । ମନର ଚକ୍ଷୁରେ ମୁଁ ଦେଖୁଛି ଏକ ଦୃଶ୍ୟ—ଉପରେ ନକ୍ଷତ୍ର ଖଚିତ ନୀଳ ଆକାଶ—ମୋ ବିବାହ—ବାସର ଦ୍ୱାରଦେଶ—ମୋର ଅଦେଖାର ସ୍ୱାମୀ ଆସୁଛନ୍ତି । ମୃଦୁ ପବନ ଚୁମ୍ବନ କରୁଛି ମୋ ମୁଖ—କହୁଛି, ପ୍ରିୟତମ ଆସିଛନ୍ତି । ବହୁ ଦୂରରୁ ଭାସି ଆସିଥିବା ସଙ୍ଗୀତ ଧ୍ୱନିରେ କିଏ ଯେପରି କହୁଛି—ତୁମର ପ୍ରିୟତମ ଆସିଛନ୍ତି । ସମୁଦ୍ର ତଳର ମୁକ୍ତାର ନୀରବ ସଙ୍ଗୀତ ପରି ଗୋଟିଏ ଧ୍ୱନି ମୋ କାନରେ ବାଜି ଯାଉଛି—ଏଇ ସଙ୍ଗୀତ ଯେପରି ପୃଥିବୀର ପ୍ରଥମ ଅଭିଜ୍ଞତା ।

ସ୍ୱପ୍ନର ସମସ୍ତ ଅନ୍ତର୍ଦ୍ଧାନ ହୋଇ ଯାଇଛି । ଗବାକ୍ଷ ମଧ୍ୟ ଦେଇ ତାରାମାନଙ୍କ ଉପରେ ନିବଦ୍ଧ ହୋଇଥିଲା ମୋ ଦୃଷ୍ଟି—କେତେବେଳେ ଯେ ନିଦ୍ରାର ଶାନ୍ତିରେ-ଅଭିଭୂତ ହୋଇ ପଡ଼ିଲିଣି ଜାଣେ ନାହିଁ ।

ବେଗମ୍ ନୂରଜାହାନଙ୍କ ଜେସେମିନ୍ ପ୍ରାସାଦରେ ମୋ କୋଠରୀରେ ବସିଥିଲି—ବାହାରେ ଅବିରାମ ବର୍ଷା—ସୀମାହୀନ ଧୂଆଁ

ଆକାଶରେ କ୍ଷଣେ ମାଳ ଅବଗୁଣ୍ଠନ ପରି ଭାସି ଯାଉଥିଲା ମେଘ— । ଏଇ ବର୍ଷା ଜଳରେ ଯେପରି ପୃଥିବୀର ସମସ୍ତ ଜୀବନୀଶକ୍ତି ଭାସିଯିବ ! ଏଇ ଯେପରି ଆବରଣ ଖୋଲିଗଲା— ପ୍ରାସାଦର ଅନ୍ତର ଭେଦ କରି ଏକ ଗଭୀର ନିଶ୍ବାସର ଶବ୍ଦ ସ୍ପଷ୍ଟ ଶୁଭୁଛି । ପବନର ସ୍ୱର କିପରି କରୁଣ, ଶୋକାର୍ତ୍ତ— କ୍ରମେ ତାହା ହେଲା ତୀବ୍ର— ତା ପରେ ଏକ ବିକଟ ଆର୍ତ୍ତନାଦରେ ପରିଣତ ହୋଇ ତାହା ବହୁଦୂରକୁ ବ୍ୟାପିଗଲା । ମୁଁ ଦେଖି ପାରୁଛି ଯମୁନାର ଜଳତରଙ୍ଗ ଆବର୍ତ୍ତର ବେଗରେ ଦୁର୍ନିବାର ହୋଇ ଉଠୁଛି— ଝଞ୍ଜାର ଗତିରେ ମୋ ଅତୀତର ଗୋଟିଏ ସ୍ମୃତି ମୋର ଅଭିମୁଖେ ଛୁଟି ଆସୁଛି !

ନଜବତ୍ ଖାଁ ବଲଖ୍ ରାଜବଂଶର ସନ୍ତାନ— ବୀରତ୍ୱ ପାଇଁ ତାଙ୍କର ଥିଲା ଯଥେଷ୍ଟ ଖ୍ୟାତି । ଯେତେବେଳେ ଅନ୍ତଃପୁରରେ ଶାହଜାହାନଙ୍କ ଜୀବନର ସୀମା ସଙ୍କୀର୍ଣ୍ଣରୁ ସଙ୍କୀର୍ଣ୍ଣତର ହେବାକୁ ଲାଗିଲା,— ସେଥି ସଙ୍ଗେ ସଙ୍ଗେ ଦେଓୟାନ୍-ଇ-ଆମର ସମସ୍ତ ସଭାର ଅଧିବେଶନ ସୀମିତ ହୋଇ ଆସିଲା । ମୁଁ ହିଁ ସେତେବେଳେ ସାମ୍ରାଜ୍ୟର ବିଶିଷ୍ଟ ବ୍ୟକ୍ତିମାନଙ୍କ ସଙ୍ଗେ ରାଜକାର୍ଯ୍ୟ ବିଷୟରେ ଆଲୋଚନା କରୁଥିଲି । ଏପରି କି ନଜବତ୍ ଖାଁଙ୍କ ସଙ୍ଗେ ମଧ୍ୟ ଆଲୋଚନା କରିଛି— ବଲ୍‌କର୍ ଶାସକଙ୍କ ବିରୁଦ୍ଧରେ ଯୁଦ୍ଧର ଆୟୋଜନ ସମ୍ପର୍କରେ ମଧ୍ୟ ଆଲୋଚନା କରିଛି ।

ଆଜି ପରି ଶାହାଜାହାନାବାଦରେ ଆଉ ଦିନକର ଘଟଣା ମନେ ପଡ଼ୁଛି । ମୁଁ ମୋ ଶିବିକାରେ ବସି ଜୁମ୍ମା ମସ୍‌ଜିଦ୍‌ରୁ ପ୍ରାସାଦକୁ ଫେରୁଥିଲି । ପ୍ରାର୍ଥନା କରିବାକୁ ଚେଷ୍ଟା କରିଥିଲି, ପାରି ନ ଥିଲି । ମୁଁ ଭିକ୍ଷା ଦାନ କରିଥିଲି କିନ୍ତୁ ଭିକ୍ଷା ପରିଣତ ହୋଇଥିଲା ଧୂଳିରେ, ହୃଦୟ ହୋଇ ପଡ଼ିଥିଲା ଅଶାନ୍ତ, ଶୂନ୍ୟ— ମୋ ହସ୍ତର ଦାନ ବିନିମୟରେ ମୋତେ ମିଳି ନ ଥିଲା ଆଶୀର୍ବାଦ । ମୋ ଉଦ୍ୟାନର ଲତାଗୁଳ୍ମ ଅନ୍ତରାଳରେ ଅନେକ ଗୋଲାପ ଫୁଟିଥିଲା, କେତୋଟି ପଦ୍ମଫୁଲର ମୃଣାଳ ଅସ୍ତବ୍ୟସ୍ତ ହୋଇ ପଡ଼ିଥିଲା । ମୁଁ ପଡ଼ି ରହିଥିଲି ମୋ ଶଯ୍ୟା ଉପରେ, କିନ୍ତୁ ବିଶ୍ରାମ ମିଳୁ ନ ଥିଲା । ଇଚ୍ଛା ହେଉଥିଲା, କ୍ଷଣେ ଶୀତଳ ପଥରରେ ମୁଣ୍ଡଟିକି ଯାଇ ଶୋଇ ପାରନ୍ତି । ଚିରଦିନ ପାଇଁ ଆଜି ଯେପରି ପୃଥିବୀର ସକଳ ଆଲୋକ ଲିଭିଯାଇଛି ? ପ୍ରାସାଦ ବାହାରେ ରାସ୍ତା ଉପରେ ଶୁଣି ପାରିଲି

ଅଶ୍ୱ ଝୁରର ଧ୍ୱନି । ଅଶ୍ୱ ପୃଷ୍ଠରେ ଆସିଥିଲେ ମୋ ଭାଇ ଦାରା । ତରୁଣ ଯୁବକ ପରି ତେଜସ୍ୱୀନ୍ ମୁଖମଣ୍ଡଳରେ ଦାରା ମୋ ସମ୍ମୁଖରେ ଠିଆ ହେଲେ—ସର୍ବାଙ୍ଗରୁ ତାଙ୍କର ଜଳଧାର ବୋହି ପଡ଼ୁଥିଲା । ମୋତେ ପ୍ରଶ୍ନ କଲେ—ମୁଁ ନଜ୍‌ବତ୍ ଖାଁଙ୍କୁ ବିବାହ କରିବି କି ? ସମ୍ରାଟ ବିଳାସ ବ୍ୟସନରେ ବ୍ୟସ୍ତ—ସେ ବା ଅସମ୍ମତ ହେବେ କାହିଁକି ?

ଆଉ ଅଳ୍ପ କେତୋଟି ଦିନ ପରେ ଦାରା ସିଂହାସନ ଆରୋହଣ କରିବେ । ନଜ୍‌ବତ୍ ଖାଁ ହେବେ ରାଜ୍ୟର ସର୍ବେସର୍ବା । ଯୁବରାଜ ଦାରା କହୁଛନ୍ତି, ଆଜ ରାତିରେ ସମ୍ରାଟଙ୍କ ସଙ୍ଗେ ଏ ବିଷୟରେ ଆଲୋଚନା କରିବେ । ମନେ ହେଲା—ମୋ ସମ୍ମୁଖରେ ଠିଆ ହୋଇଛନ୍ତି ଯେଉଁ ବୀର-ସେନାପତି, ଯେପରି ବିଶାଳ ଅରଣ୍ୟର ବୃକ୍ଷରାଜି ମଧ୍ୟରେ ସବୁଠାରୁ ଉନ୍ନତ ବୃକ୍ଷଟି । ତାଙ୍କର ସମସ୍ତ ଦେହ ରାଜ ରକ୍ତରେ ଉଦ୍‌ଭାସିତ । ପୁଣି ଦେଖିଲି, ଦୁଲେରିଙ୍କ କମନୀୟ କାନ୍ତି । ମୁଖ ମଣ୍ଡଳ ହସରେ ଉଜ୍ଜ୍ୱଳ । ସେଇ ହସ ପାଇଁ ଦୁଲେରି ମୋର ଏତେ ପ୍ରିୟ; ସେ ହସର ତୁଳନା ନାହିଁ । ତାଙ୍କର ସ୍ୱର ସତେ ବା ଭାସିଆସୁଛି—ପବନରେ ସୂର୍ଯ୍ୟ ଆଲୋକରେ ଯେପରି ଭାସି ଆସେ ନୃତ୍ୟର ଛନ୍ଦ ।

ଜୀବନରେ ଅନେକ ଖେଳ ଖେଳିଛି, ଆଉ ଖେଳିବାର ଇଚ୍ଛା ନାହିଁ । କୌଣସି ବିରାଟ ରାଜବଂଶକୁ ଆଶ୍ରୟ କରିବି କି ? ଜାହାନାରା ବେଗମର ଗୌରବ କଣ ଛାୟା-ବିହୀନ ବୃକ୍ଷ ପରି ?

ଭାଇଙ୍କ ଉପରେ ଦୃଷ୍ଟି ନିକ୍ଷେପ କରି, କୌଣସି ଉତ୍ତର ଦେଲି ନାହିଁ । ସେ ଉଚ୍ଚ କଣ୍ଠରେ ହସି ଉଠିଲେ ।

"ଆଜ ସନ୍ଧ୍ୟାରେ ବାପାଙ୍କ ସମ୍ମୁଖରେ ମୁଁ ନଜବତ୍ ଖାଁଙ୍କ ସଙ୍ଗେ ତୁମର ବିବାହ ପ୍ରସ୍ତାବ କରିବି"—ଏତିକି କହି ଦାରା ଉତ୍ତରକୁ ଅପେକ୍ଷା ନ କରି ଚାଲିଗଲେ ।

ସନ୍ଧ୍ୟା ଆଗତ ପ୍ରାୟ । ଆପାଦ ମସ୍ତକ ଘନକୃଷ୍ଣ ବୋରଖାରେ ଆବୃତ୍ତ କରି ଲୋକ ଚକ୍ଷୁର ଅନ୍ତରାଳରେ ରାଜପ୍ରାସାଦ ଅଭିମୁଖେ ଅଗ୍ରସର

ହେଲି । ହାୟାତ୍-ବକସ୍ ବାଗ୍ (୧) ଅତିକ୍ରମ କରି ମୁଁ ଚାଲିଛି । ମୁଁ ଯେପରି ଅମରାବତୀର ନନ୍ଦନ-କାନନ ମଧ୍ୟରେ ହିଁ ଚାଲିଛି ! ଆଜିପରି ଆଉ କେଉଁଦିନ ଅମନ୍ ଫୁଲର ଏପରି ଉତ୍ସବ ଦେଖିନାହିଁ । ଅସ୍ତଗାମୀ ସୂର୍ଯ୍ୟର ଶେଷ ରଶ୍ମି ରେଖାର ଉଜ୍ଜ୍ୱଳତାରେ ବର୍ଷଣ ମୁଖର ମେଘଖଣ୍ଡ ଆହୁରି ଉଜ୍ଜ୍ୱଳ ହୋଇ ଉଠିଛି । ରକ୍ତ ଆଲୋକ ଶିଖା ମର୍ମର ପ୍ରାସାଦ ଓ ମସୃଣ ପ୍ରସ୍ତର ଚଟାଣକୁ ଅପରୂପ ସୌନ୍ଦର୍ଯ୍ୟରେ ମଣ୍ଡିତ କରୁଛି । ରକ୍ତମୁଖି ଫୁଲ ମାନ ଓ ଲୋହିତ ରଙ୍ଗରେ ଉଦ୍ଭାସିତ, କଳାବତୀର ରକ୍ତିମ ଆଭା ବିଚ୍ଛୁରି ପଡ଼ୁଛି । ହୃଦପୁର ପ୍ରାଙ୍ଗଣରେ ରାଶି ରାଶି ଗୋଲାପ ହୋଇ ଉଠୁଛନ୍ତି ରକ୍ତିମ ଗୋଲାପ । ତାର ସୁରଭିରେ ଦିନର ଦେବତା ପାଇଁ ଶେଷ ପୂଜାର ଅର୍ଘ୍ୟ ପ୍ରସ୍ତୁତ କରୁଛି । ଅସ୍ତ ସୂର୍ଯ୍ୟର ମ୍ଳାନ ରଶ୍ମିକୁ ଛୁଇଁବା ପାଇଁ ନଦୀର ଜଳ ଆକୁଳ ଆବେଗରେ ହାତ ଠାରି ଇଙ୍ଗିତ ଦେଉଛି । ସୁବର୍ଣ୍ଣ ମଣ୍ଡିତ ଶିଖରର ଶୀର୍ଷରେ ଜଳୀୟ କଣା ସବୁ ନୀଳ ଆକାଶର ପ୍ରଚ୍ଛଦ ପଟରେ ଆହୁରି ଉଜ୍ଜ୍ୱଳ ଦିଶୁଛନ୍ତି ।

ଆଲୋକ ମୋତେ ଯେପରି ବିଭ୍ରାନ୍ତ କରିଦେଉଛି—ମଦିର ଛନ୍ଦରେ ମୋ ଚେତନା ହଜିଯାଉଛି—ତ୍ରସ୍ତ ପାଦରେ ମୁଁ ପ୍ରବେଶ କଲି କମଳା ଲେମ୍ବୁ ବଗିଚାରେ । ଗୁମ୍ଫାର ଅନ୍ତରାଳରେ ପ୍ରସ୍ତର ଖଣ୍ଡ ଉପରେ ବସିଲି । ତୀବ୍ରଜ୍ୱାଳାର ଦହନରେ ଯେପରି ଧୀରେ ଧୀରେ ମୋ ଚେତନା ହଜି ଯାଉଥିଲା । ମୁଁ ହେବି ନଜବତ୍ ଖାଁଙ୍କର ପରିଣୀତା ! ସାମ୍ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ମୁଁ ଯାହାଙ୍କୁ ଭଲ ପାଏନା, ଶେଷରେ ତାଙ୍କରି ଆଦେଶ ପାଳନ କରିବି ?···ମନେପଡ଼ୁଛି, ବଲ୍‌କ ରାଜ୍ୟର ପ୍ରସଙ୍ଗ ଆଲୋଚନା କଲାବେଳେ ତାଙ୍କର ସେଇ କୁଟିଳ ଦୃଷ୍ଟି । ମୋ ମନରେ ବିଦ୍ୟୁତର ପ୍ରବାହ ଖେଳିଗଲା ! ସେ ଯେପରି ଦୁଇଟି ସ୍ୱରରେ କଥା କହୁଥିଲେ—ଗୋଟିଏ ଶାନ୍ତ ମଧୁର କଣ୍ଠ, ଅନ୍ୟଟି ଗମ୍ଭୀର, ଭୟାର୍ତ୍ତ । ନଜବତ୍ ଖାଁ କହୁଥିଲେ—"ମୁଁ ଯଦି ବଲ୍‌କର ଅଧୀଶ୍ୱର ହୁଏ, ତେବେ ରାଜକୁମାରୀ

---

(୧) ହାୟାତ୍-ବକ୍ସ ବାଗ ଅର୍ଥାତ୍ ପ୍ରାଣଦାୟିନୀ ଉଦ୍ୟାନ । ଫୁଲପାଇଁ ବିଖ୍ୟାତ ସେଠାରେ ବହୁ କୃତ୍ରିମ ଝରଣା ଥିଲା ଏବଂ ପ୍ରତି ଝରଣା ପାର୍ଶ୍ୱ ବିଭିନ୍ନ ବର୍ଣ୍ଣର ପ୍ରସ୍ତରରେ ମଣ୍ଡିତ ହୋଇଥିଲା । ତେଣୁ ଝରଣାର ଜଳକଣିକା ବହୁ ବର୍ଣ୍ଣ ଧାରଣ କରି ଅପୂର୍ବ ଦିଶୁଥିଲା । ଗ୍ରୀଷ୍ମକାଳରେ ଅନ୍ତଃପୁର ବାସିନୀମାନେ ଏହି ଉଦ୍ୟାନରେ ଭ୍ରମଣ କରି କ୍ଳାନ୍ତି ଦୂର କରୁଥିଲେ ।

ହେବେ···।" ମୁହୂର୍ତ୍ତିକ ପାଇଁ ମନରେ ନୂତନ ଆବେଗର ସ୍ରୋତ ଖେଳି-ଗଲା । ତେବେ କ'ଣ ରାଜକୁମାରୀ ଜାହାନାରା ହେବ ନଜରବନ୍ଦୀ ଖାଁଙ୍କଠି ?

ଦେଓ୍ୱାନ-ଇ-ଆମ୍‌ରୁ ଏକ ବିରାଟ ଢେଉ ପରି ଭାସି ଆସୁଥିଲା ସଙ୍ଗୀତର ସ୍ୱର । ସଙ୍ଗୀତର ଢେଉରେ ଢେଉରେ ମୁଁ ଯେପରି ଭାସି ଚାଲିଛି । ଆନନ୍ଦର ବ୍ୟୋମଯାନରେ ମୁଁ ଊର୍ଦ୍ଧ୍ୱ ଆକାଶକୁ ଉଠିଲି—ତା'ପରେ ପୁଣି ଖସି ପଡ଼ିଲି ଦୁଃଖର ଉପତ୍ୟକାରେ ! ଗୋଟିଏ ଧ୍ୱନି ସମସ୍ତ ଶୂନ୍ୟକୁ ଦ୍ୱିଖଣ୍ଡିତ କରି ମୋତେ ଯେପରି ଛୁରିକାର ଆଘାତରେ ବିଦ୍ଧ କରିଦେଲା ! ଏ ବ୍ୟଥା ମୋ ପାଇଁ ନୂଆ ନୁହେଁ । ଆଉ ଦିନେ ମୁଁ ମୋର ରକ୍ଷିବନ୍ଧ ଭାଇଙ୍କ ପାଇଁ ଆଗ୍ରହରେ ଅପେକ୍ଷା କରିଥିଲି । ସେଦିନ ଏହିପରି ବ୍ୟଥା ଅନୁଭବ କରିଥିଲି । ଆଉ କେବେ ସେପରି ଅନୁଭୂତ ହୋଇନାହିଁ ।

ମନେ ହେଲା, ଯେପରି କେହି ଜଣେ କଥା କହୁଛି—ଅନ୍ୟ ସମସ୍ତେ କାନ୍ଦୁଛନ୍ତି ! ଯେ କଥା କହୁଥିଲା, ସେ ଯେପରି ସ୍ୱପ୍ନର ଆବେଗରେ ଆଚ୍ଛନ୍ନ ହୋଇଥିଲା । ତା' ନିକଟରେ ମୋ ରାକ୍ଷିର ଆଉ କି ପ୍ରୟୋଜନ ? ସେ ରାକ୍ଷି ହୁଏତ ଆଜି ଆଉ କେଉଁ ବାହୁକୁ ବେଷ୍ଟନ କରିଥିବ । ପୁରୁଣା ମସ୍‌ଜିଦ୍‌ରେ ବସି ମୁଁ ଯେଉଁ ପଦଟି ପଢ଼ିଥିଲି, ତାର ଆଉ କି ଅର୍ଥ ହୋଇପାରେ ? ମନେ ପଡ଼ୁଛି, ସେତେବେଳେ ନାମ—ଅଜଣା ପକ୍ଷୀଟିଏ ପ୍ରାଚୀର ଉପରେ ଅଶୁଭ ଧ୍ୱନି କରୁଥିଲା—ମୋ ପ୍ରାଣ କିନ୍ତୁ ଆନନ୍ଦର ସଙ୍ଗୀତରେ ମୂର୍ଚ୍ଛିତ ହେଉଥିଲା । ମୋର ସମସ୍ତ ଦେହ ଓ ମନ ପରିଣତ ହୋଇଥିଲା ଏକ ସୁରମ୍ୟ ପୁଷ୍ପ-ଉଦ୍ୟାନରେ !

ମୁଁ ଆକାଶ ଅଭିମୁଖେ ବାହୁଦ୍ୱୟ ପ୍ରସାରିତ କଲି । ଦୁଇଟି ବାହୁର ମଧ୍ୟରେ କି ବିରାଟ ଶୂନ୍ୟତା । ହୃଦୟରେ ଜାବୁଡ଼ି ରଖିବା ପାଇଁ କୌଣସି ବସ୍ତୁ ପାଇଲି ନାହିଁ,—ଅଶାନ୍ତ ହୃଦୟକୁ ଶାନ୍ତ କରିବା ପାଇଁ କ'ଣ ବା ପାଇବି ? ମା ସନ୍ତାନ ପାଇଁ ସବୁ କିଛି ତ୍ୟାଗ କରେ । ସେଇଥିରେ ତାର ଆନନ୍ଦ ! କିନ୍ତୁ ସେ ତ୍ୟାଗ ଯଦି ନିଷ୍ଫଳ ହୁଏ, ତେବେ ସେ ତ୍ୟାଗ ହୋଇ ପଡ଼େ, ଏକ ମସ୍ତବଡ଼ ବୋଝ । ···ପତି ବିହୀନା ନାରୀର ଜୀବନ, ସୂର୍ଯ୍ୟ-ବିହୀନ ଦିବସ ପରି ।

ଦେଓ୍ୱାନ-ଇ-ଆମର ସଙ୍ଗୀତ ଉଦ୍ଦାମ ହୋଇ ଉଠିଥିଲା । ସେଥି ସଙ୍ଗେ ସଙ୍ଗେ ମୋ ହୃଦସ୍ପ ହୋଇ ଉଠୁଥିଲା ଉଦ୍ଦାମତର । ମନୁଷ୍ୟତ୍ୱର ଅପମାନକାରୀ ଆଁଉରଙ୍ଗଜେବଙ୍କ ଅଧୀନରେ ଯେ ରାଜ୍ୟଶାସନ କରେ, ତାଙ୍କ ପାଇଁ ସମ୍ରାଟ ଆକବରଙ୍କ ରାଷ୍ଟ୍ର ନୀତିର କ ମୂଲ୍ୟ ଥାଇପାରେ ? ହୁଏ ତ କୌଣସି ମୂଲ୍ୟ ନାହିଁ । ହୁଏତ ସେ ଚୌହାନ କୁଳଶ୍ରେଷ୍ଠ ମେବାରର ରାଣା ପ୍ରତାପଙ୍କ ଗୌରବ ଭୁଲିଯାଇଛନ୍ତି । ସେ କ'ଣ ମୋତେ ସମ୍ବୋଧନ ପାଇଁ ତ୍ୟାଗ କରିଛନ୍ତି ? କିନ୍ତୁ ସେ ଯେ ମୋତେ ସଂଯୁକ୍ତା ନାମରେ ସମ୍ବୋଧନ କରିଥିଲେ ···

ଟର୍ଣ୍ଣର ଶୋକୋଚ୍ଛ୍ୱାସରେ ହୃଦସ୍ପ ଆକୁଳ ହୋଇ ଉଠିଲା । ବଂଶୀର କରୁଣ ଧ୍ୱନି କରତାଳରେ କଳରୋଳରେ ସମ୍ମିଳିତ ସ୍ୱର ମୋ କଣ୍ଠ କୁହରକୁ ରୁଦ୍ଧ କରିଦେଲା । ଏଇ ··· ଦୂର ଦିଗନ୍ତରେ ସୂର୍ଯ୍ୟାସ୍ତର ରକ୍ତିମ ଆଲୋକ । କିଏ ଯେପରି ରକ୍ତରଞ୍ଜିତ ବିରାଟ ବସ୍ତ୍ର ଖଣ୍ଡରେ ସମଗ୍ର ଅଞ୍ଚଳକୁ ଆବୃତ୍ତ କରିଛି ।

ଭାଇଙ୍କର ଦେଓ୍ୱାନ-ଇ-ଆମରୁ ଫେରିବାର ସମୟ ହେଲାଣି । ଗୋଟିଏ ଗୁପ୍ତପଥରେ ମୁଁ ମୋ ମହଲ ପାଖରେ ତାଙ୍କ ସଙ୍ଗେ ଦେଖା କରିବି । ମୋ ଭାଗ୍ୟରେ କଣ ଅଛି ଜାଣିବାକୁ ଖୁବ୍ ଉଦ୍‌ବିଗ୍ନ ହୋଇ ପଡ଼ିଲି । ସେଇଥିପାଇଁ ତ ସେଠାକୁ ଯାଉଛି । ହୁଏତ ଶେଷ ସିଦ୍ଧାନ୍ତ ପୂର୍ବରୁ ଦେଖା ହେଲେ କିଛି ଗୋଟାଏ ବ୍ୟବସ୍ଥା ହୋଇପାରେ ।

ଦେଓ୍ୱାନ-ଇ-ଆମର ପଥରେ ହଠାତ୍ ଏକ ଶବ୍ଦ ଶୁଣିଲି । ଦେଖିଲି, ଦୁଇଜଣ ମଣିଷ । ଜଣଙ୍କ ମସ୍ତକରେ ପୀତବର୍ଣ୍ଣର ଶିରସ୍ତ୍ରାଣ, ହାତରେ ରାଜଦଣ୍ଡ, ଘନ କୃଷ୍ଣ ଝାଲର ଝୁଲି ପଡ଼ିଛି । ତାଙ୍କର କଥା କପର ଗ୍ଲୁହରତମ ଅଂଶରୁ ବାହାରୁଥିବା ଶବ୍ଦପରି ଶୁଭୁଥିଲା । ବୃକ୍ଷର ପତ୍ର ଉହାଡ଼ରେ ଲୁଚି ଦେଖିଲି — ନଜବତ୍ ଖାଁ । ।

ଲୋକଦୁଇଟି ପ୍ରସ୍ତର ଚଟାଣ ଅତିକ୍ରମ କରି ଠିଆହେଲେ । ଅର୍ଦ୍ଧ-ସ୍ୱଗତ ଭାବେ କେହି ଜଣେ କହୁଥିଲା—"ମନେହୁଏ, ଶାହାଜାଦା ଦାରା ହିବୁଛନ୍ତି, ସେ ହିଁ ସିଂହାସନ ଆରୋହଣ କରିବେ । ମୋ ଦୃଷ୍ଟିର ତରବାରୀ ଉନ୍ମୁକ୍ତ ଥିବାଯାଏ ଦିଲ୍ଲୀର ସିଂହାସନ ଆରୋହଣ କରିବାର ଶକ୍ତି ତାଙ୍କର

ନାହିଁ । ସମ୍ରାଟ ନଜବତ୍ ଖାଁଙ୍କ ସଙ୍ଗେ ନିଜ କନ୍ୟାକୁ ବିବାହ ଦେଇ ପାରିବେ ନାହିଁ ବୋଲି କହିଲେବେଳେ ତାଙ୍କ କଣ୍ଠରେ ଘୃଣା ଫୁଟି ଉଠିଥିଲା । ବୋଧହୁଏ ସମ୍ରାଟ ତାଙ୍କ କୁମାରୀ ବେଗମ୍‌କୁ ଅନ୍ତଃପୁରରେ ହିଁ ରଖିବାର ଅଭିଳାଷୀ ।"

ନଜବତ୍ ଖାଁ ଓ ତାଙ୍କ ବନ୍ଧୁ ଜାଫର ଧୀରେ ଆଗେଇ ଆସିଲେ । ସେମାନେ ସେଇ ବିରାଟ ବୃକ୍ଷ ତଳକୁ ଆସିଲେ । ବୃକ୍ଷତଳେ ବିଛାଯାଇଥିବା ମଖମଲ୍‌ର ଆସ୍ତରଣ ଉପରେ ବସିଲେ । ମୁଁ ବୃକ୍ଷ ଉହାଡ଼ରେ ଠିଆହୋଇ ସେମାନଙ୍କ ଅଲକ୍ଷ୍ୟରେ ସେମାନଙ୍କ ଆଲୋଚନା ଶୁଣିଲି— ସମ୍ରାଟଙ୍କୁ ଖୁବ୍ ଶୀଘ୍ର ମତ ବଦଳାଇବାକୁ ହେବ, କାରଣ ସିଂହାସନ ରକ୍ଷା କରିବା ପାଇଁ ତାଙ୍କୁ ଶକ୍ତିମାନ୍‌ର ସାହାଯ୍ୟ ନେବାକୁ ହିଁ ହେବ । ଶାହାଜାହାନ ଯେବେ ଯେପରି ଜାହାଙ୍ଗୀରଙ୍କ ବିରୁଦ୍ଧରେ ଅଭିଯାନ କରିଥିଲେ, ଆଉରଙ୍ଗଜେବ ମଧ୍ୟ ସେହିପରି ସାମ୍ରାଜ୍ୟ ଉପରେ ଆକ୍ରମଣ କରିଦେବେ । ନୂର୍‌ଜାହାନ୍ ଥିଲେ ତାର ସାକ୍ଷୀ, ଜହାନାରା ବେଗମ୍ ରୂପସୀ, ବୁଦ୍ଧିମତୀ, ଅର୍ଥଶାଳିନୀ । ସମସ୍ତ ସୁରଟ ବନ୍ଦରର ଶୁଳ୍କ ତାଙ୍କର ପ୍ରାପ୍ୟ - ସେଇ ଅର୍ଥ ତାଙ୍କର ଚମ୍ପୁକ ପାଇଁ ବ୍ୟୟିତ ହୁଏ (୧) ।

ନଜବତ୍ ଖାଁ ଉଠି ଠିଆହେଲେ, ତାଙ୍କର ଶରୀର କ୍ରୋଧରେ କମ୍ପୁଥିଲା । ତୀକ୍ଷ୍ଣ କଣ୍ଠରେ କହିଲେ, "ଜାହାନାରା ବେଗମ୍‌କୁ ବିବାହ କରିବାକୁ ମୁଁ ଗୃହୀ ନ ଥିଲି । ଶାହାଜାଦ ଦାରା ଅହଙ୍କାରୀ, ପ୍ରଶଂସାପ୍ରିୟ— ସେ ହିଁ ମୋତେ ଏପରି ପ୍ରସ୍ତାବରେ ଜଡ଼ିତ କରିଛନ୍ତି । ମୁଁ ଜାହାନାରା ବେଗମ୍‌କୁ କେବଳ ଓଢ଼ଣୀର ଆବରଣରେ ହିଁ ଦେଖିଛି । ତାଙ୍କ ସୌନ୍ଦର୍ଯ୍ୟର ଖ୍ୟାତି ଅଛି— ବହୁ ପ୍ରତ୍ୟକ୍ଷଦର୍ଶୀ ତାହା କହନ୍ତି । ବୁନ୍ଦେଲଙ୍କୁ ପଚାରିଲେ ସେ କହିବେ । ଆହୁରି ଅନେକ ଜାଣନ୍ତି, ଦିଲ୍ଲୀର ପ୍ରାଚୀର ପାର୍ଶ୍ୱରେ ସେମାନଙ୍କ ନାମ ଶୁଣାଯାଏ ।"

ବିଷାକ୍ତ ଶରରେ ଆକ୍ରାନ୍ତ ବନର ହରିଣୀ ପରି ମୁଁ ସ୍ତବ୍ଧ ହୋଇ ତାଙ୍କ କଥା ଶୁଣିଲି । ନଜବତ୍ ଉଚ୍ଚକଣ୍ଠରେ ହସିଉଠିଲେ— "ହେ ରାଜ-

(୧) ମୋଗଲ ରାଜକୁମାର ଓ ରାଜକୁମାରୀମାନଙ୍କ ବ୍ୟୟ ପାଇଁ ଗ୍ରାମ, ପ୍ରଗଣା, କମ୍ପା ବାଣିଜ୍ୟ ଶୁଳ୍କ ନିର୍ଦ୍ଧାରିତ ହୋଇଥିଲା । ଜାହାନାରାଙ୍କର ପ୍ରାପ୍ୟ ଥିଲା ସୁରଟର ବାଣିଜ୍ୟ ଶୁଳ୍କ ।

ବଂଶର କପରି ସୁନାମ ରକ୍ଷା କରିବାକୁ ହେବ, ତାହା ମୁଁ ଜାଣେ । ହିନ୍ଦୁସ୍ତାନର ରାଜକୁମାରୀର ଶରୀରରେ କାଫେରର ରକ୍ତକଣିକା ପ୍ରବାହିତ । ଜାହାନାରାଙ୍କୁ ବିବାହ କରି ମୋ ବଂଶ ମର୍ଯ୍ୟାଦାକୁ ମୁଁ କଳଙ୍କିତ କରିବି ନାହିଁ (୧) । ମୋ ଅଶ୍ୱକୁ ମୁଁ ନିଜେ ହିଁ ସଂଯତ କରିବି — ଅନ୍ୟ କାହାରି ପ୍ରୟୋଜନ ପଡ଼ିବ ନାହିଁ ।”

ମୁଁ ପ୍ରାୟ ମୂର୍ଚ୍ଛା ଯାଇଥିଲି, ମୋ ଶରୀରର ରକ୍ତ ଯେପରି ଫୁଟି ବାହାରି ଆସୁଥିଲା । ମୁଁ ତାଙ୍କ ବନ୍ଧୁଙ୍କୁ ଅନାଇଲି । ମନେ ହେଲା — ସେ ଯେପରି ଜଣେ ଶିକାରୀ, ନୂଆ ଶିକାର ଅନୁସନ୍ଧାନରେ ବ୍ୟସ୍ତ । ତାଙ୍କ ଆଖିରେ ଭାସି ଉଠୁଥିଲା ତୀକ୍ଷ୍ଣ କ୍ରୂର ଦୃଷ୍ଟି । ସେ କହିଲେ, “ଆମୀର୍, ତୁମର ମନେ ନାହିଁ, ସେଦିନ ଅଗ୍ନିକାଣ୍ଡରେ ରାଜକୁମାରୀଙ୍କ ଦେହ ପୋଡ଼ି ଗଲା, କିନ୍ତୁ ସେ ଆଉ କାହାରିକୁ ତାଙ୍କ ଦେହ ଛୁଇଁବାକୁ ଦେଲେ ନାହିଁ । ସେଦିନ ତା’ଙ୍କ ଚରିତ୍ରର ଖ୍ୟାତି ତୁମେ କଣ ଶୁଣିନାହଁ ?”

ଅବଜ୍ଞା ପ୍ରକାଶ କରି ନଜବତ୍ ଖାଁ ଉତ୍ତର ଦେଲେ—“ତାଙ୍କ ରକ୍ତରେ ବହୁ ରକ୍ତ—ଧାରାର ମିଶ୍ରଣ ହୋଇଛି । ଆବଶ୍ୟକ ହେଲେ ପ୍ରେମିକକୁ ପାଇବା ପାଇଁ ଜାହାନାରା ବେଗମ୍ ପ୍ରାଣ ଦେଇପାରନ୍ତି । କିନ୍ତୁ ସେଦିନ ସେ ପ୍ରେମିକ କେଉଁଠି ଥିଲା ? ଅନ୍ତତଃ ମୁଁ ସେ ପ୍ରେମିକ ନୁହେଁ । ସେଦିନ ମୁଁ ସେ ପ୍ରେମିକକୁ ଜାଣିଥିଲେ ମୋ ତରବାରୀ ତା ମସ୍ତକକୁ ଚୁମ୍ବନ କରିଥାନ୍ତା ! ଚାଲ ଏଠାରୁ ଚାଲିଯିବା । କିନ୍ତୁ କିଏ ଯେପରି ମୋର ଦୁଇ ପାଦକୁ ବାନ୍ଧି ଦେଉଛି ।”

ମୋ ନିଃଶ୍ୱାସ ରୁଦ୍ଧ ହୋଇ ଆସୁଥିଲା । ନଜବତ୍ ଠିଆ ହୋଇ ରକ୍ତ ମଣ୍ଡିତ ଆକାଶକୁ ଅନାଇ କହିଲେ, “ବନ୍ଧୁ ଜାଫର ! ଦିନେ ପ୍ରଭାତରେ ଏକ ରାଜକନ୍ୟାକୁ ଦେଖିଥିଲି—ମନେ ହେଲା ଗବାକ୍ଷ ନିକଟରେ ଠିଆ ହୋଇ ସୁନ୍ଦର ସୂର୍ଯ୍ୟୋଦୟ ହିଁ ଦେଖୁଛି । ସେ ଥିଲା ଏକ ପବିତ୍ର କିଶୋରୀ, ଏକ ଅନାଘ୍ରାତ ପୁଷ୍ପ । ତାହାକୁ ମୁଁ ମୋ ଅନ୍ତଃପୁରକୁ ରାଣୀ କରି ଆଣିଥାନ୍ତି; ତାର ପାଦତଳେ ମୋର ସମସ୍ତ ମୁକ୍ତା ନିବେଦନ କରିଥାନ୍ତି । ନୀଳକାନ୍ତ ମଣି ପରି ଉଜ୍ଜ୍ୱଳ ଥିଲା ତା’ର ଦୃଷ୍ଟି । ସେ ଦୃଷ୍ଟି

(୧) ହିନ୍ଦୁସ୍ତାନର ମୋଗଲ ରାଜ ବଂଶ ସଙ୍ଗେ ହିନ୍ଦୁ ରକ୍ତ—ଧାରାର ସମ୍ମିଶ୍ରଣ ଏଠାରେ ସୂଚିତ ।

ମୋ ନୟନ ସମ୍ମୁଖରେ ସପ୍ତମ ସ୍ୱର୍ଗର ଦ୍ୱାର ଉନ୍ମୁକ୍ତ କରି ଦେଲା । କିନ୍ତୁ ସେଇ ଦିନ ସନ୍ଧ୍ୟାରେ ହିଁ ତାର ମୃତ୍ୟୁ ହେଲା… ।"

ସେ କହି ଚାଲିଥିଲେ, "ମୋ ଅନ୍ତଃପୁରର ସମସ୍ତ ନାରୀ ହିଁ ବଲ୍‌କ ପର୍ବତ ଶିଖରର ଶିଶିର ପରି ପବିତ୍ର, ଅନାଘ୍ରାତ । ବର୍ତ୍ତମାନ ମୁଁ ପ୍ରମୋଦ ଉଦ୍ୟାନକୁ ଯିବି । ତୋଳି ନେବି ରକ୍ତ ଗୋଲାପ । ମୋ ଇଚ୍ଛାରେ ସେ ଗୋଲାପ ମୋ ଅଧର ସ୍ପର୍ଶ କରିବ ।"

ଜାଫର୍‌ଙ୍କୁ ମୁଁ ଜାଣିଥିଲି, ସେଥିଲେ ଆଉରଙ୍ଗଜେବଙ୍କ ବନ୍ଧୁ । ଜାଫର ଭାରତୀୟମାନଙ୍କୁ ଘୃଣା କରନ୍ତି । ନଜବତ୍ ଖାଁଙ୍କ ହାତରେ ହାତ ମିଳାଇ ସେ କହିଲେ, "ଶୁଣ ଦେଖି ଭାଇ, ତୁମେ ଯଦି ମୋଗଲ ସାମ୍ରାଜ୍ୟର ସର୍ବଶ୍ରେଷ୍ଠ ନାରୀ ରାଜକୁମାରୀ ଜାହାନାରାଙ୍କୁ ଶତ୍ରୁ ହାତରୁ ଉଦ୍ଧାର କରି ଆଣି, ଆଉ ତୁମର ପ୍ରତିରୋଧ କରିବ କିଏ ? ଜାହାନାରା ବେଗମ୍ ତୁମ ଅନ୍ତଃପୁରରେ ଯେଉଁ ମୁହୂର୍ତ୍ତରେ ପାଦ ଦେବେ, ତୁମ ଅନ୍ତଃପୁର ନନ୍ଦନ କାନନରେ ପରିଣତ ହେବ । ଜାହାନାରା ସବୁ ଦିନେ ଗୋଟିଏ କୁମାରୀ ପରି ଶୋଭା ପାଇବେ ।"

ନଜବତ୍ ଖାଁଙ୍କ ଦୃଷ୍ଟି ସ୍ଥିର ଥିଲା । ସେ କହିଲେ, "ମୋତେ ଶତ୍ରୁର କୌଣସି ନାରୀକୁ ଉଦ୍ଧାର କରିବାରୁ ପଡ଼େ, ତେବେ ସେ ଶତ୍ରୁ ହେବା ଉଚିତ ମୋର ସମକକ୍ଷ, ସମବଂଶ । କିନ୍ତୁ ଜାହାନାରା ବେଗମ୍ ଯଦି ମୋ ଅନ୍ତଃପୁରକୁ ଉପେକ୍ଷା କରି କୌଣସି କାଫେର୍‌ର ଆଶ୍ରୟ ଗ୍ରହଣ କରନ୍ତି, ତେବେ ସେ ନିଶ୍ଚୟ ଜାହାନାରାଙ୍କୁ 'ହୁରୀର୍' ପଦରେ ସମ୍ମାନିତ କରିବ ।"

ମୋର ଆଉ ଶୁଣିବାକୁ ଧୈର୍ଯ୍ୟ ନ ଥିଲା—ମୁଁ ମୂର୍ଚ୍ଛା ଗଲି । ମୋର ଚେତନା ଫେରି ଆସିଲା ବେଳକୁ ସକାଳର ଶିରିରେପାତରେ ମୋ ରକ୍ତ ଜମାଟ ବାନ୍ଧିଯାଇ ଥିଲା ।

ସେ ଲୋକ ଦୁହେଁ ଚାଲି ଯାଇଥିଲେ, ନିକଟରେ ଆଉ କେହି ନ ଥିଲେ । ମୁଁ ମୋ ଅଜ୍ଞାତରେ ମହବତ୍-ବାଗ୍ ଅଭିମୁଖେ ଚାଲିଲି— ସେଠାରେ କ୍ରୀତଦାସମାନେ ପ୍ରଦୀପର ଆଲୋକରେ କୃଷ୍ଣ ସର୍ପର ସନ୍ଧାନ

କରୁଥିଲେ । ସେତେବେଳଯାଏ ଆକାଶରେ ଆଲୋକ ଫୁଟି ଉଠି ନ ଥିଲା ।

ମୋତେ କେହି ଦେଖି ପାରି ନ ଥିଲେ—ମୁଁ ତାହା ହିଁ ଚାହୁଁଥିଲି । ଯୁଇ, ଗୋଲପ, ପଦ୍ମ ଓ କଣିଅର ଫୁଲ ଗନ୍ଧରେ ମୋ ଚତୁର୍ଦ୍ଦିଗ ମହକି ଉଠୁଥିଲା । ଏଠାରେ ଉଦ୍ୟାନର ସବୁ ଫୁଲ ଶୁଭ୍ରରଙ୍ଗର—ଶୁଭ୍ରଫୁଲ୍ ରାଶିର ସୁରଭି ମୋ'ର ସକଳ ବ୍ୟଥା ଉପରେ ପ୍ରଲେପ ହସ୍ତ ବୁଲାଇ ଆଣିଲା ।

ଦୁଇ ପାଖର ସାଇପ୍ରାସ୍ ଶ୍ରେଣୀ ପ୍ରହରୀ ପରି ଠିଆ ହୋଇଥିଲେ । ଶୁଭ୍ର ପଦ୍ମଗୁଡ଼ିକ ଜଳାଶୟ ବକ୍ଷରେ ତାରକା ପରି ମନେ ହେଉଥିଲା । ସମସ୍ତ ସ୍ଥାନଟିକୁ ଆଚ୍ଛନ୍ନ କରି ରଖିଥିଲା ସନ୍ଧ୍ୟାର ଅନ୍ଧକାର ଓ ନିର୍ଜନତା । ମଖମଲ ପରି ମସୃଣ ତୃଣଦଳ ଉପରେ ମୁଁ ଲଘୁ ପଦକ୍ଷେପରେ ଚାଲିଲି । ମଖମଲର ସୂକ୍ଷ୍ମ ମସୃଣ ରେଶମ ମୋ ପାଦକୁ ଚୁମ୍ବନ କରି ସତେ ବା ଧନ୍ୟ ହେଉଥିଲା । ହଠାତ୍ ମନେ ହେଲା, କିଏ ଯେପରି ଅତି ସନ୍ତର୍ପଣରେ ମୋ ବାହୁ ସ୍ପର୍ଶ କଲା ।

ସାଇପ୍ରାସ୍‌ର ଗୁମ୍ଫାରେ ମୁଁ ଲୁଚିଗଲି । ସର୍ପର ଭୟ ମୋର ନ ଥିଲା । ମୋ ମନକୁ ଗୋଟିଏ ବିଷଧର ସର୍ପ ବାରମ୍ବାର ଦଂଶନ କରୁଥିଲା । ଏକ ଉଚ୍ଛ୍ୱସିତ ଝରଣାର ପାଖରେ ମୁଁ ବିଶ୍ରାମ କଲି । କିଏ ସେଠାରେ ପ୍ରଦୀପ ଜଳାଇ ଯାଇଛି । ବିଶ୍ରାମ ପାଇଁ କ୍ଷୁଦ୍ର ଚନ୍ଦ୍ରାତପଟିଏ ସଜ୍ଜିତ ହୋଇଛି । ନାରୀ ଜନ୍ମ କଣ ଏକ ଭୀଷଣ ଅଭିଶାପ ? ଇଚ୍ଛାହେଲା, ମରୁଭୂମିର ଅସହ୍ୟ କ୍ଲାନ୍ତ ଉଷ୍ଟ୍ର ପରି ଚିତ୍କାର କରି ଉଠିବି—ଯେପରି ସମସ୍ତ ଦିଲ୍ଲୀବାସୀ ମୋ ଚିତ୍କାରରେ ଚମକି ପଡ଼ିବେ ।

ପୁରୁଷ ନାରୀର ପବିତ୍ରତା ରକ୍ଷା କରିବା ପାଇଁ ନାରୀକୁ ଅବରୁଦ୍ଧ କରି ରଖେ । ସେ ଚାହେଁ ଅନାଘ୍ରାତ ପୁଷ୍ପର ଗନ୍ଧ ହିଁ ଉପଭୋଗ କରିବ, କିନ୍ତୁ ନାରୀର ରକ୍ତରେ ଯେ ନିଆଁ ଜଳୁଥାଏ—ପୁରୁଷ କଣ ତାହା ଜାଣେ ? ସ୍ରଷ୍ଟା ନାରୀକୁ ସୃଷ୍ଟି କରିଛନ୍ତି ମାତୃତ୍ୱ ପାଇଁ । ନାରୀ ନିରବରେ ଶୀର୍ଣ୍ଣ ଶୁଷ୍କ ହେଲେ ପୁରୁଷର କ୍ଷତି କଣ ? ପୁରୁଷ ତାହାକୁ ସତୀତ୍ୱ ଆଖ୍ୟା ଦିଏ । ଯଦି ପୁରୁଷ ନାରୀକୁ ଚାହେଁ, ସେଥିରେ ନାରୀର ଭୁଲ କେଉଁଠି ? ହୁଏତ ମୁହୂର୍ତ୍ତକ ପାଇଁ ନାରୀ ପୁରୁଷର ଉପଭୋଗର ସାମଗ୍ରୀ ହୋଇ

ଉଠେ । କିନ୍ତୁ କେତେ ଶୀଘ୍ର ସେ ମୁହୂର୍ତ୍ତରେ ଅବସାନ ହୁଏ ! ଆଜ ବି ନାରୀର ଦେହରେ ଇନ୍ଦ୍ରର ପାପର ଚିହ୍ନ ଅଙ୍କିତ ।

ଜଳାଶୟ ମଧ୍ୟକୁ ଅନାଇଲି । ହୀରକ ଖଣ୍ଡ ପରି ସ୍ୱଚ୍ଛ ଜଳ— ଦୁଃଖୀର ପାଷାଣ ପରି ନିର୍ମମ ! ସେଇ ପାଷାଣରେ ମୋ ଦୃଷ୍ଟି ନିବଦ୍ଧ ହେଲା । ମନେ ହେଲା ଆଉ କେବେ ଯେପରି ଏ ଦୃଷ୍ଟି ଉଜ୍ଜ୍ୱଳ ହୋଇଉଠିବ ନାହିଁ । ତାହାପରେ ପାଦରେ ଦଳିତ ଇନ୍ଦ୍ରଧନୁ ପରି ଉଠି ଠିଆହେଲି । କିନ୍ତୁ ଇନ୍ଦ୍ରଧନୁ ନୂତନ ରୂପରେ ଆକାଶରେ ଦେଖା ଦେବ, ପ୍ରକୃତିରେ ଏଇ ତ ନିୟମ !

ନିଜବରି ଖାଁ ! ବିଶାଳ ବପୁ, ବିରାଟ ବୃକ୍ଷରାଜ ଖର୍ଜୁର ପରି ତୁମେ ମୋ ସମ୍ମୁଖରେ ଠିଆ ହୋଇଥିଲ । ମୁଁ ଜାଣେ, ଶିକୋମୋର୍ ବୃକ୍ଷପରି ଯେଉଁ ଦିଗକୁ ପବନ ବହେ, ତୁମେ ସେଇଦିଗକୁ ନଇଁ ଯାଅ । ନାରୀର ଦୁଃଖ ଦୂର କରିବାର ଶକ୍ତି ତୁମର ନାହିଁ । ମୂର୍ଖ ପରି କ୍ରୋଧରେ ଅଜ୍ଞାନ ହୋଇ ତୁମେ କେତେଗୁଡ଼ିଏ ନାମ ଉଚ୍ଚାରଣ କଲ; କିନ୍ତୁ ତୁମେ ମୋ ବିଷୟରେ କ'ଣ ଜାଣ ? ମଣିଷକୁ ଯେବେ ଦେବତାର ଆଖ୍ୟା ଦିଆଯାଏ, ତେବେ ବୁଲେବି ବିଷ୍ଣୁ ଓ ଶିବଙ୍କର ଅବତାର । ତାଙ୍କପରି ଆଉ କାହାକୁ ଏ ଯାଏ ଦେଖିନି ।

ପବନରେ କ୍ଷୁଦ୍ର ଅଗ୍ନିଶିଖାଟି ବିବ୍ରତ ହେଉଥିଲା;—ସେଠାରେ ନ ଥିଲା କେଉଁ ଦେବତାର ମନ୍ଦିର । ସେ ଶିଖାର ଆଧାର ନ ଥିଲା । ଆଜଯାଏ ସେ ଆଧାରର ସୃଷ୍ଟି ହୋଇନାହିଁ ।

ଜଣକୁ ମୁଁ ଭଲ ପାଇଥିଲି । ବନର ହରିଣୀ ଯେପରି ତୃଷ୍ଣା ଦୂର କରିବାକୁ ଇଚ୍ଛା କରେ ହିମାଳୟର ଜଳଧାରାରୁ ସେହିପରି ତାଙ୍କର ସ୍ତୀରତ୍ନ ମଧ୍ୟରେ ହିଁ ମୋ ଗୌରବ କାମନା କରିଥିଲି । ଅରଣ୍ୟ ପଥର ବିଭ୍ରାନ୍ତ ପଥିକ ଯେପରି ପର୍ବତର ତୁହିନ-ଉଜ୍ଜଳ ଶିଖରକୁ ସ୍ୱର୍ଗର ପ୍ରବେଶ ପଥ ବୋଲି କଳ୍ପନା କରେ, ମୁଁ ସେହିପରି ଆଗ୍ରହରେ ତାଙ୍କର ଆତ୍ମାର ପବିତ୍ରତା କାମନା କରିଥିଲି ।

ଭାରତବର୍ଷରେ ହିନ୍ଦୁ-ନାରୀମାନେ ଲିଙ୍ଗପୂଜା କରନ୍ତି, ସେମାନଙ୍କର ସର୍ବଶ୍ରେଷ୍ଠ ମୁକ୍ତାହାର ସେମାନେ ସେହି ଲିଙ୍ଗ ଦେବତାର

ଚରଣରେ ଉପହାର ଦିଅନ୍ତି । ସ୍ୱର୍ଣ୍ଣପାତ୍ରରେ ସୁଗଂଧଦ୍ରବ୍ୟ ଜାଳି ଚନ୍ଦ୍ରଦେବତାଙ୍କ ପାଇଁ ଆର୍ଘ୍ୟ ରଚନା କରନ୍ତି । ପ୍ରକୃତି ମଧ୍ୟରେ ଶ୍ରେଷ୍ଠ ପ୍ରତୀକକୁ ସେମାନେ ନତଜାନୁ ହୋଇ ଅଭିବାଦନ ଜଣାନ୍ତି । ଖ୍ରୀଷ୍ଟିୟାନ୍ ଧର୍ମରେ ନିଷ୍କଳଙ୍କ ମାତୃତ୍ୱ ପ୍ରତି ଶ୍ରଦ୍ଧାର୍ପଣ କରାଯାଏ । ତେବେ କାହିଁକି ପାପ ମଧ୍ୟରେ ମଣିଷର ଜନ୍ମ ହେବ ?

ଚନ୍ଦ୍ରାର ଆତିଶଯ୍ୟରେ କ୍ଳାନ୍ତ ହୋଇପଡ଼ିଲି । ଦୁଃଖର ସଂଗୀତ ମୂର୍ଚ୍ଛନାରେ ବହିଚାଲିଛି ଜଳଧାରା । ପବନ ପଦ୍ମଫୁଲର ଗନ୍ଧରେ ଆକ୍ରାନ୍ତ । ଧୂପପାତ୍ରର ସୁଗନ୍ଧ ପରି ମୋ ଚାରିପାଖେ ଘେରି ରହିଛି ମହୁମାଛି ଦଳ । କ୍ଷୁଦ୍ର, କ୍ଷୁଦ୍ର ପ୍ରଦୀପ ପରି ରାତିର ଅନ୍ଧାରରେ ଜଳୁଛନ୍ତି ଅସଂଖ୍ୟ ଖଦ୍ୟୋତ । ବହୁଦୂରରେ ଦୀର୍ଘ ଶୀର୍ଣ୍ଣ ସାଇପ୍ରାସ୍ ବୃକ୍ଷର ଶୀର୍ଷରେ ତାରକା ଜଳୁଛି । ପାଷାଣ ଚଟାଣରେ ମୁଁ ନିଜକୁ ଲୋଟାଇଦେଲି । ମନେହେଲା, ଗୋଟିଏ ଶୀତଳ ହସ୍ତ ମୋର କମ୍ପିତ ଦେହ ଅତିକ୍ରମ କରି ଚାଲିଗଲା !

ହଠାତ୍ ମୋ ମାନସ ପଟରେ ତେଇଁଉଠିଲା ଗୋଟିଏ ଦୃଶ୍ୟ । ସେଦିନ ଦରବାରରେ ସିଂହର ଖେଳ ଦେଖା ହେଉଥିଲା । ସିଂହଟି ତାର ମୁଣ୍ଡ ନୁଆଁଇ ମଣିଷ ପରି ରହି ରହି ଗର୍ଜନ କରୁଥିଲା । ମୋର ମନେହେଲା, ସିଂହଟି ଯେପରି ତାର ସଙ୍ଗିନୀର ବିରହରେ କାତର ହୋଇ ପଡ଼ିଛି । ତା'ପରେ ଦେଖିଲି, ଦୁଇଟି ସିଂହ ମରୁଦ୍ୟାନରେ ଆବିର୍ଭୂତ ହେଲେ । ଝରଣାର ଜଳ ଝିଲ୍‌ମିଲ୍ କରୁଥିଲା, ଖର୍ଜୁରବୃକ୍ଷର ଶାଖାରୁ ଖସି ପଡ଼ୁଥିଲା କୃଷ୍ଣଗୁଚ୍ଛ । ଆକାଶରେ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର, ତାହା ହିଁ ଥିଲା ସିଂହ ଦମ୍ପତିଙ୍କ ପାଇଁ ପୃଥିବୀର ପରିଧି । କିନ୍ତୁ ସେମାନେ ଥିଲେ କ୍ଷୁଧାର୍ତ୍ତ । କାଶ୍ମୀର ପର୍ବତମାଳାର ପାଦଦେଶରେ ସେମାନେ ହୁଏତ ନିଶ୍ଚିନ୍ତରେ ରହୁଥାନ୍ତେ ! କିନ୍ତୁ ସ୍ରଷ୍ଟାଙ୍କର କି ଉଦ୍ଦେଶ୍ୟ ସାଧନ ପାଇଁ ସେମାନଙ୍କଠାରେ ଏଇ ଶକ୍ତିର ବିକାଶ ହୋଇଥିଲା ।

ମୋତେ ଜଣାଗଲା, ଦିନ କ୍ରମେ ରାତି ମଧ୍ୟରେ ବିଲୀନ ହୋଇ ଯାଉଛି । ବୃକ୍ଷଲତା ପଶୁପକ୍ଷୀ କି ନିବିଡ଼ ଭାବେ ସେମାନଙ୍କ ଜୀବନ କଟାଉଛନ୍ତି ! ସମଗ୍ର ସୃଷ୍ଟି ମଧ୍ୟରେ ମୁଁ ଯେପରି ନିଃସଙ୍ଗ ! ଭାରତବାସୀଙ୍କ ଦୃଷ୍ଟିରେ ମୋତେ ସମ୍ମାନର ଆସନ ଦେଇ ପାରିବେ, ଏପରି ମହାପୁରୁଷ

କେଉଁଠି ? କେବେ ଆସିବ ସେଇ ମୁହୂର୍ତ୍ତ ? କେବେ ମୋ ନୟନ ସମ୍ମୁଖରେ ଭାସିଉଠିବ ବିବାହ-ବାସରର ରତ୍ନରାଜିର ଦୀପ୍ତି ?

ସନ୍ଧ୍ୟାକାଶର ରକ୍ତିମ ପୃଷ୍ଠଭୂମିକାରେ ମୋ ସମ୍ମୁଖରେ ଭାସି ଉଠିଲା ଗୋଟିଏ ଶୁଭ୍ର ଶିରସ୍ତ୍ରାଣ ଓ ଦୁଇଟି ଉଜ୍ଜ୍ୱଳ ଆଖି । ଗୋଟିଏ କ୍ଷଣରେ ପ୍ରହେଳିକାର ଉତ୍ତର ମିଳିବାପରି, ଗୋଟିଏ ହୃଦୟର ସ୍ପର୍ଶରେ ହିଁ ଅନ୍ୟ ହୃଦୟଟି ମୁକ୍ତି ପାଇପାରେ । କିନ୍ତୁ ସେ ହୃଦୟଟି ଅନ୍ୟ ହୃଦୟଟିର ପ୍ରତିଧ୍ୱନି ହେବା ଆବଶ୍ୟକ ।

ତାଙ୍କର ପ୍ରଥମ ପତ୍ରଟି ଖୋଜୁଛି, ଯାହାକୁ ମୁଁ ମୋ ବକ୍ଷରେ ସଂଲଗ୍ନ କରି ରଖିଛି । ତାଙ୍କର ସର୍ବଶେଷ ପତ୍ରର କେତୋଟି ଶବ୍ଦ ମୋ କର୍ଣ୍ଣ କୁହରରେ ପ୍ରତିଧ୍ୱନିତ ହେବାକୁ ଲାଗିଲା—"ମୋଗଲ ରାଜକୁମାରୀଙ୍କ ଆଲେଖ୍ୟ ସଂଗ୍ରହଶାଳାରେ ଚୌହାନ ରାଜପୁତର ଚିତ୍ରପଟ ଶୋଭାପାଇ ନ ପାରେ !"

ଦୁଲେରା ବି କ'ଣ ନଜବତ୍ ଖାଁଙ୍କ ପରି ଭାବିଲେ ? ଗୋଟିଏ ଲୌହ ହସ୍ତ ମୋ ହୃଦୟକୁ ବଜ୍ରମୁଷ୍ଟିରେ ଯେପରି ଆଘାତ କଲା । ମୋ ଚତୁର୍ଦ୍ଦିଗର ପୃଥିବୀ ହୋଇ ଉଠିଲା ବିରାଟ, ଅବାସ୍ତବ । ସାଇପ୍ରାସ୍ ବୃକ୍ଷ ସବୁ ଆକାଶ ପରି ଉଚ୍ଚ ହୋଇ ଉଠିଲେ । ସେଇମାନେ ହିଁ ଯେପରି ମୋ ଦୁଃଖର ପରିମାପ । ମୋର ଦୁଃଖ ଏତେ ଓଜନ ହୋଇ ଉଠିଲା, ମନେ ହେଲା ଚିଟାଣ ଆଉ ମୋତେ ସମ୍ଭାଳି ପାରିବ ନାହିଁ । ଶୂନ୍ୟତାର ସୀମାହୀନ ଗହ୍ୱରରେ ମୁଁ ଯେପରି ଲୀନ ହୋଇ ଯାଉଛି ! ମୋର ଚେତନା ହଜିଯିବା ପୂର୍ବରୁ ମୋର ସମସ୍ତ ଦୁଃଖ ପ୍ରକାଶିତ ହେଲା ଏକ ବିକଟ ଚିତ୍କାରରେ—ମୋର ସେଇ ବିକଟ ଚିତ୍କାରର ଶବ୍ଦ ରାତ୍ରିର ସ୍ତବ୍ଧତା ଭେଦ କରି ଛୁଟି ଚାଲିଲା—ସମସ୍ତ ପ୍ରାସାଦ ସେଇ ଶବ୍ଦରେ ପ୍ରତିଧ୍ୱନିତ ହେଲା ।

ସକାଳେ ଶୁଣିଲି,—ସେମାନେ କହୁଥିଲେ—ରାତ୍ରିରେ ମହତବ୍ ବାଗ୍‌ରେ ବେଗମ୍ ଜାହାନାରାଙ୍କୁ ସର୍ପ ଦଂଶନ କରିଥିଲା ।

●

# ସପ୍ତମ ସ୍ତବକ

କାଲି ମୁଁ ସୁଲତାନ୍ ମାମୁଦ ଗଜନୀଙ୍କ ଭାରତ ବିଜୟର କାହାଣୀ ଅନ୍‌ସାରୀଙ୍କ କାବ୍ୟରେ ପଢ଼ୁଥିଲି । ସେଥିରେ ଲେଖାଥିଲା, ମାମୁଦ ଭାରତରେ ଯେଉଁ ରକ୍ତଧାର ବୁହାଇ ଦେଇଥିଲେ, ତାହା ଆଜଯାଏ ଶୁଖି ନାହିଁ । ଭାରତ ଭୂମି ଆଜି ବି ରକ୍ତରଞ୍ଜିତ । ଭାରତର ଆକାଶ ଏବେ ବି ରକ୍ତ ବର୍ଣ୍ଣର ମେଘରେ ଆବୃତ । ମାମୁଦ ଗଙ୍ଗାର ତୀରବର୍ତ୍ତୀ ଓ ଥାନେଶ୍ୱରର ସମସ୍ତ ଜନବସତି ଧ୍ୱଂସ କରିଦେଲେ; କାରଣ ସେଗୁଡ଼ିକ ଥିଲା ହିନ୍ଦୁମାନଙ୍କର ତୀର୍ଥ କ୍ଷେତ୍ର । ଗଜନୀ ପ୍ରବେଶ ପଥର ଧୂଳିରେ ସେ ଫିଙ୍ଗିଦେଲେ ଦେବ ମୂର୍ତ୍ତିସବୁ । କାରଣ ଦେବତା ହିଁ ଥିଲେ ଭାରତୀୟ ସୌନ୍ଦର୍ଯ୍ୟର ପ୍ରତୀକ । × × × ଏ ବିସ୍ମୃତ ଦେଶରେ ଶତ୍ରୁର ରକ୍ତଧାରା ବହି ଚାଲିବ ଆହୁରି ଅନେକ କାଳଯାଏଁ । ଯେଉଁ ଭୟାତୁରା ଜନନୀ ସନ୍ତାନର ରକ୍ତରଞ୍ଜିତ ଯୁଦ୍ଧକ୍ଷେତ୍ର ନିଜ ଆଖିରେ ଦେଖିଥିବ, ସେ ନୂତନ ସନ୍ତାନର ମାତୃତ୍ୱ ପ୍ରତ୍ୟାଖ୍ୟାନ କରିବ । ଆଜି ବି ଗଜନୀର ଉଷ୍ଟ୍ରପଦରେଖା ରକ୍ତ-ରଞ୍ଜିତ, ଗଜନୀବାସୀର ତରବାରି ରକ୍ତରେ ଆର୍ଦ୍ର ।

ହିନ୍ଦୁମାନେ ଚିନ୍ତାରେ ବିବ୍ରତ, ନାରୀକୁଳ ଶୋକାତୁରା । କିଏ ଆମମାନଙ୍କୁ ରକ୍ଷା କରିବ ? ମଣିଷର ହୃଦୟରେ ବ୍ୟାଘ୍ରର ହିଂସ୍ର ପ୍ରବୃତ୍ତି ଅଦ୍ୟାପି ବିଦ୍ୟମାନ ।

୧୦୬୭ ହିଜରୀ ଜୁଲ୍‌ହିଜ ଆହ୍ୱର ମାସରେ ଶାହାଜାହାନାବାଦ୍‌ରେ ସମ୍ରାଟ ହେଲେ ରୋଗଶଯ୍ୟାଗ୍ରସ୍ତ । ମଧ୍ୟରାତ୍ରିରେ ପିତାଙ୍କ ଶଯ୍ୟାପାର୍ଶ୍ୱରେ ମୁଁ ଉପସ୍ଥିତ ଥିଲି । ମନେହେଲା, ମୋ ଶିବିକାବାହକମାନଙ୍କ ପାଦ-ତଳର ପୃଥିବୀ କମ୍ପି ଉଠୁଛି । ଗଙ୍ଗାର ଜଳସ୍ରୋତ ପରି ବହୁ ଚିନ୍ତା ବହି ଚାଲିଥିଲା—ସତେ ଯେପରି ତୈମୁର ବଂଶର ଭିତ୍ତି ଆଜି ଶିଥିଳ ହୋଇ ପଡ଼ୁଛି ।

ପିତାଙ୍କ ଶଯ୍ୟା ପାର୍ଶ୍ୱରେ ନତଜାନୁ ହୋଇ କୋରାନ ସ୍ପର୍ଶକରି ମୁଁ ଶପଥ କଲି—"ପିତାଙ୍କ ପ୍ରତି ବିଶ୍ୱାସ ଭଙ୍ଗ କରିବି ନାହିଁ"—କାରଣ, ମୋର ସମ୍ରାଟ ପିତା ଆତଙ୍କିତ ହୋଇ ପଡ଼ିଥିଲେ । ଆଜି, ଏପରି କି ମୋ ପରି ହତଭାଗିମାନଙ୍କୁ ମଧ୍ୟ ସେ ଭୟ କରୁଥିଲେ । ତାଙ୍କର ଦୁଃସାଧ୍ୟ ବ୍ୟାଧିର ସମ୍ବାଦ ପ୍ରଚାରିତ ହେଲେ ସମଗ୍ର ରାଜ୍ୟରେ ଯେ କି ଝଡ଼ ଉଠିବ, ତାହା ସେ ବେଶ୍ ଜାଣିଥିଲେ । ସେ କହିଲେ, ମୋ କରତଳ ଚୁମ୍ବନ କରି ଦେଖ, ସେଥିରେ ଆତଫଳର ସୁଗନ୍ଧ ଅଛି କି ? ମୋ ମାଆଙ୍କୁ ଜଣେ ସନ୍ନ୍ୟାସୀ ଦୁଇଟି ଅକାଳପକ୍ୱ ଆତଫଳ ଉପହାର ଦେଇଥିଲେ—ସେ କଥା ସମ୍ରାଟ ଭୁଲି ନ ଥିଲେ । ସନ୍ନ୍ୟାସୀ ଭବିଷ୍ୟତ ବାଣୀ କହିଥିଲେ—"ହେ ପୃଥିବୀର ସମ୍ରାଟ୍ ! ଯେଉଁଦିନ ତୁମ ହାତରୁ ଏ ଆତ ଫଳର ଗନ୍ଧ ଲିଭିଯିବ, ସେ ଦିନ ଜାଣିବ, ତୁମର ଜୀବନଶକ୍ତି ନିଃଶେଷ ହୋଇ ଆସୁଛି ।" ତା'ପରେ ପିତା ପ୍ରଶ୍ନ କରିଥିଲେ,—ମୋର କୌଣସି ପୁତ୍ର ମୋ ବିରୁଦ୍ଧରେ ବିଦ୍ରୋହ କରି ସାମ୍ରାଜ୍ୟ ଧ୍ୱଂସ କରିବ କି ? ସନ୍ନ୍ୟାସୀ ଉତ୍ତର ଦେଇଥିଲେ, "ହଁ, ଯେ ସର୍ବାପେକ୍ଷା ଗୌରବର୍ଣ୍ଣ ।" ସେ ଥିଲେ ଆଉରଙ୍ଗଜେବ । ଯଦିଓ ସେତେବେଳେ ତାଙ୍କର ବୟସ ଥିଲା ଦୁଇବର୍ଷ, ତଥାପି ସେଇଦିନୁ ସମ୍ରାଟ୍ ତାଙ୍କ ତୃତୀୟ ପୁତ୍ରକୁ ବିଦ୍ୱେଷ ଦୃଷ୍ଟିରେ ଦେଖୁଥିଲେ । ଆଉରଙ୍ଗଜେବଙ୍କୁ ସେ କହୁଥିଲେ, "ଶ୍ୱେତସର୍ପ" ।

ବ୍ୟାଧିର ପ୍ରଥମ ଦିନରୁ ରାଜପ୍ରାସାଦକୁ ତିରିଶି ହଜାର ପ୍ରହରୀଙ୍କ ଦ୍ୱାରା ପରିବେଷ୍ଟିତ କରାଯାଇଥିଲା । ସେ ପ୍ରହରୀମାନେ ଥିଲେ ରାଜପୁତ । କାରଣ କେବଳ ରାଜପୁତବାହିନୀ ଉପରେ ସମ୍ରାଟଙ୍କର ବିଶ୍ୱାସ ଥିଲା । ଏକମାତ୍ର ଶାହ ବୁଲନ୍ଦ-ଇକ୍-ବାଲ୍ ଦାରା ସାମାନ୍ୟ ଅନୁଚରଙ୍କ ସହିତ ଦିନରେ ଦୁଇଥର ରାଜପ୍ରାସାଦରେ ପ୍ରବେଶ କରିବାର ଅନୁମତି ପାଇଥିଲେ । ପ୍ରତି ମୁହୂର୍ତ୍ତରେ ପିତାଙ୍କ ମୃତ୍ୟୁ ଆସନ୍ନ ଜଣା ଯାଉଥିଲା । ପିତାଙ୍କ ବ୍ୟାଧିର ସମ୍ବାଦ ପ୍ରକାଶ କରିବାକୁ ଦାରା ବାରଣ କରିଥିଲେ । ପରିଣାମରେ ଶୂନ୍ୟରେ କ୍ଷିପ୍ର ବାଜ ପରି, ସମ୍ରାଟ୍ଙ୍କ ମୃତ୍ୟୁ ସମ୍ବାଦ ସର୍ବତ୍ର ପ୍ରଚାରିତ ହୋଇଗଲା । ରଣବାଦ୍ୟର ଶବ୍ଦରେ ଯୁଦ୍ଧର ଅଶ୍ୱ ଚଞ୍ଚଳ ହୋଇ ଉଠିବା ପରି ସଂଗ୍ରାମ ପାଇଁ ଯୋଦ୍ଧାଗଣ ତରବାରି ଶାଣିତ କରିବାକୁ ଲାଗିଲେ । ଅମୀରମାନେ ପ୍ରସ୍ତୁତ ହୋଇପଡ଼ିଲେ । ଚୋର ତସ୍କର ସମସ୍ତେ ନିଜ ସ୍ୱାର୍ଥ ସନ୍ଧାନ ପାଇଁ ଆଗେଇ ଆସିଲେ । ତିନିଦିନ ତିନିରାତି ମୁଁ

ଦୁଶ୍ଚିନ୍ତାରେ ମୂକ ପରି ରହିଲି । ସମସ୍ତ ଝରଣୀର ଦ୍ୱାର ରୁଦ୍ଧ, ଆମୋଦ ଉତ୍ସବ ସ୍ତବ୍ଧ—ଗୋପନରେ ସମ୍ବାଦ ଚଳାଚଳ ହେବାକୁ ଲଗିଲା ।

ଗୋପନରେ ସମ୍ବାଦ ପଠାଇବାରେ ମୋ ଭଉଣୀ ରୋଶେନାରା ପାରଦର୍ଶିନୀ,—ଆଉରଙ୍ଗଜେବ ଗୋପନ ସମ୍ବାଦ ଗ୍ରହଣ କରୁଥିବାରେ ମଧ୍ୟ ଧୁରନ୍ଧର । ମୋର ଅନ୍ୟ ଭଉଣୀ ଦୁହେଁ ମଧ୍ୟ ଭାଇମାନଙ୍କ ନିକଟକୁ ଗୋପନରେ ସମ୍ବାଦ ପଠାଇବାକୁ ଲଗିଲେ ।

ଅଗ୍ନିର କଣିକା ଭସ୍ମରେ ଆଚ୍ଛାଦିତ ଥିଲା । ଭ୍ରାତୃ ବିଦ୍ୱେଷର ପ୍ରବଳ ଅଗ୍ନିଶିଖା କ୍ରମେ ପ୍ରଜ୍ୱଳିତ ହୋଇ ଉଠିଲା । ତାଜ୍ ବେଗମ୍‌ଙ୍କର ତିନିପୁତ୍ର ଯୁଦ୍ଧର ଡାକ ଦେଲେ । "ଇୟାତକ୍ତ-ଇୟା-ତାବୁତ୍—ହୁଏତ ସିଂହାସନ,ନ ହେଲେ ମୃତ୍ୟୁ ।" କିନ୍ତୁ ଯୁବରାଜ ଦାରା ସିଂହାସନ ସମ୍ମୁଖରେ ଉପସ୍ଥିତ । ସମସ୍ତେ ତାଙ୍କ ବଶ୍ୟତା ସ୍ୱୀକାର କଲେ ।

ପ୍ରଥମେ ଶୁଜା ବଙ୍ଗଳାରୁ ଅଭିଯାନ ଆରମ୍ଭ କଲେ । ଦାରାଙ୍କ ସୁଦକ୍ଷ ସୈନ୍ୟ ଦଳର ଏକାଂଶ ଶୁଜାଙ୍କ ସଙ୍ଗେ ଯୋଗଦେଲେ । ସେ ପ୍ରଚାର କଲେ, ସମ୍ରାଟ ଶାହାଜାହାନଙ୍କୁ ଦାରା ବିଷ ପ୍ରୟୋଗ କରି ହତ୍ୟା କରିଛନ୍ତି । କିନ୍ତୁ ଦାରାଙ୍କ ବୀରପୁତ୍ର ସୁଲେମାନ୍ ସୁକୋ ଶୁଜାଙ୍କୁ ପରାସ୍ତ କଲେ ।

ଅଳ୍ପଦିନ ପରେ ପିତା ରୋଗମୁକ୍ତ ହେଲେ । ସମସ୍ତ ଦରବାର ଦିଲ୍ଲୀରୁ ଆଗ୍ରାକୁ ଉଠିଗଲା । ସମଗ୍ର ଦେଶ ଯେପରି ଜାଣେ ଯେ, ସମ୍ରାଟ ଜୀବିତ । ମୁରାଦ୍ ଗୁଜୁରାଟରୁ ସୈନ୍ୟ ସହ ଅଗ୍ରସର ହେଲେ । ସୁଚତୁର, ସୁକୌଶଳୀ ଆଉରଙ୍ଗଜେବ୍ କିନ୍ତୁ ମୁରାଦଙ୍କୁ ତାଙ୍କ ପକ୍ଷକୁ ଟାଣିନେଲେ । ଆଉରଙ୍ଗଜେବ୍ ଜାଣିଥିଲେ, ମୁରାଦ୍ ବୀର, ସାହସୀ ଓ ଯୋଦ୍ଧା । ସମବେତ ଶକ୍ତି ବଳରେ ସେମାନେ ଦାରାଙ୍କୁ ପରାଜିତ କରିବେ ବୋଲି ସ୍ଥିର କଲେ । ଦାରା ଇସଲାମ୍ ବିରୁଦ୍ଧ ବୋଲି ସେମାନେ ତାଙ୍କୁ ଘୃଣା କରୁଥିଲେ । ଦାରାଙ୍କୁ ସେମାନେ କାଫେର୍ ଆଖ୍ୟା ଦେଇଥିଲେ ।

ମୁଁ ଦେଖିଲି ସମୁଦ୍ରର ଢେଉପରି ବଙ୍ଗଳାରୁ କୃଷ୍ଣସର୍ପର ଦଳ ଛୁଟି ଆସୁଛି । ସମ୍ରାଟ୍‌ଙ୍କ ଜ୍ୟୋତିଷଗଣ ଭବିଷ୍ୟତବାଣୀ କଲେ—ଘୋର ଅମଙ୍ଗଳ ଘଟିଯିବ । ସମ୍ରାଟ୍ ନିରୋଗ ହେବେ । ମୋର କିନ୍ତୁ ମନେ ହେଲା,

କୃଷ୍ଣସର୍ପର ମସ୍ତକରେ ଯେଉଁ ଶ୍ୱେତସର୍ପଟି ବସିଥିଲା, ସେ ସ୍ୱୟଂ ଆଉରଙ୍ଗଜେବ୍ । ଆଜି ସେଇ ସର୍ପ ଫଣା ଉତ୍ତୋଳନ କରିଛି,—ମନ୍ଥର ଗତିରେ ତୈମୁର ବଂଶର ଉପର ଦେଇ ପଥ ଅତିକ୍ରମ କରୁଛି । ସେ କୁଆଡ଼େ ଯିବ ? ଆକାଶରେ ନକ୍ଷତ୍ରର ଗତି ଅନୁସରଣ କଲେ ଏ ପ୍ରଶ୍ନର ଉତ୍ତର ମିଳିବ ନାହିଁ ।

ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନ ପଥରେ, ବଲୋଚ୍‌ପୁରରେ, ଆମେ ବିଦ୍ରୋହର ସମ୍ବାଦ ପାଇଲୁ । ସେତେବେଳେ ସମ୍ରାଟ ରାଜଧାନୀକୁ ଫେରୁଥିଲେ । ସମସ୍ତ ସୈନ୍ୟ ସାମନ୍ତ ସହ ଆମେ ଫେରୁଥିଲୁ ।

ବର୍ତ୍ତମାନ ହତଭାଗ୍ୟ ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନ ଏକ ଗୁରୁତ୍ୱର ପରି ମନେ ହେଉଛି । 'ବଲୋଚ୍‌ପୁର' ଏଇ ନାମଟି ଶୁଣିବାପରେ ମୋ ହୃଦୟକୁ ବାନ୍ଧି କଲା । ଠିକ୍ ଏଇଠାରେ, ଆଜକୁ ତିରିଶି ବର୍ଷ ପୂର୍ବେ, ରାଜକୁମାର ଶାହଜାହାନ୍ ତାଙ୍କ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ ।

ସୂର୍ଯ୍ୟର କ୍ଷୀଣ କିରଣରେ ଆମେ ବୃକ୍ଷଶ୍ରେଣୀର ଆଚ୍ଛାଦନ ମଧ୍ୟଦେଇ ଚାଲିଛୁ । ଏକ ବିରାଟ ଶକଟର ଅଭ୍ୟନ୍ତରରେ ପିତାଙ୍କ ପାର୍ଶ୍ୱରେ ମୁଁ ବସିଛି । ଏଇ ଶକଟଯାନଟି ଜାହାଙ୍ଗୀର ବାଦ୍‌ଶାହ ଯୁରୋପରୁ ଉପହାର ସ୍ୱରୂପ ପାଇଥିଲେ । ନୀରବରେ କୋଶ ପରେ କୋଶ ଅତିକ୍ରମ କରୁଛୁ । ଶାହଜାହାନାବାଦ୍ ତ୍ୟାଗ କଲାପରେ ମନେହେଉଛି, ଆମେ ଯେପରି ପରାଜିତ ହୋଇ ଫେରିଆସୁଛୁ ।

ମୁଁ ମୋ ପ୍ରାସାଦକୁ ଫେରିବାପାଇଁ ବିଶେଷ ଉଦ୍‌ବିଗ୍ନ ହୋଇ ପଡ଼ିଥିଲି । ଏହା ଯେପରି ଯୌବନକୁ ଫେରି ଯିବା ପରି କାହିଁକି କେଜାଣି ମୋତେ ଲାଗୁଥିଲା । ଦୁଲେର ପୁଣି ରାଜଧାନୀକୁ ଫେରି ଆସିଥିବେ ତାଙ୍କ ପୁରାତନ ପଦରେ ଯୋଗ ଦେବାପାଇଁ । ଆଉରଙ୍ଗଜେବ୍‌ଙ୍କ ଶିବିରରୁ ତାଙ୍କୁ ଆହ୍ୱାନ କରାଯାଇଛି । ଏଇ କେତେ ବର୍ଷର ଘୃଣା, ହତାଶା ଓ ଦ୍ୱନ୍ଦ୍ୱ ଭିତର ବ୍ୟବଧାନରେ, ଚିରହେଳିତ ବିଶୀର୍ଣ୍ଣ ସିଲ୍କ ବନ ଶାଖାର ମଧ୍ୟଦେଇ ବିଚ୍ଛୁରିତ ଅସ୍ତ ସୂର୍ଯ୍ୟର କିରଣ, ମୋତେ ଏକାନ୍ତ ଅଭିଭୂତ କରି ଦେଉଥିଲା । ମନେହେଲା, ଯାହା ଯେପରି ଥିଲା ସେହିପରି ଅଛି । କେଉଁଠି କିଛି ବଦଳି ନାହିଁ ।

ମଧ୍ୟପଥରେ ଗୋଟିଏ ମର୍ମର ନିର୍ମିତ କୂପ ପାର୍ଶ୍ୱରେ ଆମ ଦଳ ବିଶ୍ରାମ ନେଲେ । ଆମର ଗୃହଗୋଟି ଶ୍ୱେତଅଶ୍ୱକୁ ସ୍ନାନ କରାଇ ଦିଆଗଲା । ମୁଁ ସମରକନ୍ଦର ତରଭୁଜ ଆହାର କଲି । ସୁରାପାତ୍ରରୁ ସୁରାପାନ କଲି । ତାହାପରେ ଖୁବ୍ ଦ୍ରୁତ ଗତିରେ ଶକଟ ଚଳାଇବା ପାଇଁ ପିତା ଆଦେଶ ଦେଲେ ।

ପିତା ମୋ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ଆଜ ଯେପରି ପ୍ରଥମ ଥର ପାଇଁ ଅନୁଭବ କଲି, ପିତା କେତେ ବୃଦ୍ଧ ହୋଇ ପଡ଼ିଛନ୍ତି । ସ୍ୱର୍ଣ୍ଣ ଗୋଲାପ ଖଚିତ ତାଙ୍କର ରାଜଭୂଷଣ ମଧ୍ୟରେ ସେ ଯେପରି ସଂକୁଚିତ ହୋଇ ପଡ଼ିଛନ୍ତି ! ତାଙ୍କ ପରିଚ୍ଛଦ ଉପରେ ମୈଦ୍ୟଧାରା ବହି ପଡ଼ିଥିଲା । ତାଙ୍କ ଚେହେରାରେ ପ୍ରଥମ ଜୀବନର ପୌରୁଷର ଚିହ୍ନବର୍ଣ୍ଣ ନ ଥିଲା । ବିଶ୍ୱ ବିଜୟୀ ଦୁଇ ଚକ୍ଷୁର ଜ୍ୟୋତି ମଳିନ ହୋଇ ଆସୁଥିଲା । ଅନୁଭବ କଲି, ଏକ ପ୍ରଚଣ୍ଡ ଅଗ୍ନି ନିର୍ବାପିତ ହୋଇଯାଇଛି ।

ସମ୍ରାଟ ମୀର୍‌ଜୁମ୍‌ଲାଙ୍କ ବିଷୟ ଅବତାରଣ କଲେ । ତାଙ୍କ କଣ୍ଠସ୍ୱର ବାଷ୍ପାକୁଳ । ଏଇ ପାରସ୍ୟ ସନ୍ତାନଙ୍କୁ ଦିନେ ସମ୍ରାଟ ରାଜ ସମ୍ମାନରେ ଭୂଷିତ କରି ମୁଦ୍ଦାଜମ୍ ଖାଁ (୧) ଉପାଧିରେ ମଣ୍ଡିତ କରି ନ ଥିଲେ କି ? ତାଙ୍କର ଆଶା ଥିଲା, ମୁଦ୍ଦାଜମ ହିନ୍ଦୁସ୍ଥାନ ପକ୍ଷରୁ କାନ୍ଦାହାର ଜୟ କରିବେ । ଆଜ କିନ୍ତୁ ସେଇ ମୀରଜୁମଲା ସମ୍ରାଟଙ୍କୁ ପ୍ରତାରଣା କରିଛି । ସମ୍ରାଟଙ୍କୁ ସାନ୍ତ୍ୱନା ଦେବା ପାଇଁ ଆଉ କିଛି ନ ଥିଲା । ଆମେ ଦିଲ୍ଲୀର ଯେତେ ନିକଟତର ହେଉଛୁ, ମନ ସେତେ ଭାରାକ୍ରାନ୍ତ ହୋଇଉଠୁଛି ।

ରାଜପଥରେ ମୀର୍‌ଜୁମ୍‌ଲା ଦିନେ ଗୋଲ୍‌କୁଣ୍ଡାର ପାଦୁକା ବିକ୍ରୟ କରୁଥିଲା । କିନ୍ତୁ ପରେ ସେ ଅର୍ଜନ କଲା ଅଜସ୍ର ଅର୍ଥ ଓ ଖ୍ୟାତି । ଗୋଲକୁଣ୍ଡାର ଉଜିର୍ ପଦ ଲାଭ କଲା—ଏପରି କି ଆଉରଙ୍ଗ-ଜେବ୍‌ଙ୍କ ବନ୍ଧୁତ୍ୱର ଗୌରବ ମଧ୍ୟ । ଶେଷ ପର୍ଯ୍ୟନ୍ତ ମୀରଜୁମ୍‌ଲା ଗୋଲ-କୁଣ୍ଡାର ରାଜମହିଷୀଙ୍କୁ ବିପଥଗାମିନୀ କଲା । ସୁଲତାନ୍ ତାକୁ କାରାଗାରରେ ବନ୍ଦୀ କରିବାକୁ ଉଦ୍ୟମ କଲେ । ମୀରଜୁମଲା କିନ୍ତୁ ପ୍ରାର୍ଥନା କଲେ, ଆଉରଙ୍ଗଜେବଙ୍କ ସାହାଯ୍ୟ । ସାହାଯ୍ୟ କରିବାକୁ ଆସି ଆଉରଙ୍ଗଜେବ

(୧) 'ମୁଘ୍‌ୱାଜ୍ଜମ୍' ଅର୍ଥାତ୍ ସର୍ବୋତ୍ତମ ସମ୍ମାନ ପାତ୍ର ।

ରାଜଧାନୀକୁ ଲୁଣ୍ଠନ କଲେ । ପ୍ରାଚୀନ ରାଜବଂଶର ରତ୍ନ ଅପହରଣ କଲେ । ଏଇ ଘଟଣା ପରେ ଆଉରଙ୍ଗଜେବଙ୍କ ଶକ୍ତିର ଭିତ୍ତିସ୍ଥାପନ ହୋଇଥିଲା । ମୀରଜୁମ୍‌ଲା ସମ୍ପର୍କରେ ମୁଁ ବାରମ୍ବାର ସମ୍ରାଟଙ୍କୁ ସତର୍କ କରିଦେଇଥିଲି । ମୀର୍‌ଜୁମ୍‌ଲା ଉପରେ ମୋର ଭୀଷଣ କ୍ରୋଧ ହୋଇଥିଲା । ଦିନ ଥିଲା, ଯେତେବେଳେ ସମ୍ରାଟ ଶାହଜାହାନ୍ ମୋ ପରାମର୍ଶ ଶୁଣୁଥିଲେ — ଯେପରି ଶୁଣୁଥିଲେ ମୋ ମାଆଙ୍କ କଥା । କିନ୍ତୁ କ୍ରମଶଃ ସେ ମୋ'ଠାରୁ ଦୂରେଇ ଯାଇଥିଲେ, — ଦୂରେଇ ଯାଇଥିଲେ ମାଆଙ୍କ ଠାରୁ ।

ମୁଁ ବାଦ୍‌ଶାହଙ୍କୁ ପ୍ରଶ୍ନ କଲି, "ଜାହାଁପନା, ଆପଣଙ୍କ ମନେଥିବ, ମୁଁ ଓ ଦାରା ଆପଣଙ୍କୁ ଅନୁରୋଧ କରିଥିଲୁ, ଆଉରଙ୍ଗଜେବଙ୍କୁ ଗୋଲ-କୁଣ୍ଡାରୁ ଫେରାଇ ଆଣନ୍ତୁ; ଯେପରି ସେ ଶକ୍ତିଶାଳୀ ହୋଇ ନ ଉଠନ୍ତି । ଆପଣଙ୍କ ମନେଥିବ, କେତେ ବର୍ଷତଳେ ମୀରଜୁମ୍‌ଲା ଦିଲ୍ଲୀରେ ଆପଣଙ୍କୁ ଏକ ହୀରକଖଣ୍ଡ ଉପହାର ଦେଇ କହିଥିଲା, — କାନ୍ଦାହାରର ରାଜକୋଷରେ ଏଇ ହୀରକଖଣ୍ଡପରି ହୀରକ ନାହିଁ । ଯଦି ମିର୍‌ଜୁମ୍‌ଲାକୁ ବାଦ୍‌ଶାହ ଦଳେ ସୈନ୍ୟ ସାହାଯ୍ୟ ଦିଅନ୍ତି, ତେବେ ସେ ବିଜାପୁର, ଗୋଲକୁଣ୍ଡା, ସିଂହଳ ଓ କରମଣ୍ଡଳ ଜୟକରି ବାଦ୍‌ଶାହଙ୍କୁ ଅସଂଖ୍ୟ ହୀରକ ଉପହାର ଦେଇପାରିବେ । ତାହାପରେ ମୀର୍‌ଜୁମ୍‌ଲା ସମ୍ରାଟଙ୍କୁ ଏକମୁଷ୍ଟି ମୂଲ୍ୟବାନ ପ୍ରସ୍ତର ଉପହାର ଦେଇଥିଲା । ସମ୍ରାଟ୍ ମୀର୍‌ଜୁମ୍‌ଲା ଅଧୀନରେ ସୈନ୍ୟ ନିଯୁକ୍ତ କଲେ । ମୁଁ ଓ ଦାରା ବହୁବାର ସେପରି କରିବାକୁ ବାରଣ କରୁଥିଲୁ, ଆଜ ସେଇ ସୈନ୍ୟମାନଙ୍କୁ ନେଇ ମୀରଜୁମ୍‌ଲା ଆଉରଙ୍ଗଜେବଙ୍କ ପାର୍ଶ୍ୱରେ ଠିଆ ହୋଇଛି ! ଆପଣଙ୍କର ଏସବୁ ମନେ ଅଛି କି ?"

ସମ୍ରାଟ ଟିକିଏ ଜାଗ୍ରତ ହୋଇ ବସିଲେ । ମନେହେଲା, ଯେପରି ସେ ଅସଂଖ୍ୟ ରାଜମୁକୁଟର ଆଲୋକରେ ମଣ୍ଡିତ ହୋଇ ଦିଲ୍ଲୀର ସିଂହାସନରେ ବସିଛନ୍ତି — ସେ ଆଲୋକର ଦୀପ୍ତି ତୈମୁରଙ୍କ ରାଜ୍ୟ ଉପରେ ପ୍ରସାରିତ ହୋଇଛି । ମୋତେ ଜଣାଗଲା, ସମ୍ରାଟ ତାଙ୍କର ରାଜ-ଦଣ୍ଡ ନେଇ ସମଗ୍ର ସାମ୍ରାଜ୍ୟ ଶାସନ କରୁଛନ୍ତି । ସମ୍ରାଟ ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇ ବସିଲେ । ମୋ ପ୍ରଶ୍ନର ଉତ୍ତର ଦେଲେ ନାହିଁ । ସମ୍ରାଟଙ୍କ ଉପରେ ମୋ ଅଧିକାର ପୁଣି ଫେରାଇ ଆଣିବି ବୋଲି ଭାବିଲି, କହିଲି, "ଫକୀର୍ ଆଉରଙ୍ଗଜେବ୍ ବାହାରର ଗୃହକର୍ମରେ ଭୁଲିଯିବା ଲୋକ

ନୁହେଁ । ସେ ଯେଉଁ ଉପାୟରେ ତାଙ୍କ ଦରବେଶ୍ ବନ୍ଧୁମାନଙ୍କଠାରୁ ଏକଲକ୍ଷ ଟଙ୍କା ପ୍ରତାରଣା କରି ନେଲେ, ତାହା ଆପଣଙ୍କର ମନେଥିବ । ଦିନେ ଆଉରଙ୍ଗଜେବ କହିଲେ, ସେମାନଙ୍କଠାରୁ କେତୋଟି ମୁକ୍ତା କିଣିବେ । କିନ୍ତୁ ସେମାନଙ୍କ ଓସ୍ତାଦ୍ ଶେଖ୍ ମୀର୍ ବକ୍ସ୍ କହିଥିଲେ, —'ଏଇ ମୁକ୍ତାଠାରୁ ଆହୁରି ବୃହତ୍ତର ମୁକ୍ତା ହିନ୍ଦୁସ୍ଥାନରେ ଅଛି । ଯଦି ସେ ମୁକ୍ତା ପାଇବାର ଇଚ୍ଛା ଥାଏ, ତେବେ ଏଇ ଅର୍ଥ ନେଇ ସୈନ୍ୟ ସଂଗ୍ରହ କର । ତା'ହେଲେ ସେ ମୁକ୍ତା ଖଣ୍ଡ ତୁମ ହାତକୁ ଆସିବ ।' ଆଉରଙ୍ଗଜେବ୍ ତାହାହିଁ କରିଛନ୍ତି । ସେଇ ସୈନ୍ୟମାନଙ୍କ ଦ୍ୱାରା ସେ ମୋର ସୁରଟ ବନ୍ଦର ଅଧିକାର କରିନେଇଛନ୍ତି । ଆଗ୍ରାରେ ଆମର ପୁଣି ମୁକ୍ତାର ପ୍ରୟୋଜନ ନାହିଁ — ଆମର ପ୍ରୟୋଜନ ଅର୍ଥ, ସୈନ୍ୟ, ଅଶ୍ୱ ।"

ମୁଁ ନୀରବ ହେଲି, ମୋର ଭୟ ହେଲା, ହୁଏତ ମୋ ସ୍ୱର ଆବେଗକମ୍ପିତ । ପିତା ମୋ ନିକଟକୁ ଆସିଲେ । ମନେହେଲା, ଯେପରି ତାଙ୍କର ଶରୀର — ଯଷ୍ଟି କୁବ୍ଜ ହୋଇପଡ଼ିଛି ! ତାଙ୍କର ଚକ୍ଷୁରେ ସନ୍ତାନ ବାତ୍ସଲ୍ୟ ଫୁଟି ଉଠିଛି । ଯେପରି ଫୁଟି ଉଠିଥିଲା ମୋ ଶୈଶବରେ — ଯେତେବେଳେ କ୍ରୀଡ଼ାଚ୍ଛଳରେ ତାଙ୍କ କୋଳକୁ ମୁଁ ଲମ୍ଫ ଦେଉଥିଲି ।

ପିତା କହିଲେ, "ଜାହାନାରା, ତୁମର କ'ଣ ମନେ ନାହିଁ, କିଏ ମୋତେ ଅନୁରୋଧ କରିଥିଲା, ଆଉରଙ୍ଗଜେବଙ୍କୁ କ୍ଷମା କରିବାକୁ, ତାକୁ ଫେରାଇ ଆଣିବାକୁ ଗୁଜୁରାଟରୁ ଦାକ୍ଷିଣାତ୍ୟକୁ ? ସେଇ ଦାକ୍ଷିଣାତ୍ୟରେ ହିଁ ଆଉରଙ୍ଗଜେବ୍ ସୈନ୍ୟ ସମାବେଶ କରିଛି ।" ମୋ କପାଳରେ ପିତା ତାଙ୍କର ଉଷ୍ଣ ପାପୁଲି ବୁଲାଇ ଆଣିଲେ । ପିତା କହି ଚାଲିଲେ, "ତୁମର ମନେଅଛି ? କେତେ ଥର ତୁମକୁ ସାବଧାନ କରାଇ ଦେଇଥିଲି, ତାକୁ ବେଶୀ ବିଶ୍ୱାସ କରନାହିଁ । ଦୂରରୁ ସର୍ପ ବେଶ ସୁନ୍ଦର । କିନ୍ତୁ ସେଇ ସୌନ୍ଦର୍ଯ୍ୟର ଅଭ୍ୟନ୍ତରରେ ବିଷ ଲୁକ୍କାୟିତ ଥାଏ । ଜନ୍ମର ଛଅଦିନ ପରେ ମୁଁ ଦାରାର ଲଲାଟରେ ଦୁର୍ଭାଗ୍ୟର ଚିହ୍ନ ଦେଖିଥିଲି — କିନ୍ତୁ ଆଉରଙ୍ଗଜେବର ଲଲାଟରେ ଥିଲା ବିଜୟଟୀକା । ଅଦୃଷ୍ଟର ଆଭରଣ ଯଦି କଳା ସୂତାରେ ବୁଣା ହୋଇଥାଏ, ପୃଥିବୀର ସମସ୍ତ ଜଳଧିର ତାକୁ ଧଳା କରି ପାରିବ ନାହିଁ !" ମଥା ନୁଆଁଇ ପିତାଙ୍କ କର ଚୁମ୍ବନ କଲି । ପିତାଙ୍କ ଅଭିଯୋଗ ହୁଏତ ଠିକ୍ । ମୁଁ ଓ ଦାରା ଆଉରଙ୍ଗଜେବ ସମ୍ବ-

ହାଗ ବହୁବାର ବିଭ୍ରାନ୍ତ ହୋଇଛୁ । ପଥରେ ସେ କି ଘୃଷଣ ପ୍ରତାରଣା ନିହିତ ଥିଲା, ବୁଝିପାରି ନାହୁଁ । ବହୁବାର ଆଉରଙ୍ଗଜେବଙ୍କୁ ସମର୍ଥନ କରି ପିତାଙ୍କ ନିକଟରେ କ୍ଷମା ଭିକ୍ଷା କରିଛୁ !

ଆମେ ବାକ୍‌ଶକ୍ତି ହରାଇ ବସିଲୁ । ମନେହେଲା, ଯେପରି ସେଇ ଅପୂର୍ବ ଗୌରବର୍ଣ୍ଣ, କୃଷ୍ଣଚକ୍ଷୁ ରାଜପୁତ୍ର ଆଉରଙ୍ଗଜେବ ଆମରି ଅଭିମୁଖେ ଆଗେଇ ଆସୁଛନ୍ତି—ଯେପରି ବ୍ୟାଘ୍ର ଲୋଲୁପ ଦୃଷ୍ଟିରେ ଶିକାର ଆଡ଼କୁ ଆସେ ! ତୈମୁର ବଂଶର ଶେଷ ସନ୍ତାନକୁ ଆକ୍ରମଣ କରିବାକୁ ସେ କଣ ଆଗେଇ ଆସିଛନ୍ତି ? କିନ୍ତୁ ଏ ଥର ଁ ରାଜଦଣ୍ଡ ଶାହାଜାହାନଙ୍କ ହସ୍ତଚ୍ୟୁତ ହୋଇନାହିଁ ।

ଆମେ ଆଗ୍ରାର ଅଦୂରବର୍ତ୍ତୀ ସେକେନ୍ଦ୍ରାରେ ପ୍ରବେଶ କରୁଛୁ । ପିତା ଓ ମୁଁ ଆମେ ଦୁହେଁ ସେଇ ବିରାଟ ପ୍ରାଚୀରର ସୁବିଶାଳ ତୋରଣ ଅତିକ୍ରମ କଲୁ । ସେଠାରେ ଆକବର ତାଙ୍କ ସମାଧିରେ ବିଶ୍ରାମ କରୁଛନ୍ତି । ଏ ସମାଧିର ପବିତ୍ରତା ଆଜି ପରି ଅନ୍ୟ କେଉଁ ଦିନ ମୋତେ ଅଭିଭୂତ କରି ନ ଥିଲା । ରକ୍ତ ପ୍ରସ୍ତର-ନିର୍ମିତ ଉତ୍ତୁଙ୍ଗଶୀର୍ଷ ବିରାଟ ପ୍ରାସାଦ ସମ୍ମୁଖରେ ନତଜାନୁ ହୋଇ ଆମେ ଶ୍ରଦ୍ଧାଜ୍ଞାପନ କଲୁ । ମୁଁ ମୋ ମସ୍ତକରେ ଭୂମି ସ୍ପର୍ଶ କରି ପ୍ରଣାମ କଲି—ତାହାହିଁ ଥିଲା, ସମ୍ରାଟ ଆକବରଙ୍କ ଅନୁଶାସନ । ତାହାପରେ ଆମେ ସମାଧିର ଚତ୍ୱରରେ ଆରୋହଣ କଲୁ । ଗୃହର ପାର୍ଶ୍ୱରେ ବିଭିନ୍ନ ଦିଗକୁ ପ୍ରସାରିତ ହୋଇଥିଲା ତୋରଣ ଶ୍ରେଣୀ, ବିଚିତ୍ର କାରୁକାର୍ଯ୍ୟ ପୂର୍ଣ୍ଣ ମର୍ମର ନିର୍ମିତ କ୍ଷୁଦ୍ର ପ୍ରାଚୀର ବେଷ୍ଟିତ ଶିଖର ।

ଏଠାରେ କୌଣସି ମଣିଷ ଅବହେଳିତ ନୁହେଁ, ଏଠାରେ କାହାର ଅତ୍ୟାଚାର ନାହିଁ ! ଏଠାରେ ମଣିଷ ଆଶ୍ୱସ୍ତିରେ ନିଶ୍ୱାସ ନିଏ । ମଣିଷର ଯେତେ ଆତ୍ମା ଈଶ୍ୱରଙ୍କ ଅଭିମୁଖେ ସେତେ ପଥ ଉନ୍ମୁକ୍ତ—ସେକେନ୍ଦ୍ରାରର ପ୍ରାସାଦରେ ଏଇ ସତ୍ୟ ମୁଁ ଉପଲବ୍ଧି କଲି ।

ସମ୍ରାଟ ଅକବରଙ୍କ ମୃତ୍ୟୁ ପରେ ଦିନ-ଇ-ଇଲାହି (୧) ସମ୍ପ୍ରଦାୟର ଲୋକ ଏଠାରେ ଆସି ମିଳିତ ହେବେ । ତାଙ୍କର କ'ଣ ଏ ଅଭିଳାଷ

(୧) ସମ୍ରାଟ ଆକବରଙ୍କ ପ୍ରବର୍ତ୍ତିତ ଧର୍ମମତ ।

ଥିଲା ? ଆକବର ତାଙ୍କର ପାଞ୍ଚମହଲା ସମାଧି ନିର୍ମାଣ କଲାବେଳେ ସମ୍ରାଟ ଅଶୋକଙ୍କ କଥା ଭାବିଥିଲେ କି ? ସମ୍ରାଟ ଅଶୋକ ସୁନ୍ଦର କାରୁକାର୍ଯ୍ୟ ମଣ୍ଡିତ ମନ୍ଦିରୋପମ ବିରାଟ ବୌଦ୍ଧମଠ ସବୁରେ ସଙ୍ଘାଶ୍ରମର ଶ୍ରମଣମାନଙ୍କୁ ଆହ୍ୱାନ କରିଥିଲେ । ସେଠାରେ ସହସ୍ର ସହସ୍ର ସଙ୍ଘ-ଭ୍ରାତା ମକ୍ଷିକା ପରି ପ୍ରକୃତିର ମଧୁଚକ୍ରରୁ ଜ୍ଞାନ ଆହରଣ କରୁଥିଲେ ।

ମୋର ସମ୍ରାଟପିତା କ୍ରମଶଃ ଚିନ୍ତାକୁଳ ହୋଇପଡ଼ିଲେ,— ତୋରଣ ପାର୍ଶ୍ୱରେ ଇତସ୍ତତଃ ପଦଚାରଣ କରିବାକୁ ଲାଗିଲେ । ସେ ତାଙ୍କର ପିତାମହଙ୍କ ସ୍ନେହ ସ୍ମରଣ କରୁଥିଲେ । ହୁଏତ, ସମ୍ରାଟ ଆକବରଙ୍କ ମୃତ୍ୟୁ ଶଯ୍ୟା ପାର୍ଶ୍ୱରେ ବିଦ୍ରୋହୀ ପୁତ୍ର ସେଲିମ ଉପସ୍ଥିତ ହେବାକୁ ସାହସ କରି ନ ଥିଲେ । କାରଣ ପିତାଙ୍କ ବିରୁଦ୍ଧରେ ସେ ଷଡ଼ଯନ୍ତ୍ର କରିଥିଲେ । ସେତିକିବେଳେ ଖୁର୍‌ରମ ପ୍ରତିଜ୍ଞା କରିଥିଲେ, ସମ୍ରାଟ ଆକବର ଯେତେ ଦିନ ଜୀବିତ ଥିବେ, ସେତେଦିନ ଯାଏଁ ସେ ସମ୍ରାଟଙ୍କୁ ପରିତ୍ୟାଗ କରିବେ ନାହିଁ । ସମ୍ରାଟ ଶାହାଜାହାନଙ୍କର ହୁଏତ ଆଜି ମନେ ପଡ଼ୁଛି, ଏଇ ସମାଧିରେ ଶାୟିତ ମହାପୁରୁଷଙ୍କର ସ୍ୱପ୍ନ—ସେଇ ଶିଶୁହିଁ ଭବିଷ୍ୟତରେ ଏକ ବିରାଟ ସମ୍ଭାବନା ପୂର୍ଣ୍ଣ କରିବ ।

ତାଙ୍କୁ କୌଣସି ପ୍ରଶ୍ନ କରିବାର ସାହସ ମୋର ନ ଥିଲା । ମୁଁ ତଳକୁ ଓହ୍ଲାଇଗଲି—ତଳଟି ସମ୍ପୂର୍ଣ୍ଣ ଶ୍ୱେତ ମର୍ମରରେ ଆଚ୍ଛାଦିତ । ସମ୍ରାଟ ଆକବରଙ୍କ ସମାଧି ପ୍ରକୋଷ୍ଠଟି ପ୍ରସ୍ତର ନିର୍ମିତ ଜାଲିର ଆବେଷ୍ଟନୀରେ ଆବଦ୍ଧ, ଦୂରରୁ ବହୁ ଗବାକ୍ଷର ସମାବେଶ ପରି ମନେ ହୁଏ । ଗବାକ୍ଷ ମଧ୍ୟଦେଇ ଉଦ୍ୟାନର ସବୁଜ ତୃଣଗୁଚ୍ଛ ଦୃଷ୍ଟିରେ ପଡ଼େ । ସ୍ୱର୍ଣ୍ଣମଣ୍ଡିତ ସମାଧିର ଗମ୍ବୁଜଟି ଆକାଶ ପରି ଗୋଲାକୃତି,—ଶ୍ୱେତ ମର୍ମର ପୃଷ୍ଠ, କୃଷ୍ଣମଣି ରେଖାଙ୍କିତ ଶବାଧାରଟି ଦିବସରେ ସୂର୍ଯ୍ୟ କିରଣ ଓ ରଜନୀରେ ଚନ୍ଦ୍ରାଲୋକ ସ୍ପର୍ଶରେ ଅପୂର୍ବ ଦେଖାଯାଏ । ନିମ୍ନରେ ଏକ ଗହ୍ୱର ମଧ୍ୟରେ ଶୋଇଛନ୍ତି ହିନ୍ଦୁସ୍ଥାନର ସର୍ବଶେଷ ବୀର, ଶୁଭ୍ର ମର୍ମର ଶବାଧାରଟି ଭିତରେ । ତାଙ୍କର ମୁଖମଣ୍ଡଳ ଉଦୀୟମାନ ସୂର୍ଯ୍ୟ ଆଡ଼କୁ ରଖାଯାଇଥିଲା । ପ୍ରାଚୀର ଗାତ୍ରର ଛିଦ୍ର ଦେଇ ସ୍ଫୁରିତ ସୂର୍ଯ୍ୟାଲୋକ ତାଙ୍କୁ ଉଦ୍‌ଭାସିତ କରୁଥିଲା ।

ସେଇ ଶୁଭ୍ର ଶବାଧାର ସମ୍ମୁଖରେ ନତଜାନୁ ହୋଇ ମୁଁ ପ୍ରଣାମ କଲି । ମର୍ମର ଗୋଲାପ ଉପରେ ମୋ ଚକ୍ଷୁର ଉତ୍ତପ୍ତ ଅଶ୍ରୁ ଝରିପଡ଼ିଲା ।

ପ୍ରାଚୀନ ଋଷିମାନଙ୍କ ପରି ମୋର ଯଦି ଅଲୌକିକ ଶକ୍ତି ଥାନ୍ତା, ମୋ ପ୍ରାର୍ଥନା ବଳରେ ଯଦି ସେଇ ମହାପୁରୁଷ ପୁନର୍ଜୀବନ ଲାଭ କରିପାରନ୍ତେ, ତେବେ ସେ ମୋର ଏଇ ଭାରତବର୍ଷକୁ ଅନ୍ଧକାରରୁ ଉଦ୍ଧାର କରି ପାରନ୍ତେ । ମୋର ମନେହେଲା,—ସେଇ ପ୍ରସ୍ତର ମର୍ମର ଭେଦ କରି ତାଙ୍କର ବକ୍ଷ କମ୍ପିତ ହେଲା ଏବଂ ପ୍ରସ୍ତର ଖଣ୍ଡ ଚୂର୍ଣ୍ଣ ହୋଇଗଲା । ସେ ଆର୍ତ୍ତନାଦ କରି ଉଠିଲେ—ମୋ ସାମ୍ରାଜ୍ୟକୁ ରକ୍ଷା କର ।

ଚଟାଣ ଉପରେ ପିତାଙ୍କ ପାଦ ଶବ୍ଦ ଶୁଣିପାରିଲି । ଭାବିଲି, ସମ୍ରାଟ ଶାହାଜାହାନ ସମାଧିରେ ଏକାକୀ ବିଶ୍ରାମ କରନ୍ତୁ । ମୁଁ ଦ୍ରୁତ-ଗତିରେ ଉଦ୍ୟାନ ଅଭିମୁଖେ ଚାଲିଲି । ଏଇ ଉଚ୍ଚ ପ୍ରାଚୀର ବେଷ୍ଟିତ ଭୂମିହିଁ ମୋର ତୀର୍ଥସ୍ଥାନ ।

ସମ୍ରାଟ ଆକବରଙ୍କ ସମାଧି ସ୍ପର୍ଶ କରି ଚତୁର୍ଦ୍ଦିଗକୁ ଲମ୍ବି ଯାଇଛି, ପଥଶ୍ରେଣୀ । ମଧ୍ୟସ୍ଥଳରେ ବହିଯାଉଛି କ୍ଷୀଣ ଏକ ଜଳଧାରା ଏକ ନିଭୃତ କୂପରୁ ନିଃସୃତ ଚାରିଗୋଟି ଜଳଧାରା ଚାରିଟି ନଦୀ ପରି ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମରେ ପ୍ରବାହିତ ହେଉଛି, ଜନନୀ ବସୁନ୍ଧରାକୁ ଉର୍ବର କରି । ମନେ ହେଲା, ଏଠାରେ ସକଳ ବୃକ୍ଷ ପବିତ୍ର । ବୃକ୍ଷ ଛାୟାକୀର୍ଣ୍ଣ ପଥ ଦେଇ ସ୍ଥିର ପାଦରେ ଚାଲିଛି । ମୋ ପଥ ପ୍ରାନ୍ତରେ ତାଳମ୍ବ ବୃକ୍ଷରାଜି ଜୀବନର ସନ୍ଧାନ ଦେଉଛନ୍ତି । ସାଇପ୍ରାସ୍ ବୃକ୍ଷ ମୃତ୍ୟୁ ଓ ଅସୀମର ବାର୍ତ୍ତା ପ୍ରେରଣ କରୁଛି ।

ରାଜକୋଷର ସୁବର୍ଣ୍ଣ ନିଃଶେଷ ହୋଇଯାଇଛି । ଶ୍ୱେତବସ୍ତ୍ର ପରିହିତ ମୁଲ୍ଲାଗଣ ସମୃଦ୍ଧ କଳ୍ପବୃକ୍ଷର ଫଳରାଶି ଦରିଦ୍ରମାନଙ୍କ ନାମରେ ତୋଳି ନେଇଛନ୍ତି । ତରଙ୍ଗାୟିତ ମୋର କଣ୍ଠହାର ମୋତେ ଭାରାକ୍ରାନ୍ତ କରୁଛି ।

ଆଗ୍ରାରେ ପ୍ରବେଶ କରିବା ପୂର୍ବରୁ ଇଚ୍ଛା ହେଲା, ଆଜି ଥରେ ମୋ ଚାରିପାଖର ପୃଥିବୀକୁ ନିରୀକ୍ଷଣ କରିବ । ବାହାରର ତୋରଣ ଉପରେ ଆରୋହଣ କଲି ।

ପ୍ରାନ୍ତର ଅତିକ୍ରମ କରି ଜଳସର୍ଙ୍କୁଳା ଯମୁନା ଜଳ ଆକାଶ ସଙ୍ଗେ ମିଶାଇ ବହି ଚାଲିଛି । ଆଗ୍ରାର ପ୍ରାସାଦ ଉପରେ ମୀନାରଗୁଡ଼ିକ ମେଘ

କୋଣରେ ସୌଧ ପରି ଦେଖାଯାଉଛି । ଦକ୍ଷିଣ ଆକାଶର ପଟ୍ଟ ଭୂମିକାରେ ଶୋଭା ପାଉଛି ସମ୍ରାଟ ଆକବରଙ୍କର ପରିତ୍ୟକ୍ତ ଫତେପୁରସିକ୍ରୀର ପ୍ରବେଶ ତୋରଣ । ଆଉ କେତେଦିନ ଏଇ ସବୁଜ ପ୍ରାନ୍ତର ସବୁଜ ରହିବ ? ରକ୍ତର ସ୍ରୋତ ରକ୍ତର ପଦଚିହ୍ନ ଆଉ କେତେ ଦୂର ? ପ୍ରାସାଦ ଉଦ୍ୟାନ ଆଉ କେତେଦିନ ବିହଙ୍ଗର ନିର୍ଭୟ ସଙ୍ଗୀତରେ ମୁଖରିତ ହେବ ? ଯୁଦ୍ଧର ବାଦ୍ୟଧ୍ୱନି କେଉଁଦିନ ସେମାନଙ୍କୁ ସ୍ତବ୍ଧ କରିବ ?

ମୁଁ ଅପେକ୍ଷା କରିଛି—ସହୋଦର ଭାଇ ଭଉଣୀଙ୍କ ସଙ୍ଗେ କ୍ରୀଡ଼ା-ନିକେତନ ଶୈଶବର ଫତେପୁର ତୋରଣ ଅତିକ୍ରମ କରି ଯିବି । ହୁଏତ ସେଠାରେ ଏପରି ଗୋଟିଏ ମନ୍ତ୍ରପୂତ ବସ୍ତୁ ପାଇବି, ଯାହା ରାଜ୍ୟର ସମସ୍ତ ଅକଲ୍ୟାଣ ଦୂର କରିପାରିବ । ରକ୍ତପ୍ରସ୍ତର ନିର୍ମିତ ଆକ୍‌ବରାବାଦ୍‌ର ପ୍ରାସାଦ ଅଭିମୁଖେ ଚାଲିଛି । ସେଠାରେ ମୁଁ ବନ୍ଦିନୀ । ଅସ୍ତମାନ ସୂର୍ଯ୍ୟରଶ୍ମି ଅପେକ୍ଷା ପ୍ରାସାଦର ବର୍ଣ୍ଣ ଆହୁରି ରକ୍ତବର୍ଣ୍ଣ ହୋଇଉଠିଛି । ରାଜ-ପ୍ରାସାଦର ସମ୍ମୁଖ ବିପଣୀର ଜନପଥ ଆଜି ଜନଶୂନ୍ୟ । ଗୋଟିଏ କଳାପକ୍ଷୀ ଚିତ୍କାର କରି ଏ ଜଳାଶୟରୁ ଦୂରକୁ ଉଡ଼ିଗଲା । ଏଇ ଅଶୁଭ ଚିତ୍କାରରେ ମୁଁ ଆତଙ୍କିତ ହୋଇଉଠିଲି । ଇଚ୍ଛା ହେଲା, ଶାହଜାହାନା-ବାଦ୍ ଅଭିମୁଖେ ଚିତ୍କାର କରି ସେଇ ପକ୍ଷୀଟିର ପ୍ରତ୍ୟୁତ୍ତର ଦେବି ।

ଆମେ ସେତୁ ଉପରେ ଆଗେଇ ଚାଲିଛୁ—ବାଟରେ ଦେଖିଲୁ, ଦିଲ୍ଲୀ-ତୋରଣ ମଧ୍ୟ ଦେଇ ଦଳେ ସୁସଜ୍ଜିତ ଅଶ୍ୱାରୋହୀ ଆମକୁ ଅତିକ୍ରମ କରିଗଲେ । ହସ୍ତୀଯୂଥବାହିତ ଶିବିକା ଚାଲିଛି । ରୋଶେନାରାର ଶିବିକା-ଅତି ସୁନ୍ଦର ସୂକ୍ଷ୍ମଜାଲର ଆବରଣରେ ବେଷ୍ଟିତ । ଗୋଟିଏ କିଶୋର କ୍ରୀତଦାସ ସୁବର୍ଣ୍ଣ ଖଚିତ ମୟୂର ପୁଚ୍ଛର ବ୍ୟଜନ ଦୋଳାଉଥିଲା । ସେ ଦୃଶ୍ୟ ଜୀବନରେ କେବେ ଭୁଲି ପାରିବି ନାହିଁ । ମନେ ହେଲା, ହସ୍ତୀ ଦୁଇଟି ଆମକୁ ଦଳି ଚାଲିଯିବେ । ଆମର ଅଗ୍ରଗାମୀ ଦଳ ଅଟକିଲେ । ଅତରର ତୀବ୍ର ଗନ୍ଧରେ ପବନ ପୂର୍ଣ୍ଣ ହୋଇଉଠିଲା । ମୋ ଭଉଣୀ ରୋଶେନାରା ଜାଲିର ଆବରଣ ଭିତରୁ ବାହାରର ଦୃଶ୍ୟ ଦେଖୁଥିଲା । ତାର ଗର୍ବିତ ମୁଖମଣ୍ଡଳ, ଶୁଭ୍ର ଦନ୍ତପଂକ୍ତି ଦେଖିଲି । ଅଶ୍ୱାରୋହୀ ଦଳକୁ ଅଗ୍ରସର ହେବାକୁ ଅନୁମତି ଦିଆଗଲା । ଜୁମ୍ମା ମସ୍‌ଜିଦ୍‌ରେ ସନ୍ଧ୍ୟାର ପ୍ରାର୍ଥନାରେ ଯୋଗଦେବାକୁ ରାଜକୁମାରୀ

ବୁଲିଥିଲେ । ମୁଁ ନିଜେ ସେ ମସଜିଦ୍ ନିର୍ମାଣ କରାଇଥିଲି । ଦୃଷ୍ଟ କଣ୍ଠରେ ଶାହଜାହାନ ମନକୁ ମନ କହିଲେ, "ମୋ ରୋପିତ ପ୍ରତ୍ୟେକଟି ବୃକ୍ଷ ଶୁଭଫଳପ୍ରସୂ ହୋଇପାରିଲା ନାହିଁ ।"

ରାଜପ୍ରାସାଦର ତୋରଣରେ ପ୍ରବେଶ ନ କରୁଣୁ ବୁଝିଲି, ରାଜ୍ୟର ସମସ୍ତ ବ୍ୟବସ୍ଥା ବିଶୃଙ୍ଖଳ ହୋଇ ପଡ଼ିଛି । ଶୁଣିଲି, ଶାଇସ୍ତା ଖାଁ ଓ ମୀର୍‌ଜୁମଲାର ପୁତ୍ର ଆମିନ୍ ଖାଁ ଆଉରଙ୍ଗଜେବ ପାଖକୁ ଲେଖିଛନ୍ତି— "ସମ୍ରାଟଙ୍କ ଜୀବନ ଶେଷ ହୋଇ ଆସୁଛି । ଏ ଯାଏଁ ଅବଶ୍ୟ ପ୍ରତିଦିନ ସେ ପ୍ରଜାମାନଙ୍କୁ ଝାରୋଖା-ଇ-ଦର୍ଶନ (୧) ଦେଉଛନ୍ତି, ଏବଂ ପ୍ରଜାମାନେ ତାଙ୍କ ଦର୍ଶନ ପାଉଛନ୍ତି । କିନ୍ତୁ ତାଙ୍କର ମୃତ୍ୟୁ ଖୁବ୍ ନିକଟ ।" ସେ ଦୁହେଁ ଆଉରଙ୍ଗଜେବ ଓ ମୁରାଦଙ୍କ ପାଖକୁ ଲେଖିଛନ୍ତି, ସେମାନେ ଯେପରି ସୈନ୍ୟସହ ଆଗ୍ରାରେ ଉପସ୍ଥିତ ହୁଅନ୍ତି । ସୁଲେମାନ ଶୁକୋ ତାଙ୍କର ସୁସଜ୍ଜିତ ସୈନ୍ୟବାହିନୀ ନେଇ ଶୁଜାଙ୍କ ବିରୁଦ୍ଧରେ ବଙ୍ଗ ସୁବାକୁ ଯୁଦ୍ଧଯାତ୍ରା କରିଛନ୍ତି । ସେ ଆଗ୍ରା ଫେରି ଆସିବା ପୂର୍ବରୁ ରାଜକୁମାର ଦୁହେଁ ଆଗ୍ରାରେ ଉପସ୍ଥିତ ହେବା ଆବଶ୍ୟକ । ସେ ପତ୍ରସବୁ ଦାରାଙ୍କ ହସ୍ତଗତ ହୋଇଛି—ସେଇ ଦୁଇ ବିଶ୍ୱାସଘାତକଙ୍କୁ କାରାଗାରରେ ନିକ୍ଷେପ କରାଯାଇଛି । ସେମାନଙ୍କ ବିଗୃହର ଗପ୍ପ ଶୁଣିବା ପାଇଁ ପ୍ରଜାଗଣ ସାରାଦିନ ଦାରାଙ୍କ ପ୍ରାସାଦ ସମ୍ମୁଖରେ ଅପେକ୍ଷା କରିଛନ୍ତି । କିନ୍ତୁ ଦାରାଙ୍କ ହୃଦୟ ଅତି କୋମଳ । ସୂର୍ଯ୍ୟାସ୍ତ ସଙ୍ଗେ ସଙ୍ଗେ କାରାଗାରର ଦ୍ୱାର ଉନ୍ମୁକ୍ତ ହୋଇଗଲା । ମୋ ଭଉଣୀ ରୋଶେନାରା ସେମାନଙ୍କ ମୁକ୍ତିର ବ୍ୟବସ୍ଥା କରିଦେଲେ । ଗୃହୁଁ ଗୃହୁଁ ଆମର ପତନର ପଥ ସୁଗମ ହୋଇଉଠିଲା ।

କ୍ରମଶଃ ଲେଖନୀ ମନ୍ଥର ହୋଇ ଆସୁଛି । ମନେ ହେଉଛି, ଅତୀତର ସୀମାହୀନ ଦୁଃଖର ସ୍ମୃତି ମୋତେ ଅବଶ କରି ଦେଉଛି ।

---

(୧) ଝାରୋଖା-ଇ-ଦର୍ଶନ—ମୋଗଲ ସମ୍ରାଟ ପ୍ରତି ପ୍ରଭାତରେ ପୂର୍ବମୁଖୀ ଅଲିନ୍ଦରେ ଠିଆହୋଇ ପ୍ରଜାବର୍ଗଙ୍କୁ ଜଣାଇ ଦେଉଥିଲେ ଯେ, ସେ ଜୀବିତ । ପ୍ରଜାବର୍ଗ ତାହାଙ୍କୁ ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ କହି ଅଭିନନ୍ଦନ ଜଣାଉଥିଲେ । ଆଉରଙ୍ଗଜେବ ଏଇ ପ୍ରଥା ନିଷିଦ୍ଧ କରିଥିଲେ, କାରଣ ଏଇ ପ୍ରଥାରେ ସେ ମୂର୍ତ୍ତିପୂଜାର ଗନ୍ଧ ପାଇଲେ ।

ଯାହାଧାରର ମର୍ଯ୍ୟାଦା ମୋ'ର ରକ୍ତରେ ପରିଣତ ହେଉଛି । ହେ ପବନ—ଦେବତା, ସମସ୍ତ ପ୍ରଭଞ୍ଜନ ବିମୁକ୍ତ କରିଦିଅ । ପ୍ରଭଞ୍ଜନ ! ତୁମର ସଙ୍ଗେ ସମସ୍ତ ମେଘ ନେଇ ଆସ । ତୁମର ଶୋକର ଅଶ୍ରୁ ଦିଲ୍ଲୀ ଉପରେ ବର୍ଷିତ ହେଉ । ଦିଲ୍ଲୀ ! ତୁମେ ଆର୍ତ୍ତନାଦ କରିଉଠ ।

ରାଜ ଦରବାର ଓ ଶିବିର ମଧ୍ୟରେ ସଂଯୋଗ ରକ୍ଷା କରିବା ପାଇଁ ଗୁପ୍ତଚରଙ୍କ ଦଳର ଚକ୍ରାନ୍ତ ଉର୍ଣ୍ଣନାଭିର-ଜାଲପରି ନୀରବରେ ପ୍ରସାରିତ ହେଉଛି । ମୀର୍‌ଜୁମ୍‌ଲା ଘୋଷଣା କରିଛି, ସେ ଶାହାଜାହାନଙ୍କ ପତାକା ତଳେ ଆଶ୍ରୟ ନେବ । ତାହାର ଭାଷାରେ ଶକ୍ତି, ବ୍ୟବହାରରେ ଚକଚକ୍ୟ ଅଛି । ଦାରା ଓ ସମ୍ରାଟ ତାର କଥାରେ ଏକାନ୍ତ ବିଶ୍ୱାସ ରଖିଛନ୍ତି । କିନ୍ତୁ ସମ୍ରାଟଙ୍କ ସେନାଧ୍ୟକ୍ଷମାନଙ୍କ ନିକଟକୁ ଆଉରଙ୍ଗଜେବ ଗୋପନରେ ସମ୍ବାଦପତ୍ର ପଠାଇଛନ୍ତି—"ସମ୍ରାଟ୍ ମୃତ । ଆପଣମାନେ ଯଦି ଆଉରଙ୍ଗଜେବଙ୍କ ପକ୍ଷ ସମର୍ଥନ କରନ୍ତି, ତେବେ ଆପଣମାନଙ୍କ ବେତନ ବୃଦ୍ଧି କରାଯିବ । ଯେଉଁ ଧର୍ମହୀନ ଦାରା ହଜରତ୍ ମହମ୍ମଦ୍‌ଙ୍କ ବାଣୀର ବିରୁଦ୍ଧାଚରଣ କରେ, ଆପଣମାନେ କିପରି ତାହାକୁ ସମର୍ଥନ କରିବେ ?" ସେନାପତିଗଣ କୋରାଣ ସ୍ପର୍ଶକରି ପ୍ରତିଜ୍ଞା କରିଛନ୍ତି, ଯଦି ପ୍ରକୃତରେ ସମ୍ରାଟ ପରଲୋକ ଗମନ କରିଥାନ୍ତି, ତେବେ ସେମାନେ ଆଉରଙ୍ଗଜେବଙ୍କୁ ହିଁ ସମର୍ଥନ କରିବେ । କିନ୍ତୁ ସେମାନେ ସତ୍ୟ ଘଟଣା ଜାଣିବା ପାଇଁ ଦୂତ ପ୍ରେରଣ କରିଛନ୍ତି । ଯେଉଁମାନେ ସତ୍ୟ ଘଟଣା ଜାଣିବା ପାଇଁ ଆସିଥିଲେ, ପ୍ରତ୍ୟାବର୍ତ୍ତନ ପଥରେ ନର୍ମଦା ଅତିକ୍ରମ କଲା ପରେ ସେମାନଙ୍କୁ ପରୀକ୍ଷା କରାଗଲା । ଯେଉଁମାନେ ପ୍ରକୃତ ସମ୍ବାଦ ଜାଣିଥିଲେ, ସେମାନଙ୍କ ମସ୍ତକ ସ୍କନ୍ଧଚ୍ୟୁତ ହେଲା ।

ଏହି ଉପାୟରେ ଆଉରଙ୍ଗଜେବ ପିତାଙ୍କର ସମସ୍ତ ସେନାପତିଙ୍କୁ ନିଜ ପକ୍ଷକୁ ଟାଣିନେଲେ । କେବଳ ମହବତ୍ ଖାଁ ତାଙ୍କ ସୈନ୍ୟ ସହ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ ଓ ପରେ ଆଗ୍ରା ଚାଲି ଆସିଲେ । ସେ ହିଁ ତାଙ୍କ ବଂଶର ମର୍ଯ୍ୟାଦା ରକ୍ଷା କରି ପାରିଲେ । ତାଙ୍କ ରକ୍ତରେ ରାଜପୁତର ବୀର୍ଯ୍ୟ ଥିଲା । ତାଙ୍କୁ ଦିନେ ମୁଁ ଭଉଣୀର ସମ୍ମାନ ଦେଇଥିଲି ।

ଦାକ୍ଷିଣାତ୍ୟରୁ ଯାତ୍ରା କରିବା ପୂର୍ବରୁ ଆଉରଙ୍ଗଜେବ ତାଙ୍କର ପ୍ରତ୍ୟେକ ସେନାପତିଙ୍କୁ ନତଜାନୁ ହୋଇ ତାଙ୍କର ବିଜୟ ପାଇଁ

ଆଲ୍ଲାଙ୍କ ନିକଟରେ ପ୍ରାର୍ଥନା କରିବାକୁ ଅନୁରୋଧ କଲେ । ପ୍ରାର୍ଥନା ପରେ ଆଉରଙ୍ଗଜେବ୍, ଆଲେକ୍‌ଜାଣ୍ଡାରଙ୍କ ବିରୁଦ୍ଧରେ ଅଭିଯାନ ସମୟରେ ଦରିୟସ୍‌ଙ୍କ ଉକ୍ତିର ପୁନାରାବୃତ୍ତି କଲେ । "ହୁଏତ ମୁଁ ଶତ୍ରୁର ଶିରଚ୍ଛେଦ କରିବି; ନଚେତ୍ ମୋର ଶିରଚ୍ଛେଦ ହେବ ।"

ପ୍ରାର୍ଥନା କପରି ସଫଳ କରିବାକୁ ହୁଏ, ତାହା ଆଉରଙ୍ଗଜେବ୍‌ଙ୍କୁ ଜଣାଥିଲା । ବଲ୍‌କ ଯୁଦ୍ଧରେ ବୋଖାରାର ସୁଲ୍‌ତାନ୍‌ଙ୍କ ବିରାଟ ସୈନ୍ୟବାହିନୀ ବିରୁଦ୍ଧରେ ଆଉରଙ୍ଗଜେବ ଯେତେବେଳେ ସମ୍ରାଟ୍‌ଙ୍କ ସୈନ୍ୟଚାଳନା କଲେ, ତାଙ୍କ ପ୍ରଶଂସାରେ ସମସ୍ତ ମୁସ୍‌ଲିମ୍ ଜଗତ୍ ମୁଖରିତ ହୋଇ ଉଠିଲା । ଦ୍ୱିପ୍ରହରର ନମାଜ ସମୟରେ ଆଉରଙ୍ଗଜେବ୍ ହସ୍ତୀପୃଷ୍ଠରୁ ଅବତରଣ କରି ସୈନ୍ୟ ବାହିନୀର ମଧ୍ୟସ୍ଥଳରେ ନତଜାନୁ ହୋଇ ସ୍ଥିର ଭାବରେ ସଂପୂର୍ଣ୍ଣ ନମାଜ କରିଥିଲେ । ବୋଖାରାର ସୁଲତାନ୍ ଅବଦୁଲ୍ ଅଜିଦ୍ ଚିତ୍କାର କରିଉଠିଲେ, "ଏପରି ବ୍ୟକ୍ତି ବିରୁଦ୍ଧରେ ଯୁଦ୍ଧ କରିବା ମୃତ୍ୟୁ ସଙ୍ଗେ ସମାନ ।" ତାହାପରେ ବାଦ୍ୟଧ୍ୱନିରେ ଯୁଦ୍ଧ ବିରତି ଘୋଷଣା କରାଗଲା ।

ରଜବ୍‌ମାସରେ ଉଜ୍ଜୟିନୀ ଯୁଦ୍ଧ ସଂଘଟିତ ହୋଇଥିଲା । ମୁରାଦ୍ ସିଂହ ବିକ୍ରମରେ ମୋ ପିତାଙ୍କ ବନ୍ଧୁ ଯଶୋବନ୍ତ ସିଂହ ଓ ଆମ ପକ୍ଷ ସମର୍ଥନକାରୀ ରାଜପୁତ ବୀରମାନଙ୍କୁ ପରାଜିତ କଲେ; କାରଣ ଆମର ମୁସଲମାନ ସେନାଧ୍ୟକ୍ଷ ଥିଲେ ବିଶ୍ୱାସଘାତକ । ସେ ସମସ୍ତ ଗୋଳାବାରୁଦ ଆଉରଙ୍ଗଜେବଙ୍କ ପାଇଁ ଭୂମିତଳେ ପୋତିଦେଲେ ଏବଂ ଯୁଦ୍ଧ ସମୟରେ ସେ ତାଙ୍କର ସୈନ୍ୟ ସହିତ ଅନୁପସ୍ଥିତ ରହିଲେ । ଯେତେବେଳେ ଯଶୋବନ୍ତ ସିଂହ ପରାଜିତ ହୋଇ ପ୍ରାସାଦକୁ ଫେରିଲେ, ତାଙ୍କ ମହିଷୀ ଦୁର୍ଗଦ୍ୱାର ବନ୍ଦ କରିଦେଲେ । କହିଲେ, "ପରାଜିତ ସ୍ୱାମୀଙ୍କୁ ଅଭ୍ୟର୍ଥନା କରିବା ଅପେକ୍ଷା ବିଧବା ହୋଇ ସ୍ୱାମୀଙ୍କ ଜ୍ୱଳନ୍ତ ଚିତାରେ ଆରୋହଣ କରିବା ଶ୍ରେୟସ୍କର ।"

ଉଜ୍ଜୟିନୀ ଯୁଦ୍ଧରେ ବିଜୟ ଲାଭ ପରେ ଦୁଇ ଭାଇ ସୈନ୍ୟ ସହ ଆଗ୍ରା ଅଭିମୁଖେ ଅଗ୍ରସର୍ ହେଲେ । ଏକାନ୍ତ ହତାଶ ହୋଇ ପିତା ସ୍ୱର୍ଗ ଆଡ଼େ ହସ୍ତ ଉତ୍ତୋଳନ କରି ଚିତ୍କାର କଲେ, "ଇୟା ଆଲ୍ଲାହ୍ ନିତରି-

ତେରଜା (ହେ ଈଶ୍ୱର ତୁମରି ଇଚ୍ଛା) । ମୋ ପାପ ପାଇଁ ଶାସ୍ତି ଭୋଗକରୁଛି, ଏହି ଶାସ୍ତି ହିଁ ମୋର ପ୍ରାପ୍ୟ ।" ସେ ସ୍ୱୟଂ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ ଏବଂ ଆଦେଶ ଦେଲେ, ସୈନ୍ୟ ସମାବେଶ ନିମନ୍ତେ ।

ହିନ୍ଦୁସ୍ଥାନ ବିରୁଦ୍ଧରେ ସୈନ୍ୟ ଚାଳନା ସମୟରେ ସାମାନ୍ୟ ସୈନିକ ପରି ସ୍ୱୟଂ ତୈମୁର କ'ଣ ଯୁଦ୍ଧ କରି ନ ଥିଲେ ? ଶାହଜାହାନ ଯଦି ନିଜେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି, ଦେଶବାସୀ ଜାଣିବେ, ସମ୍ରାଟ ଜୀବିତ । ଯଦି ସମ୍ରାଟ ନିଜେ ସୈନ୍ୟବାହିନୀର ପୁରୋଭାଗରେ ସର୍ବଦା ରହିଥାନ୍ତେ, ତେବେ ଆଜି ବାବର୍ ଓ ଆକବରଙ୍କ ଭାରତବର୍ଷର ଅବସ୍ଥା ଯେ କ'ଣ ହୋଇଥାନ୍ତା, କିଏ ଜାଣେ ? ଗୋଟିଏ ମାତ୍ର ମସ୍ତିଷ୍କ ସମସ୍ତ ଅଙ୍ଗ ଚାଳିତ କରେ । ଆଜି ଯେଉଁମାନେ ସମ୍ରାଟଙ୍କ ବିରୁଦ୍ଧରେ ଅଗ୍ରସର ହୋଇଛନ୍ତି, ସେମାନେ ସମସ୍ତେ ସମ୍ରାଟଙ୍କ ନିକଟରେ କୃତ-ଜ୍ଞତାରେ ଆବଦ୍ଧ । ସେଇଥିପାଇଁ ଦିଲ୍ଲୀ ସିଂହାସନର ମର୍ଯ୍ୟାଦା ଅକ୍ଷୁଣ୍ଣ ଥିଲା । ଗୃହର ପ୍ରଦୀପ ଯେପରି ସୁଦୂରର ପଥିକକୁ ଆକର୍ଷଣ କରେ, ସେହିପରି ରାଜମୁକୁଟର ଦୀପ୍ତଶିଖା ସମଗ୍ର ଦେଶକୁ ଆଲୋକିତ କରିଥାଏ । କିନ୍ତୁ ବିଶ୍ୱାସଘାତକ ଦଳ ଅନ୍ୟ ବ୍ୟବସ୍ଥା କରିଥିଲେ । ସମ୍ରାଟଙ୍କ ଶ୍ୟାଳକ ଶାୟେସ୍ତା ଖାଁଙ୍କ ହୃଦୟରେ ଥିଲା ତୀବ୍ର ଘୃଣା, କଣ୍ଠରେ କିନ୍ତୁ ଥିଲା ମଧୁର ଉପଦେଶ । ଶାୟେସ୍ତା ଖାଁଙ୍କ ପରି ଖଲିଲୁଲ୍ଲା ଖାଁ, ତାଙ୍କ ସ୍ତ୍ରୀଙ୍କ ଅପ-ମାନର ଗ୍ଲାନି ବିସ୍ମୃତ ହୋଇ ନ ଥିଲେ (୧) । ସେ ଦୁହେଁ ଜାଣିଥିଲେ, ମଧୁର କଥାରେ ସମ୍ରାଟଙ୍କ ସିଦ୍ଧାନ୍ତ ପରିବର୍ତ୍ତନ କରାଯାଇପାରେ ।

ଦୁଷ୍ଟ ଶୟତାନ ଥରେ ସ୍ୱର୍ଗର ଦ୍ୱାରରେ ଉପସ୍ଥିତ ହୋଇ ସୃଷ୍ଟିର ଗୋପନ ରହସ୍ୟ ଜାଣିଲା । ଏହାପରେ ସେ ତାର ଇଚ୍ଛା ପୂର୍ତ୍ତି କରିବାକୁ ଚାହିଁଲା । ସମ୍ରାଟ ରାଜପୁତ ବୀର ରାମ ସିଂ ଓ ବୁନ୍ଦେଲ ରାଜ ଛତ୍ରଶାଳଙ୍କୁ ରାଜ ଦରବାରରେ ଅନ୍ୟ ସମସ୍ତ ଅମାତ୍ୟଙ୍କଠାରୁ ଉଚ୍ଚରେ ଆସନ ଦେଇଥିଲେ । ସମ୍ରାଟଙ୍କ ଆହ୍ୱାନରେ ରାଜ ଛତ୍ରଶାଳ ବିଲେଟପୁରରୁ ଆଗ୍ରା ଆସିବା ପୂର୍ବରୁ ଆମେ ଦିଲ୍ଲୀରୁ ଆଗ୍ରା ଚାଲି ଆସିଥିଲୁ । ବହୁ ବର୍ଷ

(୧) ଖଲିଲୁଲ୍ଲା ଖାଁଙ୍କ ସ୍ତ୍ରୀ ଓ ଶାହଜାହାନଙ୍କ ସମ୍ପର୍କରେ ନାନା ପ୍ରକାର କୁତ୍ସା ପ୍ରଚାରିତ ଥିଲା । ବ୍ୟକ୍ତିଗତ ଅପମାନର ପ୍ରତିଶୋଧ ପାଇଁ ଖଲିଲୁଲ୍ଲା ଖାଁ ଶାହଜାହାନଙ୍କ ବିରୁଦ୍ଧାଚରଣ କରିଥିଲେ ।

ହେଲୁ ମୁଁ ମୋ ପକ୍ଷୀ ବନ୍ଧା ଭାଇଙ୍କ ଦର୍ଶନ ପାଇ ନ ଥିଲି । ସେଇ ସାମ୍ବାଦିକ ଘଟଣାଟି ଖୋଲି ପଢ଼ିବା ପରେ ଆଉ ତାଙ୍କ ସହିତ ସାକ୍ଷାତ୍ ହୋଇନାହିଁ ।

ଗବି ପ୍ରସ୍ତୁତ ହୋଇ ଆସୁଛି । ଗୋଟିଏ ଧୂସର ଦେହ ରକ୍ତଗ୍ରୀବ କପୋତକୁ ଦୂତରୂପେ ପ୍ରେରଣ କରାଗଲା । ରାଜା ଛତ୍ରଶାଳଙ୍କୁ ଆହ୍ୱାନ କରି ସେ ତାଙ୍କୁ ଦରବାରକୁ ନେଇ ଆସିବ ।

ଗ୍ରୀଷ୍ମ ଋତୁ, ଅସଂଖ୍ୟ ଫୁଲ ଫୁଟିଛି । ଭ୍ରମରର ଗୁଞ୍ଜନରେ ବୃନ୍ଦାବନ ମୁଖରିତ । ପୁଷ୍ପ କୋରକର ସୁଗନ୍ଧରେ ଅଙ୍ଗୁରବାଗ୍ ଭାବହ୍ୱାନ୍ତ । ପରାମର୍ଶ ପାଇଁ ପିତା ତାଙ୍କୁ ଖାସ୍‌ମହଲକୁ ନିମନ୍ତ୍ରଣ କଲେ । ସେ ସୂର୍ଯ୍ୟମୁଖୀ ବାଥିକା ଅତିକ୍ରମ କଲାବେଳେ ମୁଁ ତାଙ୍କର ଦର୍ଶନ ପାଇବା ଆଶାରେ ଚାନ୍ଦବାଗ କୁଞ୍ଜର ଅନ୍ତରାଳରେ ଲୁଚି ରହିଲି ।

ଶ୍ୱେତମର୍ମର ଜାଲି ମଧ୍ୟଦେଇ ଯମୁନାର ଜଳ ଗୋଲ୍‌କୁଣ୍ଡାର ହୀରକ ଖଣ୍ଡ ପରି ବିଚ୍ଛୁରିତ ହୋଇ ପଡୁଥିଲା । ମୃଦୁ ପବନ ମୋ ଅବଗୁଣ୍ଠନ ଖୋଲିଦେଲା । ମୁଁ କାହାର ପ୍ରତିଧ୍ୱନି ଶୁଣୁଥିଲି କିମ୍ବା ମୋ ନିଜ ହୃଦୟର ଧ୍ୱନି ଶୁଣୁଥିଲି, ଜାଣେ ନାହିଁ । ଏତେ ଦିନ ସେଇ ମହାନ୍ ବୀର ସମାଧିର ମଣିଷଠାରୁ ମଧ୍ୟ ମୋ ନିକଟରେ ମୃତତର ଥିଲେ ! କେହି ଯଦି ଦିଲ୍ଲୀ ସିଂହାସନର ମଙ୍ଗଳ କାମନା କରି ମୋ ନିକଟରେ ଦୌଲତାବାଦ୍ ଓ ଗୁଲ୍‌ବର୍‌ଗାର ରଣକ୍ଷେତ୍ରରେ ସେଇ ରାଜପୁତ ବୀରଙ୍କ ଗୌରବର କାହାଣୀ ଶୁଣାନ୍ତେ, ମୁଁ ଆଜି କିନ୍ତୁ ଉଚ୍ଛ୍ୱସିତ ହୋଇଉଠନ୍ତି । ମୋର ମନେ ହୁଅନ୍ତା, ମୁଁ ଯେପରି ବିଜୟିନୀ । ସେଇ ବିଜୟୀ ବୀରଙ୍କ ନିକଟରେ ଠିଆ ହୁଅନ୍ତି କିମ୍ବା ଭୀଷଣ ହତାଶ ହୋଇ ପଡ଼ନ୍ତି, ମନେ ହୁଅନ୍ତା ତାଙ୍କର ଶତ୍ରୁମାନଙ୍କ ପରି ମୁଁ ନିକ୍ଷେପିତ ହୋଇ ଯାଇଛି ।

ମ୍ଳାନ ଚନ୍ଦ୍ରାଲୋକରେ ବୀଣା ସ୍ୱରର ମୂର୍ଚ୍ଛନା ସୁପ୍ତ ଆତ୍ମା ପରି ମୋ ଅଜ୍ଞାତ ସ୍ମୃତିକୁ ଜାଗ୍ରତ କଲା;—ଯେପରି ଶେଷ ବର୍ଷରର ଦିନ ଉତ୍ପନ୍ନିତ । ଅଜ୍ଞାତ ପୁଣି ଜୀବନ୍ତ ହୋଇଉଠିଲା । ମୋର ସମସ୍ତ ସ୍ମୃତି ବାସ୍ତବର ସଂଘାତରେ ଆଜି କ'ଣ ପ୍ରାଣ ହୀନ ଗୁମ୍ଫା ପରି ନିସ୍ତବ୍ଧ ? ମୋ ସ୍ମୃତିକୁ ମୋ' ଠାରୁ କିଏ ବିଚ୍ଛିନ୍ନ କରିଦେବ ? ଅନେକ ଦିନ ସେ ମୋର ପରମ ଶତ୍ରୁର ଆଦେଶ ପାଳନ କରିଛନ୍ତି । ଏଇ ସେଦିନ ସେ ତାଙ୍କ ଦେଶକୁ

ଫେରି ଯାଇଥିଲେ;—ନିଜ ପ୍ରାସାଦକୁ ଫେରି ଯାଇଥିଲେ । ମୃତ ବ୍ୟକ୍ତି ପରି ମୁଁ ହୋଇଉଠିଲି ଶୀତଳ ଓ କଠୋର । ତା'ପରେ ପ୍ରଭାତର ନୀଳାକାଶର ପ୍ରଚ୍ଛଦପଟରେ ମୁଁ ତାଙ୍କର ଶୁଭ୍ର ଉଷ୍ଣୀଷ ଦେଖିବାକୁ ପାଇଲି । ଅଲୌକିକ ଘଟଣାର ପ୍ରଭାବରେ ମୃତ ବ୍ୟକ୍ତି ମଧ୍ୟରେ ଜୀବନ ସଞ୍ଚାର ହେଲେ ସେ ଯେପରି ଚଞ୍ଚଳ ହୋଇଉଠେ, ମୋ ରକ୍ତର ପ୍ରବାହରେ ମୁଁ ସେପରି ଚଞ୍ଚଳ ହୋଇଉଠିଲି । ସେ ରକ୍ତରେ ମିଶିଥିଲା ନିଆଁ । ତାଙ୍କ ଶରୀର ପୂର୍ବପରି ସୁଗଠିତ ଥିଲା । ବୟସ ତାଙ୍କ କପାଳର ରେଖା ସବୁ କୁଞ୍ଚିତ କରିଥିଲା । କିନ୍ତୁ ଚକ୍ଷୁର ଦୀପ୍ତି ଥିଲା ଅମଳିନ । ତାଙ୍କ ଅସ୍ତ୍ରର ଝନ୍ ଝନ୍ ଶୁଣି ପାରିଲି—ତାଙ୍କ ପଦଧ୍ୱନି କ୍ରମଶଃ କ୍ଷୀଣତର ହୋଇଆସିଲା । ପ୍ରେମ ଓ ହତାଶାର ଆତିଶଯ୍ୟରେ ଭୂମିରେ ଲୋଟି ପଡ଼ିଲି । ମୁଖମଣ୍ଡଳ ଅବଗୁଣ୍ଠନରେ ଢାଙ୍କି ଦେଲି । ଅତୀତ ମୋ ବର୍ତ୍ତମାନକୁ ଆଚ୍ଛନ୍ନ କରିଦେଲା । କଣିକାରେ ବହୁ ଦୂରାଗତ ସ୍ୱର ସମୂହର ମିଳିତ ଝଙ୍କାର ପରି, ମକ୍ଷିକାଗଣ ମୋ କର୍ଣ୍ଣ ଗହ୍ୱରରେ କ୍ରନ୍ଦନ ଧ୍ୱନି ତୋଳିଦେଲେ । ନିମିଳିତ ଚକ୍ଷୁ ମେଲି ମୁଁ ସନ୍ଧ୍ୟାତାରାର ଉଜ୍ଜ୍ୱଳତା ଉପଲବ୍ଧି କଲି । ପ୍ରତ୍ୟେକଟି ଫୁଲ ସୁବାସ ଉଚ୍ଛ୍ୱସିତ । ସବୁଦିନ ପରି ଧୀର ମନ୍ଥର ଗତିରେ ଝରଣାଟି ବହି ଚାଲିଥିଲା—ଆଜି ବି··· ।

ଏଇ ଶୁଣ, ଏ କଣ ବଜ୍ରର ଶବ୍ଦ ? ମୁଁ ଯେପରି ତାଙ୍କର ଶେଷ ପଦଟି ପଢ଼ୁଛି । "ମୋଗଲ ରାଜକୁମାରୀଙ୍କ ଆଲେଖ୍ୟ ସଂଗ୍ରହ ମଧ୍ୟରେ ଚୌହାନ୍ ରାଜପୁତ୍ରଙ୍କ ଚିତ୍ରପଟ ଶୋଭା ପାଇ ନ'ପାରେ !"

ଆବେଗରେ କମ୍ପିଉଠିଲି । ମୋର ଧମନୀ ରକ୍ତ-ସ୍ରୋତରେ ସ୍ଫୀତ ହୋଇପଡ଼ୁଛି । ମନେ ହେଉଛି, ମୋ ହୃଦୟ ଭିତରେ କିଏ ଯେପରି ତାଣ୍ଡବ ନୃତ୍ୟ ଆରମ୍ଭ କରିଦେଇଛି । ସେ ନୃତ୍ୟ ପର୍ବତ-ଶିଖର ଅଭିମୁଖେ ଚାଲିଛି ।

ଆଜି ମନେ ପଡ଼ୁଛି, ଈଶ୍ୱରଙ୍କୁ ଭୁଲି ବହୁଦିନ କଟାଇଛି । ବିଷ ବୃକ୍ଷର ରସ ସଞ୍ଚୟନ କରି ମୋ ବ୍ୟଥାର ପ୍ରଲେପ ପ୍ରସ୍ତୁତ କରିଥିଲି । ଯାହାକୁ ଦିନେ ଭଲ ପାଇଥିଲି, ଆଜି ତାକୁ କି ତୀବ୍ର ଘୃଣା କରୁଛି ! ସେଇ ଅତି ଅପରିଚିତା ନାରୀ ଥିଲେ ସବୁଠାରୁ ଅପରିଚିତ, ଭିନ୍ନ ରାଜ ବଂଶର ସନ୍ତାନ । ସେ ମୋତେ ସାହାଯ୍ୟ ନ କରି ପ୍ରତାରଣା କଲେ ।

ମର୍ମର ଚଟାଣ ଅତିକ୍ରମ କରି ଦ୍ରୁତଗତିରେ ସମ୍ମୁଖର ବୁରୁଜ ଅଭିମୁଖେ ଅଗ୍ରସର ହେଲି । ଯମୁନା ସୂର୍ଯ୍ୟ କିରଣରେ ଉତପ୍ତ ହୋଇ ଉଠିଥିଲା, କିନ୍ତୁ ତାହାର ଅଭ୍ୟନ୍ତରର ଜଳରାଶି ଥିଲା ସୁଶୀତଳ । ଯମୁନାର ଉଜ୍ଜ୍ୱଳ ଜଳତରଙ୍ଗ ଆଡ଼େ ହସ୍ତ ପ୍ରସାରିତ କଲି । ସେଇ ତରଙ୍ଗରେ ଯଦି ବିଲୀନ ହୋଇଯାନ୍ତି !

ଘଣ୍ଟାକ ମଧ୍ୟରେ ଆମେ ଫତେପୁର ସିକ୍ରୀର ନିକଟବର୍ତ୍ତୀ ହେଲୁ— ଶୈଶବ ପରେ ଆଉ କେବେ ସିକ୍ରୀର ରାଜପଥରେ ପାଦ ଦେଇ ନ ଥିଲି । ଲଘୁଭାର ଶକଟରେ ଦ୍ରୁତଗାମୀ ଅଶ୍ୱ ସଯୋଜିତ ହୋଇଥିଲା —ଏ ଶକଟଟି ସାମ୍ରାଜ୍ଞୀ ନୁରମହଲ ବ୍ୟବହାର କରୁଥିଲେ । ମୋର ଭୃତ୍ୟ ହାଙ୍ଗାର୍ ଏବଂ କ୍ରୀତଦାସୀ କୋସ୍ପେଲ୍ ଭିନ୍ନ ମୋର ଆଉ କେହି ସଙ୍ଗୀ ନ ଥିଲେ ।

ସେଦିନ ଉଷ୍ମ ଲାଗୁଥିଲା;—କେବେ କେବେ ଭୀଷଣ ଉଦ୍ଦାମ ପ୍ରଭଞ୍ଜନ ଉଷ୍ମ ବାୟୁ ରାଶିକୁ ମଥିତ କରି ଆସନ୍ନ ଝଡ଼ର ସୂଚନା ଦେଉଥିଲା;—ଆମେ ଗୋଟିଏ ଗ୍ରାମ ଅତିକ୍ରମ କରୁଥିଲୁ । ପଥ ପାର୍ଶ୍ୱରେ ଜନତା ଆମ ଆଡ଼େ ସତୃଷ୍ଣ ନୟନରେ ଅନାଉଥିଲେ,—କାରଣ ରାଜ ପରିବାରର ସନ୍ତାନ ସାଧାରଣତଃ ଶକଟରେ ଆରୋହଣ କରନ୍ତି ନାହିଁ ।

ଶ୍ମଶାନରେ ଶାଗୁଣା ସବୁ ଶବର ଅନ୍ୱେଷଣ କରୁଥିଲେ । କାଉମାନେ ଗୋବର ସ୍ତୂପ ପାଖରେ କର୍କଶ ସ୍ୱରରେ ଚିତ୍କାର କରୁଥିଲେ । ନିର୍ଜନ ପ୍ରାନ୍ତରରେ ଇତସ୍ତତଃ ମୟୂର ଭ୍ରମଣ କରୁଥିଲେ । ଜଳାଶୟ ନିକଟରେ ମାଛରଙ୍କା ପକ୍ଷ ସଙ୍କୁଚିତ କରି ବସିଥିଲା । ଏ ଦୃଶ୍ୟ ଅପ୍ରତ୍ୟାଶିତ ନ ଥିଲେ ବି କିପରି ଆଶ୍ଚର୍ଯ୍ୟଜନକ ମନେ ହେଉଥିଲା । ଗଭୀର ଅଶ୍ୱସ୍ତିରେ ମୁଁ କେବଳ ଭାବୁଥିଲି, ଏଇ ପଶୁ ପକ୍ଷୀମାନଙ୍କ ପରି ଜୀବନ୍ତ ମଣିଷ କିପରି ନିର୍ବିଘ୍ନରେ ନିଃଶ୍ୱାସ ନେଇପାରେ ! ଧୂଳିର ମେଘ ଭିତରେ ଆମର ଅଗ୍ରଗାମୀ ଯାନଟିର ଚତୁସ୍ପାଲ୍‌ର ଚମକ ମୁଁ ଲକ୍ଷ୍ୟ କରୁଥିଲି;—ଲାଗୁଥିଲା, ତୈମୁରଙ୍କ ସୈନ୍ୟଦଳ ଆଗେଇ ଚାଲିଛି । ଏଇ ସୈନ୍ୟ ଦଳ ହିଁ ତୈମୁରଙ୍କ ବିଜୟ ପଥ ସୁଗମ କରିଥିଲେ । ସେମାନେ ସେମାନଙ୍କ ଅଚ୍ଛେଦ୍ୟ କୃଷ୍ଣ ବର୍ମର ଶକ୍ତିରେ ବାୟୁ ଭେଦ୍‌କରି

(୧) ବିଂଶ-ସହସ୍ର କୃଷ୍ଣ ବର୍ମଧାରୀ ସୈନିକଙ୍କୁ ଅକ୍ଳେଶରେ ଧ୍ୱଂସ କରିଥିଲେ ।

ହଠାତ୍ ଏକ ଅପୂର୍ବ ଶକ୍ତି ଅନୁଭବ କଲି । ଅଙ୍ଗୁରୀବାଗ୍‌ରେ ଯେଉଁ ଦୃଶ୍ୟ ଦେଖି ଆସିଛି, ତାହା ଯେପରି ମୋ' ଭିତରେ ଏକ ଦୃଢ଼ ସଂକଳ୍ପରେ ମୂର୍ତ୍ତି ହୋଇ ଉଠିଲା । ମୁଁ ରାଜପୁତର ହୃଦୟ ଜୟ କରିବି; ସମ୍ପୂର୍ଣ୍ଣ ଜୟ କରିବ । ସେ ମୋ ପାଖରେ ନତଜାନୁ ହୋଇ କ୍ଷମାଭିକ୍ଷା କରିବେ । ପୁଣି ଶାହଜାହାନଙ୍କୁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେବେ । ଜନଶ୍ରୁତି ଅଛି, ରାଜପୁତ୍‌ମାର ବିଶ୍ୱାସଘାତକତା କରି ନ ପାରେ । ସେ କ'ଣ ପ୍ରତିଶ୍ରୁତି ଭଙ୍ଗ କରିବେ ?

କିନ୍ତୁ ଜୟଲାଭ କରିବା ଆମର ବର୍ତ୍ତମାନ ଏକାନ୍ତ ଆବଶ୍ୟକ । ଆମେ ଦୁହେଁ ସମ୍ମିଳିତ ବିଜୟ ଲଭ କରିବୁ । ମୁଁ ପ୍ରାର୍ଥନା କରିବ, ଆମେ ଯେପରି ଆକବରଙ୍କ ପ୍ରତିଷ୍ଠିତ ଫତେପୁର ସିକ୍ରୀରେ ଜୟଲାଭ କରୁ । ଅନେକ ଥର ଭାବିଛି, ଫତେପୁରକୁ ତୀର୍ଥଯାତ୍ରା କରିବ । ମୋର ନିଶ୍ଚିତ ବିଶ୍ୱାସ, ସେ ବିରାଟ ପୁରୁଷ ନିଜେ ବାହୁ ଉତ୍ତୋଳନ କରି ଆଶୀର୍ବାଦ କରିବେ । ସଲିମ୍ ଚିଶ୍‌ତିଙ୍କ ସମାଧି ପାଖରେ ଫତେପୁର-ବିଜୟନଗର ।

ନହବତ୍ ଖାନାର ପ୍ରସ୍ତର ମଣ୍ଡିତ ଅଙ୍ଗନରେ ଅଶ୍ୱଖୁରାର ଧ୍ୱନି ଆମେ ଶୁଣିପାରୁଛୁ । ସମ୍ରାଟ ଆକବରଙ୍କ ବାଦ୍ୟକାରଗଣ ଫତେପୁର ସିକ୍ରୀର ପଥରେ ଏଇ ନହବତ୍‌ଖାନାରୁ କ୍ୱଁ ବିଭିନ୍ନ ସ୍ୱରରେ ତାଙ୍କୁ ଅଭିନନ୍ଦନ ଜଣାଉଥିଲେ । ଦ୍ରୁତଗତିରେ ମୁଁ ଜୁମ୍ମା ମସଜିଦ୍ ନିକଟସ୍ଥ ବିରାଟ ଚଟାଣରେ ପହଞ୍ଚିଲି । ବୁଲନ୍ଦ୍ ଦରୱାଜା (୨) ପରି ବିରାଟ ତୋରଣ ପୃଥିବୀରେ ଆଉ କେଉଁଠି ଖୋଜିଲେ ହୁଏତ ମିଳିବ ନାହିଁ ।

---

(୧) ତୁର୍କୀ ସୁଲତାନ୍ ବାୟାଜେଦ ତୈମୁରଙ୍କ ସଙ୍ଗେ ଯୁଦ୍ଧ କରି ପରାଜିତ ହୋଇ ଥିଲେ । ତୈମୁରଙ୍କ ସୈନ୍ୟମାନେ କୃଷ୍ଣ ରଙ୍ଗର ଆଭରଣ ଧାରଣ କରୁଥିଲେ । କୃଷ୍ଣ ବର୍ଣ୍ଣକୁ ମୋଗଲ ଶାସକମାନେ ବିଜୟର ପ୍ରତୀକ ମନେ କରୁଥିଲେ ।

(୨) ବୁଲନ୍ଦ୍ ଅର୍ଥାତ୍ ବୃହତ୍, ଫତେପୁର ପ୍ରାସାଦ ତୋରଣର ନାମ । ଏଇ ତୋରଣ ମଧ୍ୟ ଦେଇ ସାତୋଟି ହସ୍ତୀ ପାଖାପାଖି ରହି ଭିତରକୁ ପ୍ରବେଶ କରି ପାରୁଥିଲେ । ଏଇ ତୋରଣର ନିର୍ମାଣ କୌଶଳ ଅପୂର୍ବ ।

ବିଜୟ ପରେ ଆକ୍‌ବର ଏଇ ବିରାଟ ହିତଳ ତୋରଣ ନିର୍ମାଣ କରାଇଥିଲେ । ଏଇ ତୋରଣ ବିଜୟ ସ୍ତମ୍ଭର ପରିକଳ୍ପନାର ଏକ ଅଂଶ ନ ଥିଲା,—ସମ୍ରାଟ ଏଇଠାରେ ତାଙ୍କ ସାମ୍ରାଜ୍ୟର ଆଶ୍ରୟପ୍ରାର୍ଥୀମାନଙ୍କୁ ଆଶ୍ରୟ ଦେବାର ପ୍ରତିଜ୍ଞା କରିଥିଲେ ।

ପ୍ରେମର ସୁଧା ବାରିରେ ଫତେପୁର ସିକ୍ରୀର ପଥର ଚଟାଣ ଯଦି ମୁଁ ଧୌତ କରିପାରନ୍ତି ! ମୁଁ କେବଳ ନଗ୍ନ ପାଦରେ ସେଇ ତୋରଣର ଚଟାଣ ଅତିକ୍ରମ କରି ଆସିଲି ।

ଯିଶୁ କହିଥିଲେ,—'ଏ ଜଗତ୍ ସେତୁ ମାତ୍ର; ସେଇ ସେତୁ ଅତିକ୍ରମ କର, କିନ୍ତୁ ଏଠାରେ କୌଣସି ଗୃହ ନିର୍ମାଣ କର ନାହିଁ । ଏଇ ଜଗତରେ ଯେ ଗୋଟିଏ ମୁହୂର୍ତ୍ତ ନିଷ୍ପାପ ଜୀବନ ଯାପନ କରେ, ସେ ଅନନ୍ତର ସନ୍ଧାନ ପାଏ । ଏଇ ଜଗତ୍ ଅନନ୍ତର ଏକ ମୁହୂର୍ତ୍ତ ମାତ୍ର । ସେଇ ମୁହୂର୍ତ୍ତଟି ଭକ୍ତିରେ ପୂର୍ଣ୍ଣ କରେ । ଅନ୍ୟ ସବୁ ମଣିଷର ଅଗୋଚର ।'

ଏଇ ଉକ୍ତି ଆରବୀ ଅକ୍ଷରରେ ତୋରଣ ଦ୍ୱାରରେ ଖୋଦିତ ହୋଇଛି ।

ଅଶ୍ୱ-ଖୁରକୃତ ତୋରଣ ମଧ୍ୟ ଦେଇ ମୁଁ ଜୁମ୍ମା ମସ୍‌ଜିଦ୍‌ରେ ପ୍ରବେଶ କଲି । ସମ୍ରାଟ ଆକବରଙ୍କ ରାଜ୍ୟରେ ପୃଥିବୀର ସକଳ ଶବ୍ଦ ନୀରବ ହୋଇଯାଏ । ଏଇ ରାଜ୍ୟ ଆଜି ସବୁ ଦିନ ପାଇଁ ପରିତ୍ୟକ୍ତ । ତଥାପି ମନେ ହୁଏ, କାଲି ଯେପରି ଏଇ ନଗରଟି ନିର୍ମିତ ହୋଇଥିଲା । ମନେ ହୁଏ, ଜୀବନର ଅଦୃଶ୍ୟ ପ୍ରସ୍ରବଣରେ ପରିଧୌତ ଆତ୍ମାକୁ ଉଦ୍‌ବୁଦ୍ଧ କରିବା ପାଇଁ ସୂର୍ଯ୍ୟାଲୋକ ସ୍ନାତ ପୃଥିବୀର ଏଇ ବୃହତ୍ତମ ମନ୍ଦିର ପ୍ରାଙ୍ଗଣ ଯେପରି ଅପେକ୍ଷା କରି ରହିଛି ।

ବିରାଟ ସୁନ୍ଦର ସ୍ତମ୍ଭଗୁଡ଼ିକ ଏଠାରେ ଚମତ୍କାର ଭାବେ ସୁବିନ୍ୟସ୍ତ । କେଉଁଠି କେଉଁଠି ସ୍ତମ୍ଭଗୁଡ଼ିକ ପ୍ରାଚୀରର ଛିଦ୍ର ସଂଲଗ୍ନ ସ୍ଥାନରେ ମିଶି ଯାଇଛି । ସ୍ତମ୍ଭ ଗୁଡ଼ିକଦ୍ୱାରା ମଧ୍ୟ ସ୍ଥଳରେ ଗୋଟିଏ ଚତୁଷ୍କୋଣ ନିର୍ମିତ ହୋଇଛି । ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଦୃଷ୍ଟି ପ୍ରସାରିତ କଲେ ମନରେ ଅଜ୍ଞାତର ସ୍ମୃତି ଜାଗିଉଠେ । ଶୁଭ୍ର ରେଶମ

ବସ୍ତ୍ର ପରିହିତ ମନୁଷ୍ୟମାନଙ୍କର ଶୋଭାଯାତ୍ରା ଚାଲିଛି । ସ୍ତମ୍ଭଶ୍ରେଣୀର ମଧ୍ୟ ଦେଇ ସେମାନେ ଦୀନ୍-ଇ-ଇଲାହି ଧର୍ମମତ ଗ୍ରହଣ କରି ନୂତନ ଦୃଷ୍ଟିରେ ଜୀବନ ଓ ଦର୍ଶନର ସ୍ୱପ୍ନ ଦେଖୁଥିନ୍ତି । ଯେଉଁ ଦିନ ଶିକ୍ଷାର୍ଥୀମାନଙ୍କ ପାଦସ୍ପର୍ଶରେ ଏହି ପ୍ରସ୍ତର ଖଣ୍ଡ ସବୁ ମୁଖରିତ ହୋଇ ଉଠୁଥିଲା, ତାହା ବହୁ ଦିନର କାହାଣୀ ନୁହେଁ । ଆଜି କିନ୍ତୁ ଏଠାରେ କେବଳ ମୋ'ରି ପଦରୁ ଧ୍ୱନି । ଏଠାରେ ହିଁ ସ୍ତମ୍ଭସଂଲଗ୍ନ କ୍ଷୁଦ୍ର ପ୍ରକୋଷ୍ଠରେ ଫତେପୁର ବିଶ୍ୱବିଦ୍ୟାଳୟ ଅବସ୍ଥିତ ଥିଲା । ଏହି ଫତେପୁରର ପୁଣ୍ୟ ଭୂମିରେ ହିଁ ସମ୍ରାଟ ଆକବରଙ୍କ ଉଦାର ମତର ଉନ୍ମେଷ ହୋଇଥିଲା । ସେହି ମତ ଅନୁସାରେ ଗଣିତ, ଜ୍ୟୋତିଷଶାସ୍ତ୍ର, ଇତିହାସ, ଦର୍ଶନକୁ କୋରାଣଠାରୁ ଉଚ୍ଚ ଆସନ ପ୍ରଦାନ କରାଯାଇଥିଲା । ଦିବାରାତ୍ରି ପଣ୍ଡିତ-ଗଣ ପୃଥିବୀର ବିଭିନ୍ନ ଭାଷାରେ ଲିଖିତ ଗ୍ରନ୍ଥସବୁ ପାର୍ସୀ ଭାଷାରେ ଅନୁବାଦ କରୁଥିଲେ ।

କିନ୍ତୁ ଆଜି ଆଉ ସେଠାରେ ସନ୍ଧିର ଆଲୋକ ଜଳୁ ନାହିଁ । ତରୁଣ ଜ୍ଞାନପିପାସୁ କେହି ମସ୍‌ଜିଦ୍‌ର ମୀନାର ପାଖରେ ଠିଆ ହୋଇ ଆକାଶରେ ନକ୍ଷତ୍ରର ଗତି ଲକ୍ଷ୍ୟ କରୁ ନାହିଁ । ଜୀବନର ସମସ୍ୟା ସମାଧାନ କରିବା ପାଇଁ କେହି ନିଭୃତ ଆଲୋଚନା କରୁନାହିଁ ।

ମୁଁ ସେ ସମାଧି ନିକଟରେ ଉପସ୍ଥିତ ହେଲି । ପୂଜା ବେଦିକା ଅତିକ୍ରମ କଲି । ତାହାର ଅଭ୍ୟନ୍ତରରେ ଥିଲା ସ୍ତମ୍ଭଶୀର୍ଷ ପ୍ରକୋଷ୍ଠରାଜି । ନିଖିଳ ପୃଥିବୀରେ ଆଉ କେଉଁଠି ଏପରି ଧର୍ମମନ୍ଦିର ଅଛି, ଯେଉଁଠି ମାତ୍ର ଜଣେ ମନୁଷ୍ୟର ଚେଷ୍ଟାରେ ଏତେ କମ୍ ସମୟ ମଧ୍ୟରେ ସୌନ୍ଦର୍ଯ୍ୟ ଅପରୂପ ରୂପ ପରିଗ୍ରହ କରିଛି ? ସେହି ଗମ୍ବୁଜର ନିମ୍ନରେ ବିରାଟ କକ୍ଷର ଅଭ୍ୟନ୍ତରରେ ପ୍ରାଚୀର ଓ ସ୍ତମ୍ଭର ବ୍ୟବଧାନ ମଧ୍ୟରେ କି ଅପରୂପ ସୌନ୍ଦର୍ଯ୍ୟ ଦୃଷ୍ଟି-ଗୋଚର ହୁଏ ! ଟିକିଏ ବି ସ୍ଥାନ ନାହିଁ, ଯେଉଁଠି କାରୁଶିଳ୍ପ, କାରୁକାର୍ଯ୍ୟ, ସୂକ୍ଷ୍ମ ରତ୍ନ, ମୀନାଶିଳ୍ପ ପ୍ରଭୃତି ଭାସ୍କର୍ଯ୍ୟର ବିଚିତ୍ର ସମନ୍ୱୟ ନାହିଁ ।

କେଉଁଠି ଅସଂଗତ ନାହିଁ, ଗୋଟିଏ ବର୍ଣ୍ଣ ଅନ୍ୟ ବର୍ଣ୍ଣଟି ଦ୍ୱାରା କେଉଁଠି କୋମଳତର, କେଉଁଠି ସମୃଦ୍ଧତର ହୋଇ ଉଠୁଛି । ଶିଳ୍ପୀର ଶିଳ୍ପ ନୈପୁଣ୍ୟର ପରିଚୟସୂଚକ ପ୍ରାର୍ଥନା ବେଦୀ ସମ୍ମୁଖରେ ଆଜି ବି ପ୍ରଦୀପଟିଏ ଜଳୁଛି । ମୁଁ ନତଜାନୁ ହୋଇ ପ୍ରାର୍ଥନା କରିବାକୁ ଚାହୁଁଥିଲି; କିନ୍ତୁ

ହଠାତ୍ କି ଏକ ଆନନ୍ଦ ଆବେଗରେ ଅଭିଭୂତ ହୋଇପଡ଼ିଲି । ମନେ ପଡ଼ିଲା, ସମରଖନ୍ଦର ଦିଲ୍‌ଖୁସ୍ ପ୍ରାସାଦ । ସେଇ ପ୍ରାସାଦ ହିଁ ମୃତ୍ୟୁଜୟୀ ତୈମୁରଙ୍କ ବାସସ୍ଥାନ ଥିଲା । ବାଦ୍‌ଶା ବାବର ସେଇ ପ୍ରାସାଦ ବିଷୟ ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଇରାନ୍ ଦେଶରେ ମୋ ପୂର୍ବ ପୁରୁଷଗଣ ସ୍ୱର୍ଗର ସ୍ୱପ୍ନ ଦେଖିଥିଲେ । ସେଇ କାହାଣୀ ମୋ ସ୍ମୃତିପଟରେ ହସିଉଠିଲା । ପ୍ରାଚୀର ଗାତ୍ରରେ ବିଚିତ୍ର ପୁଷ୍ପସବୁ ଜୀବନ୍ତ ହୋଇ ଉଠିଲେ । ପ୍ରାଚୀରରେ ଖୋଦିତ କୋରାଣର ଆରବୀ ଅକ୍ଷରଗୁଡ଼ିକ ଜୀବନ୍ତ ଫୁଲପରି ଇତସ୍ତତଃ ହେବାକୁ ଲାଗିଲେ ।

ମୋ ଆସିବା ସମ୍ବାଦ ସର୍ବତ୍ର ପ୍ରଚାରିତ ହୋଇଗଲା । ନିଷେଧ ସତ୍ତ୍ୱେ ବହୁ ଭିକ୍ଷୁକ ସମାଧି ସମ୍ମୁଖରେ ଉପସ୍ଥିତ ହେଲେ । ଚକ୍ଷୁରେ ଉନ୍ମାଦର ଦୃଷ୍ଟି ନେଇ ଜଣେ ସୁଦର୍ଶନ ଯୁବକ ଖୁବ୍ ଜୋରରେ ଚିତ୍କାର କରି ଉଠିଲେ—ଆଲ୍ଲାହ ଆକ୍‌ବର । ସେ ଧ୍ୱନି ଗମ୍ବୁଜର ଶୂନ୍ୟତାରେ ପ୍ରତିଧ୍ୱନିତ ହେଲା । ତୈମୁର ବଂଶଧରମାନଙ୍କ ପ୍ରତି ଏ ଧ୍ୱନି ଯେପରି ଥିଲା ଏକ ବିଦ୍ରୂପ । ବାସ୍ତବିକ୍ ଆମେ ଆଜି ଆଲ୍ଲାଙ୍କୁ ଭୁଲିଯାଇଛୁ ।

ସମାଧି ଅତିକ୍ରମ କରି ସ୍ତମ୍ଭ କକ୍ଷରେ ପହଞ୍ଚିଲି । ମୁଁ କିନ୍ତୁ ଭାରତ-ବର୍ଷର କଥା ହିଁ ଭାବୁଥିଲି । ହିନ୍ଦୁ ସ୍ଥାପତ୍ୟର ଆଦର୍ଶରେ ପରିକଳ୍ପିତ ସମ୍ରାଟ ଆକ୍‌ବରଙ୍କ ସ୍ତମ୍ଭଗୁଡ଼ିକ ନିରୀକ୍ଷଣ କଲି । ପ୍ରାର୍ଥନା ବେଦୀର ସମ୍ମୁଖରେ ଗୃହପାର୍ଶ୍ୱର ପଦ୍ମକୋରକଗୁଡ଼ିକ ନୀରବ ଭାଷାରେ ଗୌତମ ବୁଦ୍ଧଙ୍କ ଜୀବନ କାହାଣୀ କହୁଥିଲେ ।' ଶାକ୍ୟମୁନି ଗୌତମ ବୁଦ୍ଧ ବୋଧିସତ୍ତ୍ୱ ମୂଳରେ ଯେଉଁ ସତ୍ୟ ଉପଲବ୍ଧି କରିଥିଲେ, ତାହା ଏକଦା ତୈମୁରଙ୍କ ଚକ୍ଷୁରେ ଅତି କ୍ଷୀଣ ଛାୟା ସଂପାତ କରିଥିଲା । ତୈମୁର୍‌ବେଗ୍ ଶୈଶବରେ କୌଣସି ଜୀବନ୍ତ ପ୍ରାଣୀକୁ ଆଘାତ କରୁ ନ ଥିଲେ, ଏପରି କି ପିମ୍ପୁଡ଼ିଟିଏ ବି ପାଦରେ ଦଳୁ ନ ଥିଲେ ।

ଦିନେ ସମ୍ରାଟ ଅକବର ମୃଗୟା ଉଦ୍ଦେଶ୍ୟରେ ବାହାରିଥାଆନ୍ତି । ବନ୍ୟ ପଶୁଗଣ ଶିକାର ଚକ୍ରମଧ୍ୟରେ ପ୍ରବେଶ କରି ସାରିଲେଣି । ସର୍ବତ୍ର ଶିକାରର ବିପୁଳ ଉନ୍ମାଦନା । ଅସଂଖ୍ୟ ପଶୁଙ୍କ ମୃତ୍ୟୁ ଆସନ୍ନ । ଅକସ୍ମାତ୍ ସମ୍ରାଟ ଅଶ୍ୱ ସଂଯତ କଲେ । ସମାଧିସ୍ଥ ହୋଇ ପଡ଼ିଲେ । ଆଦେଶ ଦେଲେ—"ମୋ ରାଜ୍ୟରେ ଜୀବହତ୍ୟା ନିଷେଧ । ପ୍ରତ୍ୟେକ ଜୀବର

ଜୀବନ ପବନ ।” ସେହିଦିନ ହିଁ ଏକ ଅପରୂପ ସତ୍ୟର ଜ୍ୟୋତି ସମ୍ରାଟ ଆକବରଙ୍କୁ ଉଦ୍‌ଭାସିତ କରିଥିଲା ।

ସମାଧିର ଅନ୍ୟ ପ୍ରାନ୍ତରେ ଏକ ଗଭୀର ସ୍ତବ୍ଧତା । ସମାଚ୍ଛନ୍ନ କୋଣର ପ୍ରାର୍ଥନା ବେଦୀର ମର୍ମର ପଥରରେ ବିଶ୍ରାମ ନେଲି । ମଧ୍ୟାହ୍ନ ସୂର୍ଯ୍ୟର ପ୍ରଚଣ୍ଡ ରୌଦ୍ରରେ ଘର୍ମାକ୍ତ ହୋଇ ପଡ଼ିଥିଲି । ପ୍ରତି ଶିରାରେ ଉଦ୍‌ବେଗର ଚଞ୍ଚଳତା । ପ୍ରାଚୀର ପାର୍ଶ୍ୱରେ ମଥା ଆଉଜେଇ ନେଲି । ଛାୟା ଯେପରି ଜୁଆରକୁ ଅନୁସରଣ କରେ, ସେହିପରି ମୋତେ ତନ୍ଦ୍ରାଭାବ ଘୋଟିଆସିଲା । ମନେ ହେଲା, ଯେପରି ଗୋଟିଏ ଦେବଦୂତ ମୋ'ର ନିକଟରେ ଚାଲିଗଲା । ନିଦ୍ରା ଓ ଜାଗରଣରେ ମୁଁ କ୍ରମଶଃ ଗଭୀର ସମାଧିସ୍ଥ ହୋଇ ପଡ଼ିଲି । ତା'ପରେ ଯେପରି ଦେଖିଲି, ଉଚ୍ଚ ଏକ ପର୍ବତ ଶିଖର । ପୂର୍ବରୁ କେଉଁଠି ଯେପରି ଏଇ ଦୃଶ୍ୟ ଦେଖିଥିଲି । କ୍ରମଶଃ ଏଇ ଦୃଶ୍ୟ ଅସ୍ପଷ୍ଟରୁ ଅସ୍ପଷ୍ଟତର ହୋଇ ସରୋବର ନିକଟରେ ବିଲୀନ ହୋଇଗଲା । ପର୍ବତରେ ମୁଁ ଗୋଟିଏ ଗହ୍ୱର ଦେଖିପାରିଲି । ତାହା ପାର୍ଶ୍ୱରେ ଗବାକ୍ଷ ଆକାରରେ ଏକ ଚତୁଷ୍କୋଣାକାର ପଥ, ପ୍ରସ୍ତରରେ ଖୋଦିତ ଏକ ଅସ୍ପଷ୍ଟ ହସ୍ତୀ । ତାହା ଉପରେ ଗୋଟିଏ ମନୁଷ୍ୟର ମର୍ମର ମୂର୍ତ୍ତି । ଅପୂର୍ବ ଭାସ୍କର୍ଯ୍ୟ । ମୂର୍ତ୍ତିଟି ଜୀବନ୍ତ ମନେହେଲା । ସେ ମୂର୍ତ୍ତି ସ୍ଥାଣୁ । ଅଥଚ ଶୂନ୍ୟରେ ନିବଦ୍ଧ ସେଇ ମୂର୍ତ୍ତିର ମୃଦୁବାଣୀର ଗମ୍ଭୀର ଭାବ ମୋ ହୃଦୟରେ ଭୟର ସଞ୍ଚାର କଲା ।

ଏହାପରେ ପାଷାଣ ବକ୍ଷରେ ଆଲୋକ ଜଳିଉଠିଲା । ସରୋବରର ଜଳରେ ପ୍ରତିଫଳିତ ହୋଇ ଆଲୋକ ଶିଖା ଅଧିକ ଉଜ୍ଜ୍ୱଳ ଦେଖାଗଲା । ଜଳର ହୃଦୟରେ ସୁନାର ବୃତ୍ତଟିଏ ଅଙ୍କିତ ହୋଇଥିବା ପରି ଦେଖାଗଲା । କୌଣସି ଏକ ଅଶରୀରୀର ବାଣୀ ଶୁଣିବାକୁ ପାଇଲି—“ବହୁ ଦୂରରେ ଅରଣ୍ୟରେ ଜଣେ ତପସ୍ୱୀ ଧ୍ୟାନମଗ୍ନ ଅଛନ୍ତି । ତାଙ୍କ ଚକ୍ଷୁରୁ ଅଜ୍ଞାନ-ଅଞ୍ଜନ ଦୂରୀଭୂତ । ସେ ଉପଲବ୍ଧି କରିଛନ୍ତି—ମନୁଷ୍ୟ ଯାହା ଉପଭୋଗ କରେ, ଯେଉଁଥିପାଇଁ ସଂଗ୍ରାମ କରେ, ଯାହାପାଇଁ ପ୍ରାଣପାତ କରେ, ତାହାର କୌଣସି ମୂଲ୍ୟ ନାହିଁ । ହେ ରାଜକୁମାରୀ, ସେ ମହାପୁରୁଷ ପୁରୁଷୋତ୍ତମଙ୍କ ସାକ୍ଷାତ୍ ପାଇଛନ୍ତି । ତାଙ୍କର ଆଉ କୌଣସି ଆକାଂକ୍ଷା ନାହିଁ । ସକଳ ସ୍ୱର ତାଙ୍କ ପାଇଁ ଗୋଟିଏ ଧ୍ୱନିରେ ମିଶି ଯାଇଛି । ସକଳ ବର୍ଣ୍ଣବୈଚିତ୍ର୍ୟ ଗୋଟିଏ ମାତ୍ର ଆଲୋକ-ଶିଖାରେ ମିଳିତ ହୋଇଛି । ସେଇ ଆଲୋକର ଗୋଟିଏ ଶିଖା ତାଙ୍କ ଆତ୍ମାକୁ ଉଜ୍ଜ୍ୱଳ କରିଛି—ଈଶ୍ୱରଙ୍କର

ପ୍ରଶାନ୍ତ ମଧ୍ୟରେ ସେ ଆତ୍ମାର ବିଶାଳତା ଉପଲବ୍ଧି କରିଛନ୍ତି । ସେହି ହିଁ ଭାରତବର୍ଷର ଯଥାର୍ଥ ସମ୍ରାଟ......।"

ହଠାତ୍ ଚେତନା ଫେରିପାଇଲି—ଯେପରି କାହାରି ହସ୍ତ ମୋ ସ୍କନ୍ଧ ସ୍ପର୍ଶ କରିଛି । ଅନୁଭବ କଲି, ମୋର ଆତ୍ମା ସିଂହଳ ପରିଦର୍ଶନ କରି ଆସିଛି । ଥରେ ମୁଁ ଜଳପଥରେ ସୁରାଟରୁ ସିଂହଳ ଯାଇଥିଲି । ଅନୁରାଧା-ପୁରରେ ସେହି ତପସ୍ୱୀଙ୍କ ମର୍ମର ସୌଧ ଦର୍ଶନ କରିଥିଲି । ମୁଁ ଯେଉଁ ବାଣୀ ଶୁଣିଲି, ତାହା ଅତି ସ୍ପଷ୍ଟ ଥିଲା । ଦିଲ୍ଲୀର ଗ୍ରୀଷ୍ମାବାସରୁ ହିଁ ସେ ବାଣୀ ଆସୁଥିଲା ।

ସ୍ୱପ୍ନ ଜାଗରଣର ଆବର୍ତ୍ତନରେ ଅଭିଭୂତ ହୋଇ ପଡ଼ିଥିଲି । ଯେଉଁଠି ବସିଥିଲି, ମୋ ଶରୀର ଯେପରି ସେଇଠାରେ ସ୍ଥାଣୁପରି ଭୂମି-ନିବଦ୍ଧ ହୋଇ ସାରିଥିଲା । ତା'ପରେ ଅନୁଭବ କଲି, ବନୌଷଧି ନିଃସୃତ ଏକ ମୃଦୁ ନିର୍ଯ୍ୟାସର ସୁଗନ୍ଧ, ପ୍ରାର୍ଥନାଳୟର ପ୍ରବେଶଦ୍ୱାର ସମ୍ମୁଖରେ ରକ୍ଷିତ କାଂସ୍ୟ ପାତ୍ରୋତ୍‌ଥିତ ତୀବ୍ର କୃଷ୍ଣ ଧୂମରେଖା । ପ୍ରାର୍ଥନାଳୟର ଅଭ୍ୟନ୍ତରରେ ଦେଖିଲି ମନୁଷ୍ୟାକୃତି ଗୋଟିଏ ପ୍ରାଣୀ । ଆଶ୍ଚର୍ଯ୍ୟ ହେଲି, ପରେ ପରେ ଜାଣିଲି, ଶୀର୍ଣ୍ଣକାୟ ଏହି ମନୁଷ୍ୟଟି ରାଜ ପ୍ରହରୀଦ୍ୱାରା ବିତାଡ଼ିତ ଜନତା ମଧ୍ୟରୁ ଜଣେ । ସେ ହୁଏତ ଜାଣିଥିଲା, ସୁବର୍ଣ୍ଣ ପାତ୍ର ନିଃସୃତ କସ୍ତୁରୀ ଅଗୁରୁ ଗନ୍ଧହିଁ ସମ୍ରାଟ ଆକବରଙ୍କ ଇବାଦତ୍‌ଖାନାକୁ (୧) ଆମୋଦିତ କରୁଛି । ହୁଏତ ତାର ଉଦ୍ଦେଶ୍ୟ ଥିଲା, ସେଇ ବନସ୍ପତିର ଅର୍ଘ୍ୟ ଦେଇ ସେ ମୋତେ ସମ୍ଭାଷଣ କରିବ । ଆମେ ଦୁହେଁ ପରସ୍ପର ଚକ୍ଷୁ ମିଳାଇଲୁ । ମୁଁ ତାର ଚକ୍ଷୁରେ ଅନ୍ତରର ଗଭୀର ବେଦନା ରୂପାୟିତ ହୋଇଥିବା ଦେଖିପାରିଲି । ତାକୁ ମୋର ସବୁଠାରୁ ମୂଲ୍ୟବାନ୍ କଙ୍କଣଟି ଉପହାର ଦେଲି । ବାହାରକୁ ଆସିବା ପରେ ମୋ ମନରେ ଗଭୀର ତୃପ୍ତିର ଭାବ ଆସିଲା, ଯେପରି ମେଘ କୋଳରେ ସୂର୍ଯ୍ୟରଶ୍ମି ।

ବିଜୟିନୀର ଗର୍ବରେ ପଥ ଅତିକ୍ରମ କରିବାକୁ ଲାଗିଲି । ଯୁଦ୍ଧରେ ଜୟଲାଭ କରିବା ପରେ ମୋର ରାଣୀବହ୍ନା ଭାଇଙ୍କ ଏଇ ଫତେପୁରରେ ହିଁ

(୧) ଇବାଦତ୍ ଖାନା—ପ୍ରାର୍ଥନାଳୟ, ଫତେପୁର ସିକ୍ରୀରେ ଆକବରଙ୍କ ଧର୍ମସଭା । ପ୍ରତି ଗୁରୁବାର ସୂର୍ଯ୍ୟାସ୍ତ ସମୟରୁ ଶୁକ୍ରବାର ନମାଜ ଶେଷ ହେବାଯାଏ ସଭାର ଅଧିବେଶନ ବସୁଥିଲା । ସେଥିରେ ଧର୍ମ, ବିଜ୍ଞାନ, ଦର୍ଶନ, ଇତିହାସ, ଜ୍ୟୋତିଷ ପ୍ରଭୃତି ଶାସ୍ତ୍ର ଆଲୋଚିତ ହେଉଥିଲା ।

ଜୀବନ ଅତିବାହିତ କରିବି । ଏଇଠାରେ ତୌହିଦ୍-ଇ-ଇଲାହୀ ପୁନରୁଜ୍ଜୀବିତ ହେବ । ସମ୍ରାଟ ଆକବରଙ୍କ ଉଦାର ମତବାଦ ପୁଣି ପ୍ରବର୍ତ୍ତିତ ହେବ । ଆଲ୍ଲାଙ୍କ କରୁଣା ସମସ୍ତ ପ୍ରାଣୀଙ୍କ ଉପରେ ସମଭାବରେ ବର୍ଷିତ ହେବ ।

ଗମ୍ବୁଜର ନିମ୍ନରେ ଥିବା ଏକ ବୃହତ୍ କକ୍ଷକୁ ମୁଁ ଫେରିଲି । ମୁଁ ଯେ କେବଳ ଅତୀତ ଘଟଣା ସ୍ମରଣ କରୁଥିଲି, ତା ନୁହେଁ; ଅନ୍ଧକାରାଚ୍ଛନ୍ନ ଗହ୍ୱରରୁ ମୋ ଭବିଷ୍ୟତ ଆନନ୍ଦର ଆଭାସ ପାଉଥିଲି ।

କିନ୍ତୁ ସେତେବେଳେ ପ୍ରାର୍ଥନା କରି ପାରିଲି ନାହିଁ । ତେଣୁ ସ୍ଥିର କଲି, ଦ୍ୱିପ୍ରହରର ନମାଜ ପାଇଁ ଅପେକ୍ଷା କରିବି । ପରଦିନ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ବିଶ୍ରାମ କରିବି । ରାଜପରିବାର ପାଇଁ ନିର୍ଦ୍ଦିଷ୍ଟ ଗୋଟିଏ କ୍ଷୁଦ୍ର ପ୍ରାସାଦରେ ରାତି ଅତିବାହିତ କରିବି । ରାଜ ତୋରଣ ପାର୍ଶ୍ୱରେ ମୋ ପାଇଁ ଶକଟ ଅପେକ୍ଷା କରିଥିଲା । ମୁଁ ସହରର ପ୍ରାଚୀନ ଅଞ୍ଚଳରେ ପ୍ରବେଶ କଲି । ପ୍ରାଚୀନତା ଆଜି ମୋତେ ନୂତନ ପରି ଆକର୍ଷଣ କଲା ।

ପ୍ରଥମେ ମୁଁ ମହଲ-ଇ-ଖାସ ସମ୍ମୁଖରେ ନତ ହୋଇ ଦରବାର ପ୍ରାଙ୍ଗଣ ଅତିକ୍ରମ କଲି । ଏକ ସମୟରେ ଫତେପୁର ସିକ୍ରୀ ଥିଲା ଭାରତବର୍ଷର ହୃତ୍‌ପିଣ୍ଡ ଏବଂ ମୋ ସମ୍ମୁଖସ୍ଥ କ୍ଷୁଦ୍ର ପ୍ରାସାଦଟି ଥିଲା ଫତେପୁରର ପ୍ରାଣ । ଏଇଠାରେ କି ମହାପୁରୁଷ ଆକବର ତାଙ୍କର ବ୍ରାହ୍ମଣ ବନ୍ଧୁ ବୀରବଲ ସଙ୍ଗେ ବାସ କରୁଥିଲେ । ଏଇ ପ୍ରାସାଦଟି ମୋତେ ହୁମାୟୁନ ବାଦସାହାଙ୍କ ଶିବିର ସ୍ମରଣ କରାଇ ଦେଲା, ଯେଉଁଠାରେ ଆକବର ଜନ୍ମ ହୋଇଥିଲେ । ସେଠାରେ କୌଣସି ରାଜକୀୟ ସମ୍ପଦ ନ ଥିଲା । ସମ୍ରାଟ ହୁମାୟୁନ୍ ସେଇ କସ୍ତୁରୀ ସୈନ୍ୟମାନଙ୍କ ମଧ୍ୟରେ ବାଣ୍ଟିଦେଇ କହିଲେ, "ଆଜି ଯେମିତି ଏଇ କସ୍ତୁରୀର ସୌରଭ ସମଗ୍ର ଶିବିରରେ ବ୍ୟାପ୍ତ ହୋଇ ପଡୁଛି, ସେମିତି ମୋ ପୁଅର ଖ୍ୟାତି ଯେପରି ପୃଥିବୀରେ ବ୍ୟାପ୍ତ ହୋଇପଡ଼େ ।"

ସମ୍ରାଟ ଆକବରଙ୍କ ସମାଧିପ୍ରାସାଦ ଐଶ୍ୱର୍ଯ୍ୟମୟ, କିନ୍ତୁ ତାଙ୍କ ରାଜପ୍ରାସାଦ ଥିଲା ଆଡ଼ମ୍ବର ବିହୀନ । ପ୍ରାସାଦର ମଧ୍ୟ ସ୍ଥଳରେ ଥିଲା ସମ୍ରାଟଙ୍କ ଶୟନ କକ୍ଷ । ସେଇ କକ୍ଷର ନାମ ଥିଲା "ଖ୍ୱାଆ—ଆବ୍—ବାଗ୍" (ସ୍ୱପ୍ନପୁରୀ) ।

'ହାକାର୍' ମୋ ମଥା ଉପରେ ଆଲୋକର ଆବରଣ ଉନ୍ମୁକ୍ତ କରିଦେଲ। ମୁଁ ପ୍ରାସାଦ ସମ୍ମୁଖସ୍ଥ ଶୁଭ୍ର ସେତୁ ଅତିକ୍ରମ କରି ସରୋବର ମଧ୍ୟସ୍ଥିତ ମର୍ମର ଦ୍ୱୀପରେ ପହଞ୍ଚିଲି। ଝରଣାର ଜଳ କଲ୍ଲୋଳ ଏଠାରେ କର୍ଣ୍ଣଗୋଚର ହୁଏ ନାହିଁ। କିନ୍ତୁ ତୁର୍କୀ-ବେଗମ୍‌ଙ୍କ ପ୍ରାସାଦ ଏଠାରେ ଜଳରେ ପ୍ରତିବିମ୍ବିତ ହେଉଛି। ସେଇ ଅପ୍‌ସରା ମହଲର ପ୍ରତିଟି ଶ୍ୱେତ ପ୍ରସ୍ତର ଯେମିତି ଖୋଦିତ ଗଜଦନ୍ତ! ସ୍ତମ୍ଭଗାତ୍ରର ପ୍ରାଚୀରରେ ସମ୍ରାଟଙ୍କ ପ୍ରିୟ ଫଳ ସମ୍ଭାର ଅଙ୍ଗୁର, ବେଦାନା, ତରଭୁଜ ଆଦି ଖୋଦିତ ହୋଇଛି।

ଆଜି କାହିଁକି ଏଇ ଜଳାଶୟର ସକଳ ପଦାର୍ଥ ମୋତେ ସ୍ପର୍ଶାପ୍ଲୁତ ବାସ୍ତବ ଜୀବନଠାରୁ ମଧ୍ୟ ଅଧିକ ବାସ୍ତବ ମନେହେଉଛି? ଏଇ ମହଲଟି ମୋତେ ଅତି ଆପଣାର ମନେ ହେଲା। ମୁଁ ଖୁବ୍ ଶୀଘ୍ର ସ୍ୱପ୍ନପୁଷ୍ଟ ପଥରେ ଚାଲିବାକୁ ଲାଗିଲି। ମନେ ହେଲା, କେହି ଜଣେ ଯେପରି ମୋ' ପାଇଁ ଅପେକ୍ଷା କରିଛି। କିଏ ସେହି ମହାପୁରୁଷ! ବୃଦ୍ଧମାନଙ୍କ ମଧ୍ୟରେ ବୃଦ୍ଧତମ, ଦରିଦ୍ରମାନଙ୍କ ପ୍ରତି ସ୍ନେହଶୀଳ, ଯାହାଙ୍କ ମଣିବନ୍ଧରେ କଙ୍କଣ ଶୋଭିତ?

ଯଦିଓ ଏଇ କକ୍ଷଟି ଆକାରରେ କ୍ଷୁଦ୍ର, ତଥାପି ଏଥିରେ ଅପୂର୍ବ ବର୍ଣ୍ଣ ସାମଞ୍ଜସ୍ୟ ଅଛି। ବିଭିନ୍ନ ବର୍ଣ୍ଣଚ୍ଛଟା ଐକ୍ୟତାନ ବାଦ୍ୟର ସୁରପରି ସୁସଙ୍ଗତ। ଶୈଶବରେ ପ୍ରାଚୀର ଗାତ୍ରରେ ମୁଁ ଆଠଟି ଚିତ୍ର ଦେଖିଥିଲି, ତାହା ଏବେ ବି ମୋର ସ୍ପଷ୍ଟ ମନେ ପଡ଼େ। ଗୋଟିଏ ଚିତ୍ରରେ ଥିଲେ ରକ୍ତବସନ ପରିହିତ ଜଣେ ପୁରୁଷ, ତାଙ୍କର ଅଧରପୃଷ୍ଠରେ ନିବଦ୍ଧ ଅଙ୍ଗୁଳି। ତାଙ୍କ ପାର୍ଶ୍ୱବର୍ତ୍ତିନୀ ନାରୀ ଦୂରକୁ ଅଙ୍ଗୁଳି ନିର୍ଦ୍ଦେଶ କରି କ'ଣ ଯେପରି ଇଙ୍ଗିତ ଦେଉଥିଲେ। ଆଉ ଜଣେ ବ୍ୟକ୍ତି ନଗରକୁ ପଶ୍ଚାତରେ ରଖି ନୌକାରୋହଣ କରୁଥିଲେ। ଶିଶୁଟିଏ ଆଶ୍ଚର୍ଯ୍ୟ ହୋଇ ପ୍ରାଚୀର ଗାତ୍ରର ମିଳ ତୋରଣ ଅନ୍ତରାଳରେ ପିତାମହଙ୍କ ଗଚ୍ଛିତ ଗୁପ୍ତଧନ ଅନୁସନ୍ଧାନ କରୁଛି। ରାଜପ୍ରାସାଦର ଦ୍ୱାର ଉପରେ ସ୍ୱର୍ଣ୍ଣାକ୍ଷରରେ ଖୋଦିତ ପାର୍‌ସୀ କବିତାର ତାତ୍ପର୍ଯ୍ୟ ଯେପରି ସେ ଅନୁସନ୍ଧାନ କରୁଥିଲା, "ଏଇ ଦରଜାର ଧୂଳିକଣା ହୁରୀର କଳା ଆଖିର ସୁରମା ହୋଇଉଠୁ। ଯେଉଁମାନେ ଦେବଦୂତ ପରି ଶ୍ରଦ୍ଧାରେ ତୁମ ଦରଜାରେ ମସ୍ତକ ଅବନତ କରନ୍ତି, ସେମାନେ ଧୂଳିକଣା ସ୍ପର୍ଶ କରି ଶୁଦ୍ଧ ତାରକା ପରି ଉଜ୍ଜ୍ୱଳ ହୋଇଉଠିବେ।"

ଶିଶୁର ଛବିଟି ଗବାକ୍ଷ ଗାତ୍ର ଉପରେ ଅଙ୍କିତ । ଚିତ୍ରଗୁଡ଼ିକ ଦେଖି ଖୁବ୍ ବିସ୍ମିତ ହେଲି । ଜୈନିକ ଗାତ୍ରରେ ଅଙ୍କିତ ବୁଦ୍ଧଦେବଙ୍କର ଗୋଟିଏ ଚିତ୍ର ଅଛି । ସେ ମୂର୍ତ୍ତିଟି ନୀଳାଭ-ମନ୍ଦିରରେ ସ୍ଥାପିତ ରକ୍ତ ବର୍ଣ୍ଣ-ସ୍ୱର୍ଣ୍ଣାଭ ପରିଚ୍ଛଦ ଭୂଷିତ, ଶିରରେ କ୍ଷୁଦ୍ର ଗୋଟିଏ ମୁକୁଟ । ସ୍କନ୍ଧର ପାର୍ଶ୍ୱରେ ଇତସ୍ତତଃ ବିକ୍ଷିପ୍ତ ନରମୁଣ୍ଡ କଟାପଟ ଖଣ୍ଡିତ ନରଦେହର ଅଙ୍ଗ ପ୍ରତ୍ୟଙ୍ଗ—କେଉଁଟି ପୀତାଭ ରକ୍ତବର୍ଣ୍ଣ, କେଉଁଟି କୃଷ୍ଣବର୍ଣ୍ଣ, କେଉଁଟି ଶୁଭ୍ର, କେଉଁଟି ବା ସ୍ୱର୍ଣ୍ଣ ପ୍ରଭ,—ଗୋଟିଏ ନରମୁଣ୍ଡ ମୁକୁଟ ଶୋଭିତ । ମୋର ମନେ ହେଲା, ଯେପରି ଏଇ ମୂର୍ତ୍ତିଟି ସ୍ୱୟଂ ଆକବରଙ୍କ ପ୍ରତିମୂର୍ତ୍ତି—ତାଙ୍କ ଚତୁଃପାର୍ଶ୍ୱରେ ପରାଜିତ ଶତ୍ରୁ, ପରଲୋକର ଅଭିଯାତ୍ରୀ, ଆଉ କିଛି ଭାବିବାକୁ ସାହସ ପାଉ ନାହିଁ । ଗୋଟିଏ ଚିତ୍ରରେ ଅଛି-ଜଣେ ଦେବଦୂତ ଅନ୍ଧକାର ଗହ୍ୱରରୁ ବାହାରି ଆସୁଛନ୍ତି—ଗହ୍ୱର ମୁଖଟି ସ୍ୱଳ୍ପ ଖୋଦିତ ପ୍ରସ୍ତର ଖଣ୍ଡ । ଉପରେ ଯୁଗଳ ମୟୂର ଚିତ୍ରିତ । ଦେବଦୂତଙ୍କ ମୁକୁଟ ମୁକ୍ତାହାର ପରିଶୋଭିତ – ପାଳକଗଣ ଊର୍ଦ୍ଧ୍ୱମୁଖୀ । ଦେବତାଙ୍କ ପକ୍ଷଦ୍ୱୟ ତୁଷାରଶୁଭ୍ର—ସ୍ୱର୍ଗର ବିହଙ୍ଗମ ପରି ସୁନ୍ଦର । ତାଙ୍କର ଚଞ୍ଚଳ ପରିଚ୍ଛଦ ସ୍ୱର୍ଣ୍ଣାଭ ନୀଳ, ଲୋହିତ,—କଟି ଦେଶରେ ଶୁଭ୍ରବସ୍ତ୍ର ବିଲମ୍ବିତ । ତାଙ୍କର ବାହୁବନ୍ଧ ଗୋଟିଏ ନବଜାତ ଶିଶୁ । ଏଇ ଶିଶୁ କ'ଣ ଶାହଜାଦା ସେଲିମ୍ ? ସେଲିମ୍ ଚିଶ୍ତିଙ୍କ ଆଶୀର୍ବାଦରେ ତାଙ୍କର ଜନ୍ମ । ଜନ୍ମ ପୂର୍ବରୁ ସେ ରାଜକୁମାର ଏଇ ଗୁହା ଅଭ୍ୟନ୍ତରରେ ବାସ କରୁଥିଲେ । ଆଜି ବି ମୋର ସେହି ବିଶ୍ୱାସ ଅବିଚଳିତ । କିନ୍ତୁ ଫତେପୁର ସିକ୍ରିର ଅତୀତ ସ୍ମୃତିର କାହାଣୀ କେହି ତ ଆଲୋଚନା କରୁନାହିଁ !

ଯଦି ମୋର ପିତାମହ ଜାହାଙ୍ଗୀର ଜନ୍ମ ଗ୍ରହଣ ନ କରିଥାନ୍ତେ, ତେବେ କ'ଣ ସମ୍ରାଟ ଆକବରଙ୍କ ରାଜ୍ୟ ଧ୍ୱଂସ ହୋଇ ଯାଇଥାନ୍ତା ? ମୋ ମସ୍ତିଷ୍କରେ ଚିନ୍ତାର ସ୍ରୋତ ବହି ଚାଲିଛି । ଏଇ ଗୃହରେ ଚିର ନିଦ୍ରାରେ ଶାୟିତ ମହାପୁରୁଷଙ୍କ ବଂଶରେ ଜନ୍ମ ଗ୍ରହଣ କରିବାର ତାତ୍ପର୍ଯ୍ୟ ମୁଁ କିଛି କିଛି ଉପଲବ୍ଧି କଲି ।

ହଠାତ୍ ମୋ କର୍ଣ୍ଣକୁହରରେ ଏକ ମୃଦୁ କରୁଣ ସଙ୍ଗୀତର ଧ୍ୱନି ପ୍ରବେଶ କରୁଛି । ସ୍ୱର୍ଗଲୋକରୁ ସମ୍ରାଟ ଆକବରଙ୍କ ଗାୟକମାନଙ୍କ ସଙ୍ଗୀତର ମୂର୍ଚ୍ଛନା ଭାସି ଆସୁଛି ଯେପରି ! କେଉଁ ଅଲୌକିକ ଶାନ୍ତ

ମୋତେ ଯଦି ସେଇ ସ୍ୱର୍ଗଲୋକର ସଙ୍ଗୀତ ଶୁଣିବାର ଶକ୍ତି ଦିଅନ୍ତା ! ମୁଁ ମୋ ପାପୁଲିରେ ମୁହଁମଣ୍ଡଳ ଆବୃତ କଲି—ମନଶ୍ଚକ୍ଷୁରେ ଦେଖିଲି, ମୁଁ ଯେପରି ସେଇ ପୁରୁଣା ଯୁଗକୁ ଫେରି ଯାଇଛି । ଯେତେବେଳେ ଖା-ଆକ୍-ବାଗ୍‌ର ପ୍ରତିଟି ପ୍ରାସାଦ ସଙ୍ଗୀତରେ ମୁଖରିତ ହୋଇ ଉଠୁଥିଲା ଏବଂ ସନ୍ଧ୍ୟାର ପବିତ୍ର ପବନରେ ସୁମଧୁର ସଙ୍ଗୀତ ମୂର୍ଚ୍ଛନା ଭାସି ଆସୁଥିଲା, ଅସଂଖ୍ୟ ବାଦ୍ୟ ଯନ୍ତ୍ର ସେଇ ସଙ୍ଗୀତରେ ସ୍ୱର ମିଳାଉଥିଲେ । ପ୍ରଭାତର ପ୍ରଥମ ଭାଗରେ ସଙ୍ଗୀତ ଥିଲା କୋମଳ, ଦ୍ୱିତୀୟ ଭାଗରେ ବହୁସ୍ୱରର ସଂଯୋଜନାରେ ବହୁ-ବାଦ୍ୟଯନ୍ତ୍ରର ଏକତାନ ଓ କରତାଳି କଲରୋଳ ଅପୂର୍ବ ପରିବେଶ ସୃଷ୍ଟି କରୁଥିଲା । ଦିବସ ଶେଷରେ ଯେତେବେଳେ ସମ୍ରାଟ ଆକବରଙ୍କ ଉପରେ ଭଗବାନଙ୍କ ଆଶୀର୍ବାଦ ବୃଷ୍ଟି କରାଯାଉଥିଲା, ସେତେବେଳେ ସମସ୍ତ ସଙ୍ଗୀତ ହୋଇ ଉଠୁଥିଲା ମନ୍ତ୍ରମୁଗ୍ଧ । ଜରଥୃଷ୍ଟଙ୍କ ଉପାସନା ମନ୍ଦିରରେ ବହୁବାର ଜଳୁଥିବା ପବିତ୍ର ଅଗ୍ନି ଯେପରି ଉପାସକମାନଙ୍କ ନୟନରେ ଦୀପ୍ତି ସଞ୍ଚାର କରେ; ସେହିପରି ସନ୍ଧ୍ୟାର ସଙ୍ଗୀତ ମନୁଷ୍ୟ କର୍ଣ୍ଣରେ ଆନନ୍ଦ ସଞ୍ଚାର କରୁଥିଲା ।

ମୁଁ ଅଳିନ୍ଦ ବାହାରକୁ ଆସିଲି । ସଙ୍ଗୀତ ନିସ୍ତବ୍ଧ ହୋଇ ଯାଇଛି । ସରୋବର ପାଖରେ ଦଳେ ମଣିଷ ଅପେକ୍ଷା କରିଥିଲେ । ସେମାନଙ୍କ ହାତରେ ବଂଶୀ ଓ ତାରଯନ୍ତ୍ର । ଉତ୍ତେଜିତ କଣ୍ଠରେ ସେମାନେ ପରସ୍ପର ସଙ୍ଗେ ଆଲୋଚନା କରୁଥିଲେ । ସେମାନଙ୍କ ବିଭିନ୍ନ ରଙ୍ଗର ଉଷ୍ଣୀଷସବୁ ପରସ୍ପର ମିଶିଯାଇଥିଲା । ସେମାନଙ୍କ ମଧ୍ୟରୁ ଜଣେ ମୋତେ ଚିହ୍ନିପାରିଲେ । ତାଙ୍କ ଚକ୍ଷୁରେ ଦୀପ୍ତି ଖେଳିଗଲା । ଏ ସେହି ଦୀର୍ଘକାୟ ବ୍ୟକ୍ତି । ସେ ଦଳର ଲୋକଙ୍କଠାରୁ ଦୂରେଇ ଗଲେ ଓ ବୀଣାର ଝଙ୍କାର ଦେଇ ଗୀତଟିଏ ଆରମ୍ଭ କଲେ ।

ଏଇ ସ୍ୱର ହିଁ ତାନ୍‌ସେନଙ୍କ ଅଭିନନ୍ଦନ, ମେବାରର ରାଣୀ ମୀରାବାଈଙ୍କର ଆତ୍ମ ନିବେଦନ । ମୀରାବାଈ ଶୈଶବରୁ ହିଁ ଶ୍ରୀକୃଷ୍ଣଙ୍କ ମୂର୍ତ୍ତିକୁ ଭଲ ପାଉଥିଲେ । ସେଇ ଭଲ ପାଇବା ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କୁ ଅଭିଭୂତ କରି ରଖିଥିଲା । ତାଙ୍କର ସର୍ବସ୍ୱ ସେ ଶ୍ରୀକୃଷ୍ଣଙ୍କୁ ଉତ୍ସର୍ଗ କରିଥିଲେ । ତାଙ୍କର ଲଲାଟ ଅନ୍ୟ କେଉଁ ମଣିଷର ସମ୍ମୁଖରେ ଅବନମିତ ହୋଇ ନ ଥିଲା········ ।

ସେଇ ସଙ୍ଗୀତ ମୋତେ ଶ୍ରୀକୃଷ୍ଣଙ୍କ ରାଜ୍ୟ ବୃନ୍ଦାବନକୁ ନେଇଗଲା । ବୃନ୍ଦାବନରେ ଚିରବସନ୍ତ । ଶ୍ରୀକୃଷ୍ଣ ସେଠାରେ ଗୋପୀଗଣଙ୍କ ସମ୍ମୁଖରେ ବଂଶୀବାଦନ କରନ୍ତି । ସେଠାରେ ମୁଁ ଦେଖିଲି, ରୂପସୀ ମୀରା ଦେବତାଙ୍କ ମୂର୍ତ୍ତି ସମ୍ମୁଖରେ ରହସ୍ୟମୟ ନୃତ୍ୟରେ ଉତ୍ସର୍ଗିତା । ମୀରା ତାଙ୍କ ଜୀବନର ସର୍ବସ୍ୱ ଶ୍ରୀକୃଷ୍ଣଙ୍କ ଚରଣରେ ନିବେଦନ କରିଥିଲେ। ଶ୍ରୀକୃଷ୍ଣ କହନ୍ତି, 'ଯେଉଁ ମଣିଷ ଶ୍ରୀକୃଷ୍ଣଙ୍କ ଭଜନ କରେ, ତାହାର ବିନାଶ ନାହିଁ ।' ଏଇ ଶ୍ରୀକୃଷ୍ଣ ହିଁ ବିଷ୍ଣୁଙ୍କ ଅବତାର । ସେ ପୃଥିବୀର ପାପଭାର ଲାଘବ କରିବାପାଇଁ ମନୁଷ୍ୟ ଦେହ ଧାରଣ କରିଥିଲେ । ଶ୍ରୀକୃଷ୍ଣଙ୍କ ଆଲୋକ ସକଳ ଆତ୍ମାକୁ ଉଦ୍‌ବୁଦ୍ଧ କରେ ।

କିନ୍ତୁ ଏଇ ଛିନ୍ନ ବସ୍ତ୍ର-ପରିହିତ ପୁରୁଷଟି କିଏ ? କି ଗମ୍ଭୀର ଦୁଃଖମୟ ତା'ର ସ୍ୱର ! ଫତେପୁରର ବିଷାଦ ପୁରୀରେ ମୋ ପଥ ଅତିକ୍ରମ କରି ସେ ମୋତେ ମୋ ସ୍ୱପ୍ନ ଭିତରେ ସାବଧାନ କରି ଦେଇଛି । ସେ କ'ଣ ଆମର ବଂଶର ସନ୍ତାନ ? ସେ କ'ଣ ଆମର ପରି ଗୋଟିଏ ପ୍ରେରଣାରେ ଉଦ୍‌ବୁଦ୍ଧ ? (୧)

ଲୋକଟି ମୀରାବାଈଙ୍କର ଗୋଟିଏ କୃଷ୍ଣଭଜନ ଗାଇ ଗୁଲିଛି । କ୍ରମଶଃ ତାର ସଙ୍ଗୀତ ଆଲୋକମୟ ହୋଇଉଠିଲା । ସେ ସଙ୍ଗୀତ ମୋ ଅନ୍ତର ମଥିତ କରିଦେଲା ।

ମୁଁ ମୋ ରାଜ୍ୟ ପରିତ୍ୟାଗ କରିଛି, ମୁଁ ଆଉ ରାଜମହିଷୀ ନାହିଁ; ରାଜ୍ୟ ଓ ଐଶ୍ୱର୍ଯ୍ୟ ତ୍ୟାଗ କରିଛି । ମୀରା ତୁମର ଦାସୀ – ତୁମର ଆଶ୍ରୟ-ପ୍ରାର୍ଥିନୀ । ମୀରା ତା'ର ଦେହ, ତା'ର ମନ ତୁମକୁ ସମର୍ପଣ କରିଛି ।

ଅନ୍ତିମ ଜୀବନରେ ମୀରାବାଈ ଦ୍ୱାରକାର ମନ୍ଦିରରେ ଆଶ୍ରୟ ନେଇଥିଲେ । ଆମରଣ ଆଶ୍ରୟବାସିନୀ । ସେଇ ମନ୍ଦିର, ମନ୍ଦିରର ପ୍ରଦୀପ ପୁଷ୍ପ ସମ୍ଭାର ସହିତ ସେ ମୋ ମନଶ୍ଚକ୍ଷୁରେ ମୂର୍ତ୍ତ ହୋଇ ଉଠିଲେ । ଆଶ୍ଚର୍ଯ୍ୟ ଏଇ ନାରୀ ! ମୀରାଦେବୀ ତାଙ୍କର କଳାମାଣିକ ନିକଟରେ ଆତ୍ମୋତ୍ସର୍ଗ କରିଥିଲେ ।

(୧) ଖସରୁଙ୍କ ପୁତ୍ର କାବ୍‌ବକ୍‌ସ ସଂସାର ତ୍ୟାଗ କରି ଫକୀର ହୋଇ ଯାଇଥିଲେ ଓ ଗୀତ ଗାଇ ଗାଇ ବୁଲୁଥିଲେ । ବୋଧହୁଏ ଜାହାନାରା ତାଙ୍କରି ଗୀତର ସୂଚନା ଦେଇଛନ୍ତି ।

ଆଜି ମଣିଷ ଦେବତାଙ୍କ ସମ୍ମୁଖରେ ଜୀବ ବଳି ଦେଉଛି । ମୀରାଙ୍କ ମୂର୍ତ୍ତି ଦେବତାଙ୍କ ମୂର୍ତ୍ତିର ବିପରୀତ ଦିଗରେ ସ୍ଥାପନ କରୁଛି । ପୁରୁଷୋତ୍ତମ ବଂଶୀଧାରୀଙ୍କ ପ୍ରେମ ଇହଜଗତରେ ମୀରାବାଈଙ୍କୁ ତପସ୍ୱୀ କରୁଛି । ପର ଜଗତରେ ନାରାୟଣୀଙ୍କ ଆସନ ପ୍ରଦାନ କରୁଛି ।

ମୋ ରକ୍ତରେ ଅଗ୍ନିଶିଖା ଛୁଟି ଚାଲିଛି । ଯଦି ଅନ୍ଧକାର ଭାରତ-ବର୍ଷକୁ ସମାଚ୍ଛନ୍ନ କରେ, ଦାରା ଯୁଦ୍ଧରେ ପରାଜିତ ହୁଅନ୍ତି, ଯଦି ମୋ ପ୍ରିୟତମଙ୍କର ମୃତ୍ୟୁ ହୁଏ, ତେବେ ମୁଁ ତାଙ୍କର ସ୍ମୃତି ପୂଜା କରିବି — ସେ ମୋର ଚିର ବସନ୍ତୋଦ୍ୟାନର ସମ୍ରାଟ୍ । ସେ ମୋର ଶ୍ରୀକୃଷ୍ଣ ।

ଦଶ୍-ପାଁଚଶୀ (୧) କ୍ରୀଡ଼ା ଘର ଅତିକ୍ରମ କରି ଦେଓ୍ୱାନ-ଇ-ଖାସରେ ପହଞ୍ଚିଲି । ସ୍ୱୟଂ ବାଦଶାହ ଗୋଟିଏ କ୍ଷୁଦ୍ର ମର୍ମର ଆସନରେ ବସି ଏଠାରେ ସତରଞ୍ଜି ଖେଳୁଥିଲେ । ଜୀବନ୍ତ କ୍ରୀତଦାସୀମାନେ ତାଙ୍କ ସତରଞ୍ଜିର ଚଳନ୍ତା ଗୋଟି । ମୁଁ ମନରେ ଶ୍ରଦ୍ଧାପୂର୍ଣ୍ଣ ଭୟ ନେଇ ସେଇ କଳ୍ପଲୋକର ପ୍ରାସାଦ ସମ୍ମୁଖରେ ଠିଆ ହେଲି । ଭାବିଲି, ଦିନେ ଏଠାରେ କି ଐଶ୍ୱର୍ଯ୍ୟ ବିଳାସ ନ ଥିଲା ।

ଦେଓ୍ୱାନ୍-ଇ-ଖାସର ଶ୍ରେଣୀବଦ୍ଧ ଗବାକ୍ଷ ମଧ୍ୟ ଦେଇ ଦୃଷ୍ଟି ନିକ୍ଷେପ କଲେ ମନେହୁଏ, ପ୍ରାସାଦଟି ଦ୍ୱିତଳ । କିନ୍ତୁ ଅଭ୍ୟନ୍ତରରେ ପ୍ରବେଶ କଲେ ମନେହୁଏ ଯେ ପ୍ରାସାଦଟି ଗୋଟିଏ ବିରାଟ କକ୍ଷ । ମୁଁ ଗବାକ୍ଷ ପ୍ରାନ୍ତରେ ବିଶ୍ରାମ କଲି, ସ୍ଥାନଟି ସୁଶୀତଳ । ସେଇ ସଙ୍ଗୀତର ମୂର୍ଚ୍ଛନା ଏବେ ବି ମୋ କାନରେ ବାଜୁଥିଲା । ମୋର ସମସ୍ତ ଶକ୍ତି ସଂଗ୍ରହ କରି ମୁଁ ଯେପରି ଭାରତର ସେଇ ପବିତ୍ର ମନ୍ଦିର ରକ୍ଷା କରୁଥିଲି । କାରଣ ଦାନବ ସେ ମନ୍ଦିର ଅଧିକାର କରିନେବାକୁ ଆସୁଥିଲା ।

କକ୍ଷ ମଧ୍ୟସ୍ଥଳରେ ସ୍ତମ୍ଭଟି ଅପୂର୍ବ । ମନେ ହୁଏ, ଯେପରି ପ୍ରକାଣ୍ଡ ପୁଷ୍ପର ମୃଣାଳ ! କକ୍ଷର ମଧ୍ୟସ୍ଥଳରେ ସ୍ଥାପିତ ହୋଇଥିଲା ସମ୍ରାଟ ଆକବରଙ୍କ ରାଜସିଂହାସନ । ମୋତେ କଳ୍ପନାରେ ଜଣାଗଲା, ସମ୍ରାଟ ଯେପରି ବିରାଟ ବିଶ୍ୱ ବୃକ୍ଷର କାଣ୍ଡ ! ସେ ବୃକ୍ଷର ପତ୍ରପଲ୍ଲବ ଥିଲା ଅସୀମ ଶୂନ୍ୟ । ତାର ଫଳ ସୂର୍ଯ୍ୟ-ଚନ୍ଦ୍ର-ତାରକା ! ମେରୁ ପର୍ବତ ଶୀର୍ଷରେ ସେ

(୧) ମହିଷୀମାନଙ୍କ ସଙ୍ଗେ ଆକବର ଏଇ ପ୍ରାଙ୍ଗଣରେ କଉଡ଼ି ଖେଳୁଥିଲେ ।

ବୃକ୍ଷଟି ଜ୍ଞାନବୃକ୍ଷରେ ପରିଣତ ହେଲା । ତା' ନିକଟରେ ବିଷ୍ଣୁ ଦେବତାଙ୍କ ଅପରୂପ ସ୍ତମ୍ଭ । ମେରୁ ଶିଖରରେ ଦେବତାଙ୍କ ପ୍ରତୀକ ସମାସୀନ ।

ସମ୍ରାଟ ଆକବର ହିଁ ଭାରତର ଅଜ୍ଞାନ ଅନ୍ଧକାର ଦୂର କରିଛନ୍ତି, ସେ ହିଁ ତୈମୁରଙ୍କ ରାଜ ବଂଶକୁ ଗୌରବୋଜ୍ଜ୍ୱଳ କରିଛନ୍ତି ।

ତାଙ୍କର ଗବାକ୍ଷ ଦେଇ ମୁଁ ପ୍ରାଚୀର ପାର୍ଶ୍ୱରେ ଶ୍ରେଣୀବଦ୍ଧ ଆସନଗୁଡ଼ିକୁ ଅନାଇଲି । ମନେହେଲା, ଯେପରି ସିଂହାସନ ପାର୍ଶ୍ୱରେ ଅମ୍ବର ରାଜା ବିହାରୀ ମଲ୍ ସମାସୀନ ! ତାଙ୍କର କନ୍ୟା ଯୋଧବାଈଙ୍କ ସଙ୍ଗେ ସମ୍ରାଟଙ୍କ ବିବାହ ହୋଇଥିଲା । ସେହି ତ ଜାହାଙ୍ଗୀରଙ୍କ ଜନନୀ ।

ଆଉ ଜଣକୁ ମଧ୍ୟ ଦେଖିଲି, ବୀର ସେନାପତି ମାନସିଂହ, ତୈମୁର ବଂଶର କ୍ଷମତା ସୁଦୃଢ଼ ରଖିବା ପାଇଁ ସେ ବହୁ ଯୁଦ୍ଧରେ ଜୟଲାଭ କରିଥିଲେ ।

ମଧ୍ୟସ୍ଥଳରେ ସ୍ତମ୍ଭକୁ କେନ୍ଦ୍ରକରି ଚତୁଷ୍କ ନିର୍ମାଣ କରାଯାଇଛି । ସୃଜନୀ ଶକ୍ତିର ପ୍ରତୀକ ଚତୁର୍ଦ୍ଦିଗ ସ୍ପର୍ଶୀ ଗୃହଗୋଟି ସେଥିରୁ ନିର୍ମିତ ହୋଇ-ଥିଲା । ମୁଁ ସତେ ବା ଦେଖିଲି ········ ସମ୍ରାଟଙ୍କ ଅମାତ୍ୟଗଣ ତାଙ୍କ ସିଂହାସନ ଅଭିମୁଖେ ଅଗ୍ରସର ହେଉଛନ୍ତି । ପ୍ରଥମେ ଟୋଡ଼ର ମଲ, ବୀରଯୋଦ୍ଧା ଓ କୋଷାଧ୍ୟକ୍ଷ, ତାଙ୍କର ଦୟାରୁ ସମସ୍ତ ଦରିଦ୍ର ପ୍ରଜା ଶସ୍ୟ କର୍ତ୍ତନ ସମୟରେ ସୁବିଚାର ପାଉଥିଲେ । ତା'ପରେ ଦେଖିଲି, ସମ୍ରାଟଙ୍କ ପ୍ରିୟ ରାଜା ବୀରବଲ । ତାଙ୍କର ସୂକ୍ଷ୍ମ ପରିହାସଗୁଡ଼ିକ ଏବେ ବି ଶ୍ରବଣକୁ ଆନନ୍ଦ ଦିଏ । ହଠାତ୍ ଦେଓ୍ୱାନ-ଇ-ଖାସରେ ବିରାଟ ପ୍ରଶାନ୍ତି ଅନୁଭବ କଲି । ପ୍ରଧାନ ଅମାତ୍ୟ ଆବୁଲ୍ ଫାଜଲଙ୍କ ଆଗମନ ଧ୍ୟାନ-ଇ-ଇଲାହୀ ପରିକଳ୍ପନା କରି ଆବୁଲ୍ ଫାଜଲ ବିଶ୍ୱବ୍ୟାପୀ ଅଗ୍ନି ପ୍ରଜ୍ଜ୍ୱଳିତ କରିଥିଲେ । କକ୍ଷର ଦୂରତମ କୋଣରୁ ଅସନ୍ତୋଷର ଗୁଞ୍ଜନ ମୁଁ ଶୁଣି ପାରୁଛି ।······

କଳ୍ପନାରେ ମୁଁ ଦେଖି ପାରୁଛି — ଅତୀତ ଦିନପରି ସମ୍ରାଟ ଆକବର ସିଂହାସନରେ ଦଣ୍ଡାୟମାନ । ଅତି ବିନମ୍ର ବେଶ, ବିନୀତ ରାଜଶ୍ରୀ । କିନ୍ତୁ କି ଦୃଢ଼ତାବ୍ୟଞ୍ଜକ ଦୃଷ୍ଟି ! ସେ ଦୃଷ୍ଟିରେ ଅତ୍ୟାଗ୍ରହୀ ସଙ୍କୁଚିତ

ହୋଇପଡ଼େ । ପାଣ୍ଡିତ ଆଶ୍ରୟର ସନ୍ଧାନ ପାଏ । ତାଙ୍କ ମୁଖମଣ୍ଡଳରେ ଆତ୍ମାର ଦୀପ୍ତିଶିଖା ପ୍ରତିଭାତ । ଏଇ ବିଦେଶୀ ବଂଶଜାତ ରାଜପୁତ୍ରଙ୍କ ରାଜ୍ୟ ସହସ୍ର ଯୋଜନବ୍ୟାପୀ — ପୂର୍ବରେ ଢାକାନଗରୀ, ପଶ୍ଚିମରେ କାବୁଲ, ଉତ୍ତରରେ କାଶ୍ମୀର, ଦକ୍ଷିଣରେ ଅହମ୍ମଦନଗର । ଏଇ ବିରାଟ ରାଜ୍ୟର ପ୍ରଜାଗଣଙ୍କ କଲ୍ୟାଣ ପାଇଁ ତାଙ୍କର କି ସଦାଜାଗ୍ରତ ଦୃଷ୍ଟି ! ମନେ-ହୁଏ, କେଉଁ ଗ୍ରାମଣୀ ତାଙ୍କ ଗ୍ରାମବାସୀଙ୍କ ସୁଖ ସୁବିଧା ପାଇଁ ଏତେ ଉଦ୍‌ବିଗ୍ନ ନୁହନ୍ତି (୧) । ଶିରା ଯେପରି ହୃତ୍‌ପିଣ୍ଡର ଆଧାରରୁ ଶରୀରର ବିଭିନ୍ନ ଅଂଶକୁ ରକ୍ତ ସଂଚାର କରେ, ସେହିପରି ସମ୍ରାଟଙ୍କ ଆଦେଶ ବହନ କରି ସମ୍ରାଟଙ୍କ ଅମାତ୍ୟଗଣ ଦେଶ ଶାସନ କରୁଥିଲେ ।

ମୋର ପ୍ରତ୍ୟେକଟି କାର୍ଯ୍ୟ ଆଲ୍ଲାହଙ୍କ ଉଦ୍ଦେଶ୍ୟରେ ନିୟୋଜିତ ହେଉ । ଏଇ ଉଦ୍ଦେଶ୍ୟରେ ସମ୍ରାଟ ଇତସ୍ତତଃ ବିକ୍ଷିପ୍ତ ଖଣ୍ଡଗୁଡ଼ିକ ଏକତ୍ର କରିବାକୁ ଚେଷ୍ଟା କରୁଥିଲେ । ସୂର୍ଯ୍ୟାଲୋକ ଯେପରି ପତ୍ର ଶିରାରେ ଶିରାରେ ଉଦ୍ଭିଦ ମଧ୍ୟରେ ପ୍ରାଣସଞ୍ଚାର କରେ, ସମ୍ରାଟ ଆକବର ସେହିପରି ସାମ୍ରାଜ୍ୟର ସମସ୍ତ ଅଂଶରେ ପ୍ରାଣ ସଞ୍ଚାର କରୁଥିଲେ । ତେଣୁ ରାଜ୍ୟର ପ୍ରଜାକୁଳ ବିଶ୍ୱପାଳକ ବିଷ୍ଣୁଙ୍କ ଅବତାର ଆକବରଙ୍କ ସମ୍ମୁଖରେ କୃତଜ୍ଞ ଚିତ୍ତରେ ଅର୍ଘ୍ୟ ପ୍ରଦାନ କରୁଥିଲେ । ଜିଜିୟା କର ଉଚ୍ଛେଦ କରାଯାଇଥିଲେ ମଧ୍ୟ ସମ୍ରାଟଙ୍କ ରାଜକୋଷ ପରିପୂର୍ଣ୍ଣ ଥିଲା ।

ଆଲ୍ଲାଙ୍କ ପ୍ରତିନିଧି ସମ୍ରାଟ ଆକବର ଘୋଷଣା କରିଥିଲେ, "ମଣିଷର ଅନ୍ତର ସହସ୍ର ପଥରେ ତାର ଲକ୍ଷ୍ୟର ସନ୍ଧାନ କରେ । ସେଇ ଶକ୍ତିମାନ୍ ସମ୍ରାଟ ପ୍ରତ୍ୟେକ ମଣିଷକୁ ଏଇ ସତ୍ୟ ପ୍ରମାଣ କରିବାର ଅବାଧ ଅଧିକାର ଦେଇଥିଲେ । ସେଦିନ କୋଣାର୍କର ସୂର୍ଯ୍ୟ ମନ୍ଦିରରେ, ଆବୁ ପର୍ବତର ଜୈନ ମନ୍ଦିରରେ, ଅଜନ୍ତା, ଏଲୋରାର ଗୁମ୍ଫା ଅଭ୍ୟନ୍ତରରେ ପ୍ରସ୍ତରନିର୍ମିତ ଦେବମୂର୍ତ୍ତିଗୁଡ଼ିକ ଜୀବନ୍ତ ହୋଇ ଉଠି ନ ଥିଲେ କି ? ସମଗ୍ର ଦେଶବ୍ୟାପୀ ଅସଂଖ୍ୟ ଦେବତାଙ୍କ ଆବାହସରେ ମସ୍ତକ ଅବନତ କରି ମଣିଷ କ'ଣ ଏଇ ସତ୍ୟ ପ୍ରଚାର କରୁନାହିଁ ? ଯେତେବେଳେ ଅସଂଖ୍ୟ ତୀର୍ଥଯାତ୍ରୀ ପୂତ୍ୟେତୋୟା ସ୍ରୋତସ୍ୱତୀ ଜଳରେ ଅବଗାହନ କରି ଆତ୍ମାଶୁଦ୍ଧି

(୧) ଭାରତର ପ୍ରତ୍ୟେକ ଗ୍ରାମାଞ୍ଚଳରେ ଶାସନ ବ୍ୟବସ୍ଥା ଥିଲା । ଗ୍ରାମ-ବୃଦ୍ଧ ଅଥବା ଗ୍ରାମଣୀ ଉପରେ ଗ୍ରାମବାସୀଙ୍କ ରକ୍ଷଣାବେକ୍ଷଣ ନିର୍ଭର କରୁଥିଲା ।

ହୁଅନ୍ତ, ଯେତେବେଳେ ସେମାନଙ୍କ ସଙ୍ଗୀତରେ ସମ୍ରାଟଙ୍କ ପ୍ରାର୍ଥନାର ସ୍ୱର ମିଶିଯାଏ ନା କି ?

ସେଇ ସୁଦୂର ଅତୀତର ଐଶ୍ୱର୍ଯ୍ୟ ମଧ୍ୟରେ ମୁଁ କାହାର ଦୀପ୍ତି, କାହାର ଉଜ୍ଜ୍ୱଳତା ଦେଖୁଛି ? ମୁଁ ଦେଖୁଛି, ଦିଲ୍ଲୀର ମୟୂର-ସିଂହାସନ ସର୍ବଦା ପ୍ରହରୀବେଷ୍ଟିତ । କଳ୍ପନାରେ ମୋ ଆଖି ଆଗରେ ଭାସି ଉଠୁଛି; ମୋର ସମ୍ରାଟ-ପିତା ତାଙ୍କ ପୂର୍ବ ଗୌରବ ବର୍ଦ୍ଧନ କରି ମୟୂର ସିଂହାସନରେ ସମାସୀନ । ବିରାଟ ଚନ୍ଦ୍ରାତପ ତଳେ ଦ୍ୱାଦଶ ସ୍ତମ୍ଭରୁ ସହସ୍ର ପ୍ରସ୍ତରର ଉଜ୍ଜ୍ୱଳ ଆଭା ସ୍ଫୁରିତ ହେଉଛି । ନା, ନା, ସେ ଆଭା ସେଇ ସିଂହାସନର ହିଁ ଦୀପ୍ତି । ତା'ପରେ ଦେଖିଲି, ସମ୍ରାଟ ଯେପରି ଏକ ପିଞ୍ଜରାରେ ଆବଦ୍ଧ । ତୈମୁର୍ ବୟାଜିଦ୍‌ଙ୍କୁ ଯେଉଁ ପିଞ୍ଜରାରେ ବନ୍ଦୀ କରିଥିଲେ, ତାହା ତ ଏ ପିଞ୍ଜରାଠାରୁ କମ୍ ଭୀଷଣ ନ ଥିଲା ! କିନ୍ତୁ ଫତେପୁର ସିକ୍ରୀରେ ଥିଲା ବିଶ୍ୱ-କଳ୍ପଦ୍ରୁମ ।

'ହାକର୍' ଯେତେବେଳେ ପୁନର୍ବାର ମୋ ଉପରେ ଆଲୋକର ଆବରଣ ଉନ୍ମୋଚନ କରିଦେଲା, ମୋର ମନେ ହେଲା, ଆଗ୍ରା ବହୁଦୂର । ମୋ ଅତୀତ ବର୍ତ୍ତମାନରେ ପରିଣତ ହେଲା; ଭବିଷ୍ୟତ ମନେହେଲା ଯେପରି ଆଉ ଗୋଟିଏ ମାତ୍ର ଦିନ— । ଏଇ ଶୁଣ, ନହବତ୍‌ଖାନାରେ ତାନସେନଙ୍କ ସୁମଧୁର ସ୍ୱର ବାଜିଉଠୁଛି । ସେଇ ସ୍ୱର ଦ୍ୱାର ଖୋଲି ନଦୀକୁ ଅଭିନନ୍ଦନ କରିବ । ଦ୍ୱାର ଖୋଲିଛନ୍ତି ଫତେପୁର —ସେଠାରେ ସେ ପ୍ରଥମ ଦରବାରରେ ଉଦ୍‌ବୋଧନ ଦେବେ ।

ମହଲ-ଇ-ଖାସର ମଞ୍ଜୁଳା ବିଦ୍ୟାଳୟ ମଧ୍ୟଦେଇ ମୁଁ ରାଜପଥ ଉପରକୁ ଆସିଲି । ପଥଗୁଡ଼ିକ ପ୍ରଶସ୍ତ, ପ୍ରତ୍ୟେକଟି ପଥ ପ୍ରାସାଦ ସଂଲଗ୍ନ । କିନ୍ତୁ ପ୍ରତ୍ୟେକ ପଥର ସ୍ୱତନ୍ତ୍ର ରୂପ ଅଛି । ଗୋଟିଏ ଅନ୍ୟଟିଠାରୁ ଭିନ୍ନ । ଏବେ ତୀବ୍ର ସୂର୍ଯ୍ୟ କିରଣରେ କୌଣସି ପ୍ରାଣୀ ଦୃଷ୍ଟିପଥରେ ପଡ଼ୁ ନାହାନ୍ତି । କିନ୍ତୁ ପବନ ଯେପରି କୌଣସି ଆଶଙ୍କାରେ କମ୍ପମାନ ।

ବିପରୀତ ଦିଗରେ ପାଞ୍ଚ-ମହଲ୍ (୧) । ମନେହୁଏ, ପ୍ରାସାଦଟି ଯେପରି ଗୋଟିଏ ସୁଲଳିତ ପଦ୍ୟ ; ପ୍ରାସାଦର ପାଞ୍ଚଟି ମହଲ ସୁଚିକ୍କଣ

(୧) ପାଞ୍ଚ-ମହଲ୍ ପ୍ରାସାଦ ବୌଦ୍ଧ ବିହାରର ସ୍ଥାପିତ ରୀତି ଅନୁସାରେ ନିର୍ମିତ ହୋଇଥିଲା । ସମ୍ରାଟ ଆକବର ଧର୍ମ-ସମନ୍ୱୟର ପଦ୍ଧତି ଭୂମି ରୂପେ ଶିଳ୍ପ-ସମନ୍ୱୟ କରିବାକୁ ଚେଷ୍ଟା କରିଥିଲେ ।

ଖୋଦିତ ପ୍ରସ୍ତର ଖଣ୍ଡରେ ନିର୍ମିତ । ସର୍ବ ନିମ୍ନ ଚଟାଣରେ ପ୍ରସ୍ତର ସଂଖ୍ୟା ଅପେକ୍ଷାକୃତ କମ୍ । ଗୋଟିଏ ଚନ୍ଦ୍ରାତପ ସ୍ତମ୍ଭ ଉପରେ ସ୍ଥାପିତ ।

ଅଦ୍ଭୁତ ବ୍ୟକ୍ତି ପରି ମୁଁ ପ୍ରାସାଦରେ ପ୍ରବେଶ କଲି । ପ୍ରଥମ କକ୍ଷରେ ମୁଁ ଦୀନ-ଇ-ଇଲାହି ସମ୍ପ୍ରଦାୟର ଶିଷ୍ୟମାନଙ୍କୁ ଦେଖିଲି । ସେମାନଙ୍କ ମଧ୍ୟରୁ ଅନେକଙ୍କୁ ପୂର୍ବେ ଦେଓ୍ୱାନ୍-ଇ-ଖାସରେ ଦେଖିଥିଲି । ମନଶ୍ଚକ୍ଷୁରେ ଦେଖିଲି, ପରସ୍ପର ମଧ୍ୟରେ ସେମାନେ ଗଭୀର ଆଲୋଚନାରେ ବ୍ୟାପୃତ । ସ୍ତମ୍ଭ ପାର୍ଶ୍ୱରେ ମଥା ଉପରେ ଖୋଦିତ ହୋଇଛି ପବିତ୍ର ପଦ୍ମଫୁଲ । ନିମ୍ନମୁଖୀ ପୁଷ୍ପଦଳ ଉନ୍ମୁକ୍ତ ରହିଛି, ଯେପରି ଧରଣୀକୁ ବକ୍ଷରେ ଧାରଣ କରିଛି ! ସମ୍ରାଟ୍ ଆକବର ବୌଦ୍ଧ ସନ୍ନ୍ୟାସୀଙ୍କ ପରି ସଂସାର ତ୍ୟାଗ କରିବା ପାଇଁ ମଣିଷକୁ ଉପଦେଶ ଦେଉଥିଲେ । ଦୀନ-ଇ-ଇଲାହି ଧର୍ମର ନିର୍ଦ୍ଦେଶ ଥିଲା ଯେ, ଇଲାହି ଶିଷ୍ୟ-ଗଣ ପ୍ରଥମ ଅବସ୍ଥାରେ ସେମାନଙ୍କର ସକଳ ପାର୍ଥିବ ସମ୍ପଦ ସମ୍ରାଟଙ୍କୁ ନିବେଦନ କରିବାକୁ ପ୍ରସ୍ତୁତ ରହିବା ଉଚିତ ।

ମୁଁ ଦ୍ୱିତୀୟ ମହଲକୁ ଆରୋହଣ କଲି । ଦ୍ୱିତୀୟ ଅବସ୍ଥା ବିଷୟ ଚିନ୍ତା କଲି । ଏହି ଅବସ୍ଥାରେ ଇଲାହି ଶିଷ୍ୟଗଣ ସମ୍ରାଟଙ୍କ ପାଇଁ ପ୍ରାଣତ୍ୟାଗ କରିବାକୁ ପ୍ରସ୍ତୁତ ରହନ୍ତି । ଏଇ ପାର୍ଥିବ ସାମ୍ରାଜ୍ୟ ଗଠନର ଆବଶ୍ୟକତା ସ୍ୱୀକାର୍ଯ୍ୟ ।

ଏଠାରେ ଛପନଟି ସ୍ତମ୍ଭ ଅଛି । କେଉଁଟି ଅନ୍ୟଟି ପରି ନୁହେଁ । କି ଅପରୂପ ଏଇ ସ୍ତମ୍ଭ ସବୁ ! ପ୍ରତ୍ୟେକ ସ୍ତମ୍ଭ ଏକ ଏକ ନିଜସ୍ୱ ବାଣୀ ପ୍ରଚାର କରୁଛି । ସବୁଠାରୁ ସୁନ୍ଦର ସ୍ତମ୍ଭଟିକୁ ମୁଁ ଆଲିଙ୍ଗନ କଲି । ସଙ୍ଗେ ସଙ୍ଗେ ସମ୍ରାଟ ଆକବରଙ୍କ ସାମ୍ରାଜ୍ୟର ସ୍ତମ୍ଭ ସଦୃଶ ଅମାତ୍ୟଗଣଙ୍କ କଥା ମନକୁ ଆସିଲା । ମୁଁ ସ୍ତମ୍ଭଟିରେ ମୋ ମଥା ଲଗାଇଲି । ସେ ମୁହୂର୍ତ୍ତରେ କକ୍ଷ ମଧ୍ୟ ଦେଇ ଝଲକାଏ ପବନ ବହିଗଲା । ପବନ ମୋତେ ଅବସନ୍ନ ବସନ୍ତର ପଲ୍ଲବଟିଏ ଉପହାର ଦେଇଗଲା । ସେ ପଲ୍ଲବଟି ଅତୀତର ବାର୍ତ୍ତା ନେଇ ଯେପରି ମୋ ନିକଟକୁ ଆସିଥିଲା । ମୁଁ ମୋ ଭିତରେ ପୁଣି ଥରେ ଜୀବନର ତୀବ୍ର ଜ୍ୱାଳା ଅନୁଭବ କଲି । ଚଟାଣ ଉପରେ ଅସ୍ଥିର, ଦ୍ରୁତରେ ପଦଚାରଣ କରିବାକୁ ଲାଗିଲି । ଆମେ ଭାଇ ଭଉଣୀମାନେ 'ଏଇ ଚଟାଣ

ଉପରେ ମୁଁ ଶୈଶବର ଖେଳ ଖେଳୁଥିଲୁ । ସେଦିନଗୁଡ଼ିକ ମୋର ବେଶ୍ ମନେଅଛି । କେମିତି ଦାରାଶୁକୋ ତାଙ୍କ ପଗଡ଼ିରେ ମୟୂର ପୁଚ୍ଛଟିଏ ଲଗାଇ ବାରମ୍ବାର ମୁଣ୍ଡ ହଲାଇ 'ରାଜା, ରାଜା' ପାଟି କରି ଖେଳୁଥିଲେ । ଆଉରଙ୍ଗଜେବ ପ୍ରାସାଦ କୋଣରେ ବସି ମାଳା ଗଡ଼ାଉଥିଲେ । ଗୋଲାପୀ ଶାଢ଼ୀ ପିନ୍ଧି ମୋ ସାନ ଭଉଣୀମାନେ ସ୍ତମ୍ଭ ଚାରିପଟେ ଲୁଚକାଳି ଖେଳୁଥିଲେ ।

ମୁଁ ସେ ସ୍ତମ୍ଭକୁ ଆଲିଙ୍ଗନ କଲି । ସେଠାରେ ନୀରବରେ ଠିଆ ହୋଇ ରହିଲି ଏବଂ ଦେଖିଲି ।

ସତେ ଯେପରି ଝଲକାଏ ବିକ୍ଷୁବ୍ଧ ପବନ ଦାରାଙ୍କ ମୟୂର ପୁଚ୍ଛକୁ ଉଡ଼ାଇନେଲା । ଆଉରଙ୍ଗଜେବ ମାଳା ହସ୍ତରେ, ମସ୍ତକ ଉତ୍ତୋଳନ କରି ଅନାଇଲେ—ତାଙ୍କ ଦୃଷ୍ଟିରେ ତାଚ୍ଛଲ୍ୟର ହସ । ଦାରା ଠିଆ ହୋଇ ଥିଲେ—ବିହ୍ୱଳ ଦୃଷ୍ଟି ।

ସେତେବେଳେ ଆମ୍ଭେମାନେ ଥିଲୁ ଶିଶୁ—ଆମ ଭିତରୁ କେହି ଭବିଷ୍ୟତ ଭାଗ୍ୟ ଜାଣି ନ ଥିଲେ । ଅତୀତର ସ୍ମୃତି ଓ ବର୍ତ୍ତମାନକୁ ଭୁଲି ଯିବାକୁ ମୁଁ ତୃଷାପୂ ମହଲକୁ ଗଲି । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗରେ ତୀବ୍ର ଶିହରଣ ଅନୁଭବ କଲି । ଆମ ଭିତରୁ ଅନେକେ ସମ୍ରାଟ ଆକ୍‌ବରଙ୍କ ଭାରତବର୍ଷ ପାଇଁ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ନୁହନ୍ତି । ବିଂଶତି ସ୍ତମ୍ଭର ଅନ୍ତରାଳରେ ମୁଁ ନଗରର ବିଭିନ୍ନ ସ୍ଥାନ ଦେଖି ପାରିଲି । ଅବଶ୍ୟ ବର୍ତ୍ତମାନ ନଗରର ସାମାନ୍ୟ ଅଂଶ ମାତ୍ର ଅବଶିଷ୍ଟ ଅଛି । ଇନ୍ଦ୍ରିୟାତୀତ ଦୃଷ୍ଟି ନେଇ ମୁଁ ଅନେକ କିଛି ଦେଖିଲି, କାରଣ ଫତେପୁର ସମ୍ପର୍କରେ ଆବୁଲ ଫାଜଲଙ୍କ ବିବରଣୀ ମୁଁ ପଢ଼ିଥିଲି । ଚିତ୍ରଶାଳା ନିରୀକ୍ଷଣ କଲି, ଏଇଠାରେ ଭାରତର ବିଭିନ୍ନ ପ୍ରାନ୍ତରୁ ଆମନ୍ତ୍ରିତ ଇଲାହି-ଶିଷ୍ୟଗଣ ସମବେତ ହେଉଥିଲେ । ପୃଥିବୀର ନାନା ଦେଶରୁ ବହୁ ଜ୍ଞାନୀ, ଗୁଣୀ ବ୍ୟକ୍ତି ଆସିଥିଲେ । ଏଇ ନଗରୀର ଖ୍ୟାତି ଗଜନୀ ପରି ବିଶ୍ୱ ବିଖ୍ୟାତ ହୋଇ ଉଠିଥିଲା । ସମ୍ରାଟ ଆକ୍‌ବର ଓ ଆବୁଲ ଫାଜଲଙ୍କ ନିର୍ଦ୍ଦେଶରେ ଇଲାହି ଶିଷ୍ୟଗଣ ଦୀକ୍ଷିତ ହେଉଥିଲେ । ଇରାନୀୟ ଚିତ୍ରକର କେବଳ ଯେ ହିରାଟ୍ ଓ ସିରାଜରୁ ଚିତ୍ର ସଂଗ୍ରହ କରି ଆଣୁଥିଲେ, ତାହା ନୁହେଁ । ଖିଲାଫତ ଯୁଗର ଓ ପ୍ରାଚୀନ ଚୀନ ଦେଶର ବହୁ ଚିତ୍ର ସେମାନେ ସଂଗ୍ରହ

କରିଥିଲେ । ଏ ଚିତ୍ରଶାଳାରେ ମହିମାମଣ୍ଡିତ ଅଜ୍ଞାତ ଯୁଗର ଛବି ଏବଂ ସମସ୍ତ ତରୁଣ ଚିତ୍ରଶିଳ୍ପୀମାନଙ୍କ ଅନ୍ତରରେ ଅପୂର୍ବ ଉତ୍ସାହ ସୃଷ୍ଟି କରୁଥିଲା । ଭାରତର ପୃଷ୍ଠରୁ ସଂଗୃହୀତ ରସରେ ସେମାନେ ଚିତ୍ରଶାଳରେ ରଙ୍ଗ-କ୍ରୀଡ଼ାର ନୂତନ ସ୍ୱପ୍ନ ଦେଖୁଥିଲେ । ନୂତନ ଚିତ୍ରକରମାନେ ସୃଷ୍ଟି କରୁଥିଲେ ନିତ୍ୟ ନୂତନ ଅପରୂପ ଚ୍ଛଦପଟ । ସେମାନଙ୍କ କୃତିତ୍ୱ ତୈମୁର ରଜବଂଶର ଗ୍ରନ୍ଥାଗାରର ସୁବିଖ୍ୟାତ ପ୍ରାଚୀନ ଚିତ୍ରାବଳୀ ସହିତ ତୁଳନୀୟ । ହିନ୍ଦୁମାନେ ହିଁ ଥିଲେ ଶ୍ରେଷ୍ଠତମ ଅଙ୍କନ ଶିଳ୍ପୀ— ସେତେବେଳେ ମଧ୍ୟ ସେମାନେ ଯେପରି ଅଜନ୍ତାର ଗୁମ୍ଫାପୀଠରେ ସମାସୀନ ହୋଇ ତୁଳିକା ସମ୍ପାତରେ ବହିର୍ଜଗତ—ଜୀବନର ପ୍ରାଚୀର ରୂପାୟିତ କରୁଥିଲେ ।

ମନେ ହେଲା, ନଗରୀର କର୍ମ କୋଳାହଳ ଭାସି ଆସୁଛି । ମୁଦ୍ରାଶାଳା ଦେଖିଲ,—ସେଠାରେ ବାଦ୍‌ଶାହଙ୍କ ନାମ ସମନ୍ୱିତ ପୃଥିବୀର ସୁନ୍ଦରତମ ମୁଦ୍ରା ପ୍ରସ୍ତୁତ ହେଉଥିଲା । ଯନ୍ତ୍ରଗୃହ ଦେଖିଲ—ସେଠାରେ ସମ୍ରାଟଙ୍କ ଆବିଷ୍କୃତ ବୃହତ୍ କମାଣସବୁ ରଖାଯାଇଛି ।

ଶତାଧିକ ଯନ୍ତ୍ରଶାଳା ଦେଖିଲ—ସତରଞ୍ଜି ପାଇଁ ରେଶମ ଉପରେ ସ୍ୱର୍ଣ୍ଣରୌପ୍ୟର ସୂକ୍ଷ୍ମ ମଣ୍ଡିତ ଖାଲର ସେଠାରେ ପ୍ରସ୍ତୁତ କରାଯାଉଥିଲା । ଅପୂର୍ବ ଲିପି-ସମନ୍ୱିତ ପୁସ୍ତକସବୁ ଲିଖିତ ହେଉଥିଲା । ପ୍ରତି କ୍ଷେତ୍ରରେ ସ୍ୱୟଂ ସମ୍ରାଟ ଉପସ୍ଥିତ ଥିଲେ । ସେ ନିଜେ ସକଳ କାର୍ଯ୍ୟର ତତ୍ତ୍ୱାବଧାନ କରୁଥିଲେ । ସମ୍ରାଟଙ୍କ ଅଜ୍ଞାତସାରରେ ପ୍ରାଚୀର ଗାତ୍ରରେ ରେଖାଟିଏ ବି ସଂପାତ ହେଉ ନ ଥିଲା, କିମ୍ବା କୌଣସି ପୁସ୍ତକ ଚିତ୍ରାଳଂକୃତ ହେଉ ନ ଥିଲା ।

ତା'ପରେ ଗ୍ରନ୍ଥାଗାର ଦେଖିଲ, ସେଠାରେ ସଂରକ୍ଷିତ ରହିଛି ଶ୍ରେଣୀବଦ୍ଧ ସୁନ୍ଦର କାରୁକାର୍ଯ୍ୟ ଖଚିତ ପାଣ୍ଡୁଲିପି ସବୁ । ତୈମୁରଙ୍କ ଇତସ୍ତତଃ ବିକ୍ଷିପ୍ତ ରତ୍ନରାଜି । ସେଗୁଡ଼ିକୁ ବାବର ଇରାନ୍‌ରୁ ଭାରତବର୍ଷକୁ ହସ୍ତାନ୍ତରିତ କରିଥିଲେ । ସେଥିରେ ଅଛି ସମ୍ରାଟ ଆକବରଙ୍କ ଭାରତବର୍ଷ, ପାରସ୍ୟ, ଆରବ, ଗ୍ରୀସ୍, ପାଲେଷ୍ଟାଇନରୁ ସଂଗୃହୀତ କାବ୍ୟ ଓ ଦର୍ଶନ । ଏତେ ଗ୍ରନ୍ଥ ତାଙ୍କ ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି ସମ୍ରାଟ ସଂଗ୍ରହ କରି

ପାରି ନ ଥିଲେ । ଗୋଟିଏ ପୁସ୍ତକ ଥିଲା ଅପୂର୍ବ, ସୁନ୍ଦର ଓ ଅଳଂକୃତ – ତୈମୁରଙ୍କ ଜୀବନୀ ଓ ବିଧାନ । ଉତ୍ତରାଧିକାର ସୂତ୍ରରେ ଆମେ ତାହା ପାଇଛୁ । ସେଥିରେ ଅଛି—

"ମୋ ସ୍ୱାର୍ଥ ପାଇଁ ମୁଁ ମୋ ଆତ୍ମୀୟସ୍ୱତାର ବନ୍ଧନ କିମ୍ବା ଦାନର ମର୍ଯ୍ୟାଦା ନଷ୍ଟ କରିନାହିଁ । କିମ୍ବା ଆତ୍ମୀୟମାନଙ୍କୁ ହତ୍ୟା କରିବା ପାଇଁ ବା ବନ୍ଦୀ କରିବା ପାଇଁ ଆଦେଶ ଦେଇନାହିଁ ।"

ରାଜପ୍ରାସାଦର ପ୍ରତ୍ୟେକ ମହଲର ଦ୍ୱାର ଦେଶରେ ବିଭିନ୍ନ ନୃପତିଗଣ ତୈମୁରଙ୍କ ଅଭ୍ୟର୍ଥନା ପାଇଁ ଅପେକ୍ଷା କରୁଥିଲେ । ସେହି ସମୟରେ ତୈମୁର କାନଗୁଲ ଉଦ୍ୟାନରେ (୧) ବିରାଟ ଆଡ଼ମ୍ବର ସହକାରେ ତାଙ୍କର ଛଅ ଜଣ ପୌତ୍ରଙ୍କ ବିବାହ ସମ୍ପନ୍ନ କଲେ । ସମଗ୍ର ପୃଥିବୀର ମୋଗଲ ସାମ୍ରାଜ୍ୟ ତାଙ୍କର ବଂଶଧରମାନଙ୍କ ଦ୍ୱାରା ଗୋଟିଏ ସୂତ୍ରରେ ଗ୍ରଥିତ ହେବେ—ଏହାହିଁ କ'ଣ ତାଙ୍କର ସ୍ୱପ୍ନ ନ ଥିଲା ?

ରାଜ୍ୟ ଜୟ ପାଇଁ ତୈମୁରଙ୍କ ପରି ଆକବର ବହୁ ଦେଶ ଧ୍ୱଂସ କରି ନ ଥିଲେ । ଆକବରଙ୍କ ଇଚ୍ଛା ଥିଲା, ଭାରତବର୍ଷ ତାହାର ପୁରାତନ ଭିତ୍ତି ଉପରେ ପୁନଃ ପ୍ରତିଷ୍ଠିତ ହେଉ । ଦିଲ୍ଲୀର ଚତୁଃପାର୍ଶ୍ୱରେ ତୈମୁରଙ୍କ ବଂଶଧରଗଣ ଶାନ୍ତି ଶିବିର ସ୍ଥାପନ କରନ୍ତୁ ।

ସେଇ ବୀଜରୁ ଏକ ବିରାଟ ମହୀରୁହ ବଢ଼ି ଉଠିଥିଲା । ତାହାର ଶାଖା ପ୍ରଶାଖା ବର୍ତ୍ତମାନ କ'ଣ ଖଣ୍ଡ ବିଖଣ୍ଡ ହୋଇଯିବ ? ସେଇ ପ୍ରକାଣ୍ଡ କାଣ୍ଡଟି ପୃଥିବୀ ବକ୍ଷରୁ ଲୁପ୍ତ ହେବା ପର୍ଯ୍ୟନ୍ତ ତାହାର ଫଳଗୁଡ଼ିକ କ'ଣ ନିରର୍ଥକ ହୋଇଯିବ ? ଏଇଥିପାଇଁ କ'ଣ ବାବର ଭାରତବର୍ଷକୁ ଆସିଥିଲେ ? ଅନ୍ତଃଦୃଷ୍ଟିରେ ଆଉ ଗୋଟିଏ ଗ୍ରନ୍ଥ ଦେଖିଲ— 'ସର୍-ଇ-ଆସ୍‌ରର୍' ବେଦର ସାର ସଂଗ୍ରହ ( ୨ ) ଶାହାଜାଦା ଦାରା ସେ ପୁସ୍ତକଟି ପାରସୀ ଭାଷାରେ ଅନୁବାଦ କରିଥିଲେ । ଧାନ୍-ଇ-ଇଲାହି ଶିଷ୍ୟର ଏହା ହିଁ ତ କର୍ତ୍ତବ୍ୟ ।

(୧) ''କାନଗୁଲ୍''ଉଦ୍ୟାନ ସମରଖନ୍ଦର ସର୍ବଶ୍ରେଷ୍ଠ ପ୍ରମୋଦ କାନନ ।

(୨) "ସର-ଇ-ଆସ୍‌ରାର୍" ଦାରା ଶୁକୋ ସଂକଳିତ ଉପନିଷଦର ସାର ସଂଗ୍ରହ । ଏହା ୧୬୫୭ ଖ୍ରୀଷ୍ଟାବ୍ଦରେ ଲିଖିତ ହୋଇଥିଲା । ଏଥିରେ ହିନ୍ଦୁ-ମୁସଲିମ ସମନ୍ୱୟ ପାଇଁ ଚେଷ୍ଟା କରାଯାଇଥିଲା ।

ତନ ମହଲରୁ ପରିହାସବ୍ୟଞ୍ଜକ ହସ ଶୁଣିଲି । ଆଉରଙ୍ଗଜେବଙ୍କ ବିଷ୍ଫାରିତ ଦନ୍ତପାଟି ଦେଖିଲି । ତାଙ୍କ ଭିତରେ ହିଂସ୍ର ପଶୁ ଜାଗିଉଠିଛି । ସେ ହିଁ ବାପଙ୍କୁ ଆଖ୍ୟା ଦେଇଥିଲେ - 'ଦ୍ରୁଫିଗା' ଅର୍ଥାତ୍ ସ୍ୱଧର୍ମୀ, ଧର୍ମଦ୍ରୋହୀ, ଅବିଶ୍ୱାସୀ । ତାଙ୍କୁ ପୌତ୍ତଳିକ ଅପବାଦ ଦେଇ ପୃଥିବୀରୁ ଅପସାରିତ କରିବାକୁ ହେବ । ହାୟ ! ମୁଁ ହେଲେ ଆଗରୁ ଏହା ବୁଝି ପାରିଥାନ୍ତି !

ଦ୍ୱିତୀୟ ମହଲରେ ଦୀନ୍-ଇ-ଇଲାହୀ ଶିଷ୍ୟଗଣ ସମ୍ରାଟଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ସମ୍ମାନ ମନୁଷ୍ୟ ପକ୍ଷରେ ତାହାର ଜୀବନ ଅପେକ୍ଷା ଅଧିକ ମୂଲ୍ୟବାନ । 'ସିର-ଇ-ଆସରାର' ଗ୍ରନ୍ଥରେ ଦାରା ଆକବରଙ୍କୁ ଶ୍ରଦ୍ଧା, ନିବେଦନ କରିଥିଲେ । 'ହେ ଅଦୃଶ୍ୟ ଜଗତର ବିଧାତା' । ଆଲ୍ଲାହ୍ ମୋ ଭାଇଙ୍କ ଉପରେ ଆଶୀର୍ବାଦ ଅର୍ପଣ କରନ୍ତୁ ।

ତା' ଉପର ମହଲରେ ଦ୍ୱାଦଶ ସ୍ତମ୍ଭବିଶିଷ୍ଟ କକ୍ଷରେ ଉପସ୍ଥିତ ହେଲି ।

ଚତୁର୍ଥ ମହଲରେ ଦୀନ୍-ଇ-ଇଲାହୀର ଶିଷ୍ୟଗଣ ବାଦଶାହଙ୍କ ଧର୍ମ ଅନୁସରଣ କରୁଥିଲେ ।

ଦ୍ୱିପ୍ରହର ନମାଜର ସମୟ ସମାଗତ । ମୁଁ ନତଜାନୁ ହୋଇ ଯୁକ୍ତକରରେ ଉପବିଷ୍ଟ ହେଲି । ମୁଅଜ୍ଜିନ୍‌ଙ୍କ କଣ୍ଠସ୍ୱର ବାୟୁମଣ୍ଡଳ ଭେଦ କଲା । ଯେଉଁ ଦିନଠାରୁ ସମ୍ରାଟ ଆକବର ଈଶ୍ୱରଙ୍କ ଏକତ୍ୱ ଚିନ୍ତାରେ ନିମଗ୍ନ ହେଲେ, ସେହି ଦିନଠାରୁ ଜୁମସମା ମସ୍‌ଜିଦର ନମାଜ ସମୟ ଘୋଷଣା କରିବା ପାଇଁ ଏଇ ମୁଅଜ୍ଜିନ୍ ନିଯୁକ୍ତ ହେଲେ । ସେ ସମସ୍ତଙ୍କୁ ନମାଜ ପାଇଁ ଆହ୍ୱାନ କରୁଥିଲେ ।

ଗୋଟିଏ ଆଲୋକଶିଖା ମୋତେ ପରିବୃତ କଲା । ମୋ ଆତ୍ମା ସେଇ ଆଲୋକରେ ଅବଗାହନ କଲା । ସମ୍ରାଟ ଆକବରଙ୍କ ନୟନ ଉପରେ ଉନ୍ମିଳିତ ହେଉଥିଲା, ତାହା ମୁଁ ଅନୁଭବ କଲି ।

ଶୈଶବରେ ସମ୍ରାଟ ଆକବର ଅନ୍ୟ ମଧ୍ୟ ଦେଇ ସତ୍ୟ ଉପଲବ୍ଧି କରିବାକୁ ଚେଷ୍ଟା କରିଥିଲେ । ଯୌବନରେ ସେ ଅଭିଷ୍ଟ ସନ୍ଧାନଦାତା

ଗୁରୁଙ୍କୁ ନ ପାଇ ନିରାଶ ହୋଇଥିଲେ ; କିନ୍ତୁ ସେ ଜାଣି ନ ଥିଲେ ଯେ ଅତ୍ୟନ୍ତ ଶ୍ରଦ୍ଧାର ସହିତ ପ୍ରତି ପଦକ୍ଷେପରେ ସେ ତାଙ୍କର ଈପ୍ସିତ ଲକ୍ଷ୍ୟ ଦିଗରେ ହିଁ ଅଗ୍ରସର ହେଉଥିଲେ ।

ମୁଁ ଯେପରି ଇବାଦତ୍‌ଖାନାର ଜ୍ଞାନୀ ବ୍ୟକ୍ତିମାନଙ୍କୁ ଦେଖି ପାରିଲି । ସେମାନଙ୍କ ପଗଡ଼ି ଝିଡ଼ରେ ସୁବୃହତ୍ ପୁଷ୍ପପରି ଆନ୍ଦୋଳିତ ହେଉଥିଲା । ଏଇ ସମସ୍ତ ଜ୍ଞାନୀ ଶାସ୍ତ୍ରର ବିଧାନ ଲଙ୍ଘନ କରୁଥିଲେ ଓ ଆବେଗର ଆତିଶଯ୍ୟରେ ପରସ୍ପର ଯୁକ୍ତିକୁ ଅସାର ପ୍ରମାଣିତ କରୁଥିଲେ । ଦେଖିଲି, ବିକାଳରେ ପଣ୍ଡିତ ଓ ସୁଫିଗଣ ସମ୍ରାଟଙ୍କ ଶୟନକକ୍ଷ ବାରନ୍ଦାରେ ଦୋଳାରେ ଆନ୍ଦୋଳିତ ହେଉଛନ୍ତି । ଦୋଳାରେ ସମାସୀନ ହୋଇ ନକ୍ଷତ୍ରମାନଙ୍କ ତଳେ ସମ୍ରାଟଙ୍କ ଗହଣରେ ସେମାନଙ୍କ ଜ୍ଞାନ ଭଣ୍ଡାରର ବ୍ୟାଖ୍ୟା କରୁଥିଲେ । ସେମାନେ କହୁଥିଲେ—"ମଣିଷ ନିଜ ଚେଷ୍ଟାରେ ଯୋଗଦ୍ୱାରା ନିଜ ଶରୀରକୁ ସୂକ୍ଷ୍ମ (୧) ଅଥବା ବିଦେହ କରି ହୀରକର ଅଣୁ ମଧ୍ୟରେ ପ୍ରବେଶ କରିପାରେ କିମ୍ବା ନିଜ ଶରୀରକୁ ଚନ୍ଦ୍ରଗ୍ରହର ପ୍ରାନ୍ତ ଦେଶକୁ ନେଇ ଯାଇପାରେ ।"

"ମଣିଷ ନିଜକୁ ଆଲୋକ ରେଖା ମଧ୍ୟ ଦେଇ ଊର୍ଦ୍ଧ୍ୱଲୋକକୁ ନେଇ ଯାଇପାରେ, କିମ୍ବା ନିଜକୁ ଧରିତ୍ରୀର ଅନ୍ତଃସ୍ଥଳରେ ବିଲୀନ କରି ଦେଇ-ପାରେ, ପୁଣି ଉପରକୁ ଭାସି ଉଠିପାରେ । ଯୋଗୀ ନିକଟରେ ଜଳ ଓ ଭୂମି ସମାନ ପଦାର୍ଥ ।"

ମନେ ହେଲା, ସମସ୍ତ ଜଗତ ନିସ୍ତବ୍ଧ । ପ୍ରଭାତ ଆକାଶ କ୍ରମେ ନୀଳ ପାଂଶୁବର୍ଣ୍ଣ ଧାରଣ କରିବାକୁ ଆରମ୍ଭ କରିଛି । ସମ୍ରାଟ ଫତେପୁର ସିକ୍ରୀର ଏକ ପରିତ୍ୟକ୍ତ କୋଣରେ ଏକ ବୃହତ୍ ପ୍ରସ୍ତର ଖଣ୍ଡ ଉପରେ

(୧) ବାଦାୟୁନୀଙ୍କ ମତରେ ସମ୍ରାଟ ଆକବର ହିନ୍ଦୁ ଯୋଗ ଓ ବୌଦ୍ଧ ତନ୍ତ୍ର ଅନୁଶୀଳନ ତଥା ଅଭ୍ୟାସ କରିଥିଲେ ଏବଂ କେତେକାଂଶରେ ଅଲୌକିକ ଶକ୍ତି ସଂଗ୍ରହ କରିଥିଲେ । ସେ ପୁଣି କହନ୍ତି ଯେ, ସମ୍ରାଟଙ୍କ ବାସଭବନ ସମ୍ମୁଖରେ ଦୋଳାରେ ବସି ସୁଫିଗଣ ଯୋଗାଭ୍ୟାସ କରୁଥିଲେ । ପୁରୁଷୋତ୍ତମ ଓ ଦେବୀ ନାମରେ ଦୁଇ ଜଣ ସାଧକ ପୁରୁଷ ଆକବରଙ୍କ ଯୋଗଚର୍ଚ୍ଚାରେ ସାହାଯ୍ୟ କରୁଥିଲେ ।

ସମାସୀନ । ନିର୍ଜନ ନିଶୀଥରେ ଚିନ୍ତା-ନିମଗ୍ନ ସମ୍ରାଟ ସ୍ୱପ୍ନଲୋକରୁ ଫେରି ଆସିଛନ୍ତି । ପ୍ରଭାତର ପ୍ରଥମ ପବନ ତାଙ୍କ ଶରୀରକୁ ସ୍ନିଗ୍ଧ କରି ଦେଉ-ଥିଲା, କିନ୍ତୁ ଜୀବନର ଅନ୍ୟ ଧାରରେ ହିଁ ମୃତ୍ୟୁ । ତାଙ୍କର ସ୍ଥୂଳ ଦୃଷ୍ଟି ବକ୍ଷ ନିବଦ୍ଧ । ତାଙ୍କ ଆତ୍ମାର ଦୃଷ୍ଟି ଅନ୍ତର୍ମୁଖୀ । ସେହି ରାଜ୍ୟରେ ସେ ଯେପରି ଅଦୃଷ୍ଟ ପଦାର୍ଥର ସନ୍ଧାନ ପାଇଛନ୍ତି ।

ପ୍ରସ୍ତରେ ଉତ୍କୀର୍ଣ୍ଣ ଅମଳିନ ଅକ୍ଷର ପରି ସେହି ସତ୍ୟ ସମ୍ରାଟଙ୍କ ମନ ଉପରେ ଅଙ୍କିତ ହୋଇ ଉଠୁଥିଲା, ଯାହା ଅନ୍ୟ କେହି ମଧ୍ୟ ହୁଏତ ଉପଲବ୍ଧି କରି ପାରିଥିବେ । ପୃଥିବୀରେ କେତେକ ଶାଶ୍ୱତ ବିଧାନ ଅଛି, ଯାହା ଲଙ୍ଘନ କରାଯାଇ ନ ପାରେ ଏବଂ ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ଏପରି ଏକ ଅଜ୍ଞାତ ସମ୍ବନ୍ଧ ବିଦ୍ୟମାନ, ଯାହାକୁ ମଣିଷର ଭାଷା ପ୍ରକାଶ କରିବାକୁ ଅକ୍ଷମ । ସମ୍ରାଟ ଯାହା ଉପଲବ୍ଧି କରିଥିଲେ, ମୁଁ ତାହା ଆଜି ଉପଲବ୍ଧି କରୁଛି । ସେ ବିରାଟ ଏକକ, ତା'ପରେ ଆଉ ସବୁ ଶୂନ୍ୟ ... ... । ଏକମେବା ଦ୍ୱିତୀୟମ୍ ।

ମୁୟାଜ୍ଜିନ୍‌ଙ୍କ କଣ୍ଠ ନୀରବ ହୋଇଆସୁଛି । ମୋ ଚାରି ଦିଗରେ ନୀରବତା—ଯେପରି ନୀରବତା ଏକଦା ସେଇ ପ୍ରସ୍ତର-ସମାସୀନ ମହା-ମାନବଙ୍କୁ ଆଚ୍ଛନ୍ନ କରିଥିଲା । ସମ୍ରାଟ ଆକବରଙ୍କ ଅନ୍ତରରେ ଥିଲା ଏକ ବିରାଟ ପ୍ରଶାନ୍ତି । ମୁଁ ତାଙ୍କର ଧର୍ମ ବିଶ୍ୱାସ ମଧ୍ୟ ଦେଇ ତାଙ୍କ ସଙ୍ଗ ଉପଲବ୍ଧି କଲି ।

ଚାରିଗୋଟି ସ୍ତମ୍ଭ ଉପରେ ସ୍ଥାପିତ ପଞ୍ଚମ ମହଲଟି ସମ୍ରାଟଙ୍କ ସିଂହାସନ ପାଇଁ ନିର୍ଦ୍ଦିଷ୍ଟ ଥିଲା । ସେଠାରେ ସେ ବିରାଟ ପୁରୁଷ ସମାସୀନ ହୋଇ ନଗର ପରିଦର୍ଶନ କରୁଥିଲେ । ଯେପରି ବିରାଟ ଶୂନ୍ୟତା ମଧ୍ୟରେ ବହୁଦିନବ୍ୟାପୀ ଅନୁସନ୍ଧାନ ଫଳରେ ସେ ଲକ୍ଷ୍ୟରେ ଉପନୀତ ହୋଇଛନ୍ତି ।



## ଅଷ୍ଟମ ସ୍ତବକ

ଆମର ମୋଗଲ ବଂଶ ବହୁଦିନ ଭ୍ରାମ୍ୟମାଣ ଥିଲ । ମୋ ସମ୍ମୁଖରେ ବିରାଟ ପ୍ରାନ୍ତରର ଅନ୍ୟ ପାର୍ଶ୍ୱରେ ମୁଁ ଦେଖୁଛି— ଅନନ୍ତ ବନପଥ, ବାଘଡାଇ (୧) ପର୍ବତର ଉପତ୍ୟକା ମଧ୍ୟଦେଇ ପ୍ରସାରିତ ପଥରେଖା, ଶିବିର ପରେ ଶିବିର ସ୍ଥାପନ କରି ଚାଲିଛନ୍ତି । ବାଘଡାଇ ଜାତି, ଦଳବଦ୍ଧ, ସଙ୍ଗୀତମୁଖର । ନିର୍ଜନ ଗିରିପଥ ଅତିକ୍ରମ କରି ଫର୍‌ଗଣାର ଅଧୀଶ୍ୱର ସମରଖନ୍ଦର ପୁଷ୍ପିତ ଅରଣ୍ୟ ପଥରେ ଚାଲିଛନ୍ତି । ଯାଯାବର ଜାତିର ମିଳନ କେନ୍ଦ୍ର ତାରିମ୍ ସୈକତ ଅତିକ୍ରମ କରି ତୁଷାର-ଶୀତଳ ବାୟୁ ମଧ୍ୟଦେଇ ମୋଗଲ ଜାତି ନୂତନ ଯାତ୍ରା ଆରମ୍ଭ କରିଛି— ଅବଶେଷରେ ଉପସ୍ଥିତ ହୋଇଛି ଭାରତବର୍ଷର ସୀମାନ୍ତରେ ।

ସମଗ୍ର ପୃଥିବୀ ଜୟ ଉଦ୍ଦେଶ୍ୟରେ ସେହି ବିଜୟୀ ଦଳ ପଶ୍ଚିମରେ ୟୁରୋପ, ପୂର୍ବରେ ଚୀନ ପର୍ଯ୍ୟନ୍ତ ଆସିଥିଲେ । ସେଇ ସୋନାଲି ଶାଖା (୨) ଭାରତକୁ ଆସି ସେମାନଙ୍କ ଶେଷ ଶିବିର ସ୍ଥାପନ କଲେ ।

ଦୁର୍ଦ୍ଦମମାୟୁ ପରାକ୍ରମ ନେଇ ମୋଗଲ ବଂଶାବତଂସ ବାବର ଓ ସମ୍ରାଟ ଆକବର ସେମାନଙ୍କ ପୂର୍ବ ପୁରୁଷଙ୍କ ଅନୁକରଣରେ ଉଦ୍‌ବେଳ ତରଙ୍ଗିଣୀ ସନ୍ତରଣ କରିଥିଲେ । ପ୍ରାଚୀନ ଯୁଗରେ ମଣିଷ ଅତି ଦୂରାଗତ ଧ୍ୱନି ଶୁଣି ପାରୁଥିଲା । ଅତି ଦୂରରେ କ୍ଷୁଦ୍ରତମ ବସ୍ତୁର ସନ୍ଧାନ ପାଇ ପାରୁଥିଲା । ସୂକ୍ଷ୍ମ ଅନୁଭୂତି ଦ୍ୱାରା ଆକବର ଚିହ୍ନର ଅତି ମୃଦୁ ରେଖା

---

(୧) ଏସିଆର ବନାମୀ ଶୋଭିତ ପର୍ବତ ଉପତ୍ୟକା ପଥ ।

(୨) ମୋଗଲ ଜାତିର ଦୁଇଟି ଶାଖା । ଗୋଟିଏ 'ସୋନାଲି ଶାଖା' ଓ ଅନ୍ୟଟି 'କୃଷ୍ଣ ଶାଖା' ନାମରେ ଇତିହାସରେ ପରିଚିତ । ସୋନାଲି ଶାଖା ସଙ୍ଗେ ଅନ୍ୟ କେଉଁ ଜାତିର ରକ୍ତର ମିଶ୍ରଣ ସମ୍ପର୍କ ନ ଥିଲା । କୃଷ୍ଣ ଶାଖା ନାନା ଜାତି ସଙ୍ଗେ ମିଶି ବିଭିନ୍ନ ଦେଶରେ ବିଭିନ୍ନ ନାମ ଗ୍ରହଣ କରିଥିଲା ।

ସଂଘାତର ସୁସ୍ମ-ପାର୍ଥକ୍ୟ ଅନୁଭବ କରି ପାରୁଥିଲେ । ବୀଣା ଝଙ୍କାରର ପ୍ରତି ସ୍ୱରର ବ୍ୟଞ୍ଜନ ମଧ୍ୟ ଅନୁଧ୍ୟାନ କରି ପାରୁଥିଲେ; ପୁଣି ତାଙ୍କର ସେହି କଠିନ ହସ୍ତରେ ବନ୍ୟ ହସ୍ତୀକୁ ବଶୀଭୂତ ମଧ୍ୟ କରୁଥିଲେ ।

ସମ୍ରାଟ ଆକବର ବହିର୍ଜଗତରେ ଭାରତର ମହିମା ପ୍ରଚାର କରିଥିଲେ । ଭାରତର ଅଭ୍ୟନ୍ତରରେ ଶାନ୍ତି ସ୍ଥାପନ କରିଥିଲେ । ସୁବର୍ଣ୍ଣ-ଖଚିତ ରାଜବେଶ କୃଷ୍ଣ ପ୍ରସ୍ତର ଶୋଭିତ କଣ୍ଠହାର ପରିଧାନ କରି ସେ ସିଂହାସନ ଆରୋହଣ କରୁଥିଲେ । ତାଙ୍କ ଅଭିଷେକ କକ୍ଷରେ ତାତାର ଦେଶର ରେଶମ ଓ ଚୀନ ଦେଶର ଝାଲର ସମନ୍ୱିତ ସତରଞ୍ଜି ଶୋଭା ପାଉଥିଲା । ତାଙ୍କର ଗୋଟିଏ ପାର୍ଶ୍ୱରେ ସୁବର୍ଣ୍ଣ ମୁଦ୍ରା ବିକ୍ଷିପ୍ତ ରହୁଥିଲା । ଅନ୍ୟ ପାର୍ଶ୍ୱରେ ମୁକ୍ତାରାଶି । ତାଙ୍କ ହସ୍ତରୁ ସୁବର୍ଣ୍ଣ ଏବଂ ମୁକ୍ତାସବୁ ସତେ ଅବା ବୃଷ୍ଟି ହେଉଥିଲା । ଦିଲ୍ଲୀଶ୍ୱରଙ୍କ ମସ୍ତକ ଉପରେ ବିସ୍ତୃତ ଚନ୍ଦ୍ରାତପ ଏବଂ ନିମ୍ନରେ ଦୃଶ୍ୟ ଓ ଅଦୃଶ୍ୟ ଜଗତର ମିଳନ, ସାମ୍ରାଜ୍ୟ ଅଭ୍ୟନ୍ତରରେ ଏକ ନୂତନ ଯୁଗର ସୂଚନା ଦେଉଥିଲା ।

ଗୋଲାପର ପୁଷ୍ପଦଳ ପରି ଫତେପୁର ସିକ୍ରୀ ଫୁଟି ଉଠୁଥିଲା— ଭାରତବର୍ଷ ଧନଧାନ୍ୟରେ ସମୃଦ୍ଧ ହୋଇ ଉଠିଥିଲା । ସେ ସମୃଦ୍ଧି ଭାରତବର୍ଷ ବହୁ ଶତାବ୍ଦୀ ହେଲା ଉପଭୋଗ କରି ନାହିଁ ।

ଅତୀତରୁ ହିଁ ଆକବର ଆଦର୍ଶ ସନ୍ଧାନ କରୁଥିଲେ । ଯଦି ସେ ତାଙ୍କ ଅପେକ୍ଷା ଅଧିକ ଉପଯୁକ୍ତ ଶାସକ ସନ୍ଧାନ ପାଇଥାନ୍ତେ, ତେବେ ତାଙ୍କ ହସ୍ତରେ ରାଜ୍ୟ ଭାର ଅର୍ପଣ କରିବା ପାଇଁ ଦ୍ୱିଧାବୋଧ କରି ନ ଥାନ୍ତେ । ମୁହୂର୍ତ୍ତକ ମଧ୍ୟରେ ସେ ଭବିଷ୍ୟତ ଦର୍ଶନ କରି ପାରୁଥିଲେ । ଚିତ୍ରକର ଚିତ୍ରାଙ୍କନରେ ଆତ୍ମସମାହିତ; ଗାୟକ ନୂତନ ସ୍ୱର-ସୃଷ୍ଟିରେ ଉଦ୍‌ବୋଧିତ, ମନଶ୍ଚକ୍ଷୁରେ ଜଗତ୍ ପରେ ଜଗତ୍ ପ୍ରତିଭାତ ହୋଇ ଉଠୁଥିଲା ।

ଅତୀତର ସ୍ମୃତି ଓ କଳ୍ପନାର ଭବିଷ୍ୟତର ମିଳନ-ସ୍ଥଳରେ ସମ୍ରାଟ ସମାସୀନ । ସୁଦୂର ଅତୀତ ପ୍ରତି ଦୃଷ୍ଟି ଦେଲେ, ଦେଖିଲେ ସେହି ବିରାଟ ପୁରୁଷ ତୈମୁର ବେଗ୍, ଶକ୍ତିର ପ୍ରାଚୁର୍ଯ୍ୟରେ ଯେ ପୃଥିବୀକୁ ନିଜ ଇଚ୍ଛା ଅନୁସାରେ ଗଢ଼ିବାକୁ ଚେଷ୍ଟା କରୁଥିଲେ, ତାଙ୍କର ନିର୍ଦ୍ଦେଶରେ ଚାଳିତ ନ ହେଲେ ସେ ମଣିଷକୁ ମଣିଷ ବୋଲି ସ୍ୱୀକାର କରୁ ନ ଥିଲେ ।

ଅଥବା ସେ ନିଜକୁ ମହମ୍ମଦ-ପ୍ରବର୍ତ୍ତିତ ଧର୍ମବିଶ୍ୱାସୀମାନଙ୍କ ଅଧିନାୟକ ବୋଲି ବିଶ୍ୱାସ କରୁଥିଲେ ।

ଅସ୍ତ୍ର ବା ତରବାରି ସାହାଯ୍ୟରେ ସମ୍ରାଟ ଆକବର କାହାକୁ ତାହାର ଧର୍ମବିଶ୍ୱାସରୁ ବିଚଳିତ କରୁ ନ ଥିଲେ । ସେ ଭାବୁଥିଲେ, ପ୍ରତ୍ୟେକ ଧର୍ମରେ ଶୁଦ୍ଧ ବୁଦ୍ଧି ସମ୍ପନ୍ନ ବ୍ୟକ୍ତି ଅଛନ୍ତି । ପ୍ରତ୍ୟେକ ଦେଶରେ ଆଲୌକିକ ଶକ୍ତି-ସମ୍ପନ୍ନ ବ୍ୟକ୍ତି ଅଛନ୍ତି । ଯେଉଁ ବ୍ୟକ୍ତି ମହାପୁରୁଷଙ୍କୁ ଅନୁସରଣ କରେ, ସେ ତାହାଙ୍କ ସଙ୍ଗେ ତୁଳନୀୟ ।

ମଣିଷ ମୁଣ୍ଡର ପାହାଡ଼ ଉପରେ ତୈମୁରଙ୍କ ପଥ ରଚିତ ହୋଇଥିଲା; କିନ୍ତୁ ସମ୍ରାଟ ଆକବର ଯେତେବେଳେ ପ୍ରଜାମାନଙ୍କ ସମ୍ମୁଖରେ ଉପସ୍ଥିତ ହେଉଥିଲେ ପ୍ରଜାମାନେ ଶ୍ରଦ୍ଧାର ଅର୍ଘ୍ୟ ନେଇ ଆଗେଇ ଆସୁଥିଲେ । ସେମାନଙ୍କ ମୁଖରେ ପ୍ରାର୍ଥନାର ସ୍ୱର ଫୁଟି ଉଠୁଥିଲା ।

ପୁଣି ଥରେ ନଗରର କୋଳାହଳ ଶୁଣିପାରିଲି—ମନେ ହେଲା, ଅଜିତ ଯେପରି ନୂତନ ଜୀବନର ସନ୍ଧାନ ପାଇଛି । କେହି କେହି ଅବଗାହନ ଶେଷ କରି ବିରାଟ ସ୍ନାନ ପ୍ରାସାଦରୁ ବାହାରି ଆସୁଛନ୍ତି । ଏ ପ୍ରାସାଦର ବହିରାବରଣ ଅତି ସାଧାରଣ, କିନ୍ତୁ ଗମ୍ବୁଜାକୃତି ଗୃହଟି ବାସ୍ତବିକ ଅପରୂପ, ଚଟାଣ ମିନା ଶିଳ୍ପଖଚିତ । ଦେଖୁଛି, ସେମାନେ ସୋପାନ ଶ୍ରେଣୀର ଅତିକ୍ରମ କରି କୂପପାର୍ଶ୍ୱରେ ବୃକ୍ଷଚ୍ଛାୟାରେ ଶାନ୍ତିଲାଭ କରିବାକୁ ଆସୁଛନ୍ତି ।

ଅନାଥ ଆଶ୍ରମ (୧) ଗୃହପାର୍ଶ୍ୱରେ ବହୁ ବିଭୂକ୍ଷୁ ସମବେତ-ଯୋଗୀମାନଙ୍କ ପାଇଁ ଅନ୍ୟ ଆଶ୍ରମ ନିର୍ଦ୍ଦିଷ୍ଟ । କଳ୍ପନା ନେତ୍ରରେ ଦେଖିଲି, ମୁଁ ଯେପରି ସେହିମାନଙ୍କ ଭିତରୁ ଜଣେ । ବର୍ଷର ଗୋଟିଏ ବିଶେଷ ଦିନରେ ଦେଶର ସକଳ ପ୍ରାନ୍ତରୁ ସାଧୁଗଣ ଏହି ଆଶ୍ରମରେ ସମବେତ ହୁଅନ୍ତି । ସମ୍ରାଟ ବିଶିଷ୍ଟ ସାଧୁଗଣଙ୍କ ସହ ଏକତ୍ର ଭୋଜନ କରନ୍ତି ।

ମୃଦୁ ପବନ ସ୍ପର୍ଶରେ ମୋ ଅବଗୁଣ୍ଠନ ଶ୍ଲଥ ହେଲା । କେପ୍ସେଲ୍ର ବିଚ୍ଛୁରିତ ଗୋଲାପଜଳ ସମୀରଣକୁ ସୁବାସିତ କରିଦେଲା । ମୋ

(୧) ଆକବର ସନ୍ନ୍ୟାସୀମାନଙ୍କ ପାଇଁ ଯୋଗୀ ପୁର, ଭିକ୍ଷୁକମାନଙ୍କ ପାଇଁ ଖସୁରାତପୁର ଏବଂ ବାରଙ୍ଗନାମାନଙ୍କ ପାଇଁ ଶୟତାନପୁର ସୃଷ୍ଟି କରି ବିଭିନ୍ନ ଶ୍ରେଣୀ ପାଇଁ ବିଭିନ୍ନ ଆବାସର ବ୍ୟବସ୍ଥା କରିଥିଲେ ।

ସ୍ମୃତି ପଟରେ ଜାଗି ଉଠିଲା—ମିଲଯୁମ ଜମାନୀର (୧) ଗୋଲାପ ବାଗିର ସୁମଧୁର ଗନ୍ଧ । ଉଦ୍ୟାନ ବେଷ୍ଟିତ ଅନ୍ତଃପୁରର ମହଳା ପ୍ରାସାଦ ଗୁଡ଼ିକ ପ୍ରତି ଦୃଷ୍ଟି ନିକ୍ଷେପ କଲି । ବୃହତ୍ତମ ପ୍ରାସାଦଟି ସମ୍ରାଟ ତାଙ୍କର ଭାରତୀୟ ମହିଷୀମାନଙ୍କ ପାଇଁ ଭାରତୀୟ ସ୍ଥାପତ୍ୟ ରୀତିରେ ନିର୍ମାଣ କରାଇଥିଲେ । ଉଦ୍ଦେଶ୍ୟ ଥିଲା, ସେମାନେ ଯେପରି ସେହି ପ୍ରାସାଦକୁ ନିଜର ବୋଲି ଗ୍ରହଣ କରି କରିପାରନ୍ତି । ପ୍ରବେଶପଥ ପାର୍ଶ୍ୱରେ ଗୋଟିଏ କ୍ଷୁଦ୍ର ଦେବ ମନ୍ଦିର । ଏ ପ୍ରାସାଦ ଅଭ୍ୟନ୍ତରରେ ମୁଁ ସୂର୍ଯ୍ୟାସ୍ତ ସମୟରେ ଭୋଜନରତ ସମ୍ରାଟଙ୍କୁ ଦେଖିଲି । ଗୃହେଶମାନେ ଅସ୍ତାୟମାନ ସୂର୍ଯ୍ୟ-ରଶ୍ମି ସହିତ ସମ୍ରାଟଙ୍କ ସ୍ତବ ଗାନ କରୁଥିଲେ, ସ୍ୱର୍ଣ୍ଣ-ରୌପ୍ୟ-ନିର୍ମିତ ଦୀପାଧାରରେ ଦ୍ୱାଦଶ ଦୀପ ଜଳି ଉଠିଲା, ମଧ୍ୟ ସ୍ଥଳରେ ଜଳୁଥିଲା ଏକ ବୃହତ୍ ଶୁଭ୍ର ପ୍ରଦୀପ । ପ୍ରାସାଦର ପ୍ରତ୍ୟେକ ବ୍ୟକ୍ତି ଦଣ୍ଡାୟମାନ । କାରଣ ପୃଥିବୀରେ ଅଗ୍ନି ହିଁ ଭଗବାନଙ୍କର ପ୍ରତୀକ, ପ୍ରଦୀପ ଶିଖା ହିଁ ଭଗବାନଙ୍କ ଦୃଷ୍ଟିର ଆଲୋକ । ସେଇ ପ୍ରାସାଦଗୁଡ଼ିକ ମଧ୍ୟରେ ସ୍ୱର୍ଣ୍ଣ ମହଲ ଦେଖିଲି । ଆହୁରି ଦେଖିଲି, ଅନେକ ସୁନ୍ଦର ପ୍ରାସାଦ । ମୁଁ ସେଇ ସ୍ଥାନକୁ ବିଶ୍ରାମ ପାଇଁ ଯାଉଛି ।

ଗୋଟିଏ ସ୍ତମ୍ଭ ପାର୍ଶ୍ୱରେ ମସ୍ତକ ବିନ୍ୟସ୍ତ କରି ଶୂନ୍ୟକୁ ଅନାଇଲି, ସୂର୍ଯ୍ୟାଲୋକରେ ସମୁଦ୍ର ପରି ସୁବିଶାଳ ପ୍ରାନ୍ତର ମୋ ସମ୍ମୁଖରେ ପ୍ରସାରିତ । ଅଶ୍ୱହସ୍ତୀ ପଥ ପ୍ରାନ୍ତର ଅତିକ୍ରମ କରି ଚାଲିଛନ୍ତି, ଶୂନ୍ୟରେ ଧୂଳିକଣା ଉଡୁଛି । ଆଜ ଯେ ଏକ ବିରାଟ ଉତ୍ସବର ଦିନ । ପ୍ରୀତି, ବିଶ୍ୱାସ, ବିସ୍ମୟର ଉଚ୍ଛ୍ୱାସ ଓ ଉଲ୍ଲାସ ନେଇ ଆକବର ଫତେପୁର ଶିକ୍ରୀର ପରି-କଳ୍ପନା କରିଥିଲେ ।

× × ×

ତେବେ କାହିଁକି ସମ୍ରାଟ ଫତେପୁର ଶିକ୍ରୀ ପରିତ୍ୟାଗ କଲେ ? କେଉଁଥିପାଇଁ ତାଙ୍କର ସମସ୍ତ ଶ୍ରମ ବିସ୍ମୃତି ଗର୍ଭରେ ଉଡ଼ାଇ ଦେଲେ ?

---

(୧) ମିଲଯୁମ ଜମାନୀ—ଯୁଗ ମାତା ଆକବରଙ୍କ ପ୍ରଧାନ ହିନ୍ଦୁ ମହିଷୀ ବିହାରୀ ମଲ୍ଲଙ୍କ କନ୍ୟା । ମୁସଲମାନଙ୍କ ସ୍ତ୍ରୀ ହୋଇ ମଧ୍ୟ ସେ ନିଷ୍ଠାର ସହିତ ହିନ୍ଦୁର ସମସ୍ତ ଆଚାର ପାଳନ କରୁଥିଲେ । ତାଙ୍କ ଗୃହରେ ତୁଳସୀ, ହୋମକୁଣ୍ଡ ଏବଂ ଗଙ୍ଗାଜଳର ବ୍ୟବସ୍ଥା ଥିଲା ଏବଂ ବ୍ରାହ୍ମଣ ପାଚକ ଥିଲେ । ତାଙ୍କ କିଂକରୀ ହିନ୍ଦୁ ଥିଲେ । ଉଦାର ଆକବର ପତ୍ନୀଙ୍କ ଧର୍ମ ବିଶ୍ୱାସରେ ଆଘାତ କରୁ ନଥିଲେ ।

ଆଜ କାହିଁକ ମର୍ମରର ସେଇ ସ୍ୱପ୍ନ ସୌଧ ଭକ୍ଷୁକ ଓ ଶ୍ୱାପଦମାନଙ୍କ ବାସଭୂମି ? ଦୂରେ ବହୁ ଦୂରେ, ସେ କେନ୍ଦ୍ର ଅଭିମୁଖେ ଅନାଇଲି । ପ୍ରସ୍ତର ଉପରେ କୁଜ୍‌ଝଟିକା ଗାଢ଼ତର ପ୍ରତିଭାତ ହେଉଥିଲା । ସମାଧି ଓ ସହରର ମଧ୍ୟବର୍ତ୍ତୀ ସ୍ଥାନରେ ବୃକ୍ଷଗୁଡ଼ିକ ଯେପରି ପ୍ରହରୀ ପରି ଠିଆ ହୋଇଥିଲେ । ସମ୍ରାଟଙ୍କ ସମାଧି ମନ୍ଦିର ପାର୍ଶ୍ୱରେ ପ୍ରଜ୍ୱଳିତ ଧୂପଧାରରୁ ଉତ୍ଥିତ ଧୂମ୍ରଜାଲ କୁଜ୍‌ଝଟିକା ପରି ମନେହେଉଛି । ସେ ବିରାଟ ପୁରୁଷ ମୋ ସମ୍ମୁଖରେ ଜାଗି ଉଠିଲେ । ସେ ଯେ ଶାଶ୍ୱତ ପରିବ୍ରାଜକ । ତାଙ୍କର ଅବାଧଗତି କୌଣସି ଶିବିର ପ୍ରତିରୋଧ କରି ନ ପାରେ । ଏପରି କି ସମାଧି ତାଙ୍କୁ ସୀମାବଦ୍ଧ କରିବାକୁ ଅକ୍ଷମ ।

ତାଙ୍କର ସମସ୍ତ ଉତ୍ସାହ କ'ଣ ଶୀତଳ ହୋଇ ଯାଇଛି ? ମହାପୁରୁଷ ସେଲିମ୍ ଚିସ୍ତିଙ୍କ (୧) ଅନୁଗ୍ରହ ଜାତ ସନ୍ତାନ ସେଲିମ୍ ତ ପୁଣି ଆକବରଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ସେଇ ସନ୍ତାନର ବିଦ୍ରୋହ ଦମନ କରିବା ପିତାଙ୍କ ପକ୍ଷରେ ଖୁବ୍ ବେଶୀ ଉଲ୍ଲାସ କର ହୋଇଥିବ କି ?

ସେ ପ୍ରହେଳିକା ଜାଲ ଛିନ୍ନ କରିବାକୁ ମୁଁ ଯେତେ ଚେଷ୍ଟା କଲି, ସେତେ ସେତେ ସେ ମୋ ନିକଟତର ହୋଇ ଆସିଲେ । ତାଙ୍କ ସମ୍ମୁଖରେ ମୁଁ ଶପଥ କଲି, "ଯଦି ଆମେ ଯୁଦ୍ଧରେ ଜୟଲାଭ କରୁ, ତେବେ ସମ୍ରାଟ

(୧) ଆକବରଙ୍କ ଦୁଇ ପୁତ୍ର ଶୈଶବରେ ମୃତ୍ୟୁ ମୁଖରେ ପତିତ ହେଲେ । ଏହାପରେ ଫତେପୁରର ସୁଫୀଭକ୍ତ ସଲିମ ଚିଶ୍ତିଙ୍କ ଆଶୀର୍ବାଦରେ ଯୋଧ ବାଈଙ୍କ ଗର୍ଭରୁ ଆକବରଙ୍କର ଏକ ପୁତ୍ର ଜନ୍ମଗ୍ରହଣ କଲେ । ସଲିମ ଚିଶ୍ତିଙ୍କ କ୍ଷୁଦ୍ର କୁଟୀରରେ ଯୋଧବାଈ ସେ ପୁତ୍ର ସନ୍ତାନ ପ୍ରସବ କଲେ । ସଲିମ୍‌ଙ୍କ ଆଶୀର୍ବାଦଜାତ ବୋଲି କୃତଜ୍ଞତାରେ ଆକବର ସେ ପୁତ୍ରର ନାମ ଦେଲେ 'ସଲିମ' । ସମ୍ରାଟ ସଲିମ୍ ଚିଶ୍ତିଙ୍କ କୁଟୀର ପାର୍ଶ୍ୱରେ ବିରାଟ ସୌଧ ସ୍ୱପ୍ନ ଦେଖିଲେ ଏବଂ ନୂତନ ନଗର ନିର୍ମାଣ ପରିକଳ୍ପନା କଲେ । ପରବର୍ତ୍ତୀ ଯୁଗରେ ତାହାହିଁ ହେଲା ସମ୍ରାଟ ଆକବରଙ୍କ ରାଜଧାନୀ ଫତେପୁର୍ ଶିକ୍ରୀ । ଅକସ୍ମାତ ଅଠର ବର୍ଷ ପରେ ଆକବର ସେଇ ସ୍ୱପ୍ନ ପରିକଳ୍ପିତ ଫତେପୁରଶିକ୍ରୀ ପରିତ୍ୟାଗ କଲେ । ଜାହାନାରା ସେଇ ପରିତ୍ୟକ୍ତ ନଗରୀ ପାଇଁ ଆକବରଙ୍କୁ ଆପେକ୍ଷ କରିଛନ୍ତି ।

ଆକବରଙ୍କ ଧର୍ମର ଶ୍ରେଷ୍ଠାଂଶ ଫତେପୁରରେ ପୁନଃ ପ୍ରତିଷ୍ଠିତ କରନ୍ତୁ; ଜୁମ୍ମା ମସ୍‌ଜିଦରେ ପୁଣି ପ୍ରାର୍ଥନା ବ୍ୟବସ୍ଥା ଆରମ୍ଭ କରନ୍ତୁ । ପୁଣି ଥରେ ଜ୍ଞାନପିପାସୁ ଚତୁରଣଗଣ ଇବାଦତ୍‌ଖାନାର ଗବେଷଣାଗାରରେ ନକ୍ଷତ୍ର ମଣ୍ଡଳୀ ପରୀକ୍ଷା କରନ୍ତୁ । ରାଜପ୍ରାସାଦରେ ପୁଣି ଥରେ ପ୍ରେମର ରାଜ୍ୟ ପ୍ରତିଷ୍ଠିତ ହେବ ।

ସୋନହାରୀ ପ୍ରାସାଦର (୧) ପ୍ରବେଶ ତୋରଣ ନିକଟକୁ ଆସିଲି । ଏଇଠାରେ ମୁଁ ନୂଆ ଜୀବନ ପାଇବି । ଏଇଠାରେ ଏଇ ପ୍ରାସାଦର ପ୍ରବେଶ ପଥରେ ମୁଁ ପ୍ରିୟତମଙ୍କ ଦର୍ଶନ ପାଇବି । ମନେ ହେଲା, ଯେପରି ଶୁଦ୍ଧତମ ଧାତୁର ସୁମଧୁର ଗନ୍ଧ ଏଇ ପ୍ରାସାଦରୁ ନିର୍ଗତ ହେଉଛି । ଭିତରେ ଓ ବାହାରେ ସ୍ୱର୍ଣ୍ଣର ଉଜ୍ଜ୍ୱଳତା । ଏ ପ୍ରାସାଦର ଅଭ୍ୟନ୍ତରରେ ଓ ବାହାରେ ସୁବର୍ଣ୍ଣ ରଙ୍ଗ ବନ୍ଧନର ଜୀବନ୍ତ ବର୍ଣ୍ଣ ସମାବେଶ ମଣିଷକୁ ମୁଗ୍ଧ କରେ । ନୀଳ ପଶ୍ଚ ଭୂମିକାରେ ଅଙ୍କିତ ଯୁଦ୍ଧର ଦୃଶ୍ୟ, ମୃଗୟାର ଦୃଶ୍ୟ ! ରକ୍ତ ବର୍ଣ୍ଣର ବୃକ୍ଷରେ ବିଭିନ୍ନ ବର୍ଣ୍ଣର ରୋମରାଜି ବିଭୂଷିତ ବିହଙ୍ଗମ । ସ୍ତମ୍ଭରେ ଖୋଦିତ ପଦ୍ମାସନରେ ସମାସୀନ ବିଷ୍ଣୁଙ୍କ ଅବତାର ଶ୍ରୀରାମଚନ୍ଦ୍ର ।

ଦରଜା ସମ୍ମୁଖରେ ଗୋଟିଏ ଚିତ୍ର ଦେଖିଲି । ଶୈଶବରେ ଏ ଚିତ୍ରଟି ମନରେ ଭାବନାର ଲହରୀ ସୃଷ୍ଟି କରିଥିଲା । ସେଇ ସ୍ମୃତି ଆଜି ମୋତେ ପ୍ରଲୁବ୍ଧ କଲା । ଜଣେ ଦେବଦୂତ, ତାଙ୍କ ହସ୍ତରେ ଖଡ଼୍‌ଗାକୃତି ଗୋଟିଏ ବସ୍ତୁ । ଖଡ଼୍‌ଗରୁ ସ୍ଫୁରିତ ହେଉଛି ଅପରୂପ ଜ୍ୟୋତି । ସେଇ ଶିଶୁ କ'ଣ ଦେବଦୂତ ଜିବ୍ରାଇଲ୍ ? ରାଜମହର୍ଷୀ ଯୋଧବାଈ ମିରୟମ୍ ଜନନୀଙ୍କ ନିକଟକୁ ଅଗ୍ରସର ହେଉଥିଲେ କି ? ମୁଁ କିଛିର ଦୂରରେ ଉପବେଶନ କଲି ।

ମୋର ଭାବନା ଅନ୍ତଃପୁରର ମହିଳା ମହଲ ପର୍ଯ୍ୟନ୍ତ ପ୍ରସାରିତ ହେଲା । ଶୁଣିଥିଲି, ସମ୍ରାଟଙ୍କ ଅନ୍ତଃପୁରରେ ପଞ୍ଚ ସହସ୍ରାଧିକ ମହିଳା ବାସ କରୁଥିଲେ । ଏବେ ବି ମୋ କର୍ଣ୍ଣରେ ଧ୍ୱନିତ ହେଉଛି, ସେଇ କ୍ଷୁଦ୍ର ପ୍ରାସାଦରେ ଘୋଷିତ ବାଣୀ 'ଏକ ଈଶ୍ୱର, ଏକ ସ୍ତ୍ରୀ ।' ଜଣେ ସ୍ତ୍ରୀରୁ ଅଧିକ

---

(୧) ସୋନହାରୀ ପ୍ରାସାଦ ବିଶୁଦ୍ଧ ସ୍ୱର୍ଣ୍ଣରେ ନିର୍ମିତ ହୋଇଥିଲା । ଆଜି ତାର ଚିହ୍ନ ନାହିଁ ।

ଯେ କାମନା କରେ, ସେ ତାର ସର୍ବନାଶର ପଥ ରଚନା କରେ । ଏହାହିଁ ଥିଲା ସମ୍ରାଟଙ୍କର ଶେଷ ଜୀବନର ଉପଲବ୍ଧି । (୧) ଯଦି ଫତେପୁରରେ ଆମେ ଜୟଲାଭ କରୁ, ତେବେ ମୁଁ ଯୋନବାଇ ପ୍ରାସାଦରେ ଏକ ଲିଙ୍ଗଙ୍କ ମନ୍ଦିର ପ୍ରତିଷ୍ଠା କରିବ ।

ପୁନର୍ବାର ସେଇ କ୍ଷୁଦ୍ର ପ୍ରାସାଦ ଅଭିମୁଖେ ଅଗ୍ରସର ହେଲି । କୋୟେଲ୍ ସେଠାରେ ମୋ ପାଇଁ ଅପେକ୍ଷା କରିଥିଲା । ଏଇ ପ୍ରାସାଦର ସ୍ଥାପତ୍ୟ ଓ ଅଳଙ୍କାର ମୋତେ ଗୋଟିଏ ହିନ୍ଦୁ ମନ୍ଦିର ସ୍ମରଣ କରାଇ ଦେଉଥିଲା । ମନେ ହେଲା, ବାଲୁକା ପ୍ରସ୍ତରର ଏକ ବିରାଟ ଧ୍ୱଂସାବଶେଷ ମଧ୍ୟ ସ୍ଥଳରେ ଅପେକ୍ଷା କରିଛି । ପ୍ରାସାଦର ବିଭିନ୍ନ ଅଂଶରେ ଅପୂର୍ବ ସୁନ୍ଦର କାରୁକାର୍ଯ୍ୟ ଶୋଭିତ, ଯେପରି ଏସିଆର କଳ୍ପନା ଜଗତ୍ ସମ୍ରାଟ ଆକବରଙ୍କ ହିନ୍ଦୁ ସାମ୍ରାଜ୍ୟରେ ମୂର୍ତ୍ତି ହୋଇଛି । ସେ ଜଗତର ସମସ୍ତ ସୌନ୍ଦର୍ଯ୍ୟ ଯେପରି ଭଗବାନଙ୍କ ଚରଣରେ ଲୀନ ହେବ, ଭଗବାନଙ୍କ ବାହାରେ ଆଉ କାହାର ସତ୍ତା ନାହିଁ ।

ସୋପାନ ଶ୍ରେଣୀ ଅତିକ୍ରମ କରି ଉପର ମହଲକୁ ଉଠିଲି । ଏଠାରେ ଦୁଇଟି ପ୍ରକୋଷ୍ଠ । ପ୍ରଥମ ପ୍ରକୋଷ୍ଠରେ ପ୍ରବେଶ କରି ମନେ ହେଲା, ଯେପରି ମୁଁ ସ୍ୱର୍ଗ ରାଜ୍ୟକୁ ଆସିଛି । ମୋ ପାଇଁ ବହୁକାଳ ହେଲା ଯେପରି ଏହା ଅପେକ୍ଷା କରିଥିଲା ।

ଚଟାଣ ଉପରେ ଏକ ପାରସ୍ୟ ଦେଶୀୟ ସତରଞ୍ଜି ବିଛା ହୋଇଥିଲା । ଏକ କୋଣରେ ସବୁଜ ସୁନେଲି ରଙ୍ଗର କୁଶାନ ଥିଲା । ଗୋଟିଏ ଥାକ ଉପରେ ରକ୍ଷିତ ଥିଲା ବହୁକାଳ ବିସ୍ମୃତ ଚର୍ମ ନିର୍ମିତ ଶରାଧାର, ଗୋଟିଏ ବୀଣା ଓ ଗୋଟିଏ ଛୁରିକା । ସମ୍ଭବତଃ ମୋ ଭଳି ଦାରା ହିଁ ଏଠାରେ ସର୍ବଶେଷ ଅତିଥି ଥିଲେ । ତାଙ୍କ ବ୍ୟତୀତ ଆଉ କିଏ ଏପରି ଚିଜ ସଂଗ୍ରହ କରିପାରେ ?

କୋୟେଲ ଗୋଟିଏ ମୃତ୍‌ପାତ୍ରରେ କେତେଗୁଡ଼ିଏ ଶ୍ୱେତ ହରିଦ୍ରାଭ ଚମ୍ପକ ପୁଷ୍ପ ସଂଗ୍ରହ କରିଥିଲା । ପୁଷ୍ପଗନ୍ଧରେ ପବନ ଆମୋଦିତ ହୋଇ

(୧) ଏକାଧିକ ସ୍ତ୍ରୀ ବିବାହ କରାଯାଇ ପାରେ ବୋଲି କୋରାଣରେ ନିର୍ଦ୍ଦେଶ ଅଛି । ଆକବର ଏକ ସ୍ତ୍ରୀ ଗ୍ରହଣ କରାସିବା ଉଚିତ ବୋଲି ମତ ଦେଉଥିଲେ । ଏଥିପାଇଁ ତାଙ୍କୁ ବହୁ ଆଘାତ ସହ୍ୟ କରିବାକୁ ପଡ଼ିଥିଲା ।

ଉଠିଲି । ମୁଁ ବାରନ୍ଦାରେ ବିଶ୍ରାମ ନେଲି । ଏଠାର ପ୍ରାଚୀରଗୁଡ଼ିକ ଚମତ୍କାର ଭାବେ ଖୋଦିତ । ଏଇ ଭାସ୍କର୍ଯ୍ୟ ମଣିଷ ମନରେ ଏକ ପ୍ରଶାନ୍ତିର ଭାବ ଆଣେ । ଆଗ୍ରା ପ୍ରାସାଦର ସକଳ ବସ୍ତୁ ମଧ୍ୟରେ ସ୍ୱର୍ଣ୍ଣ-ଅଳଙ୍କାର, ମଖମଲର ଆବରଣ, ମୂଲ୍ୟବାନ ପ୍ରସ୍ତର କାର୍ଯ୍ୟ, କିନ୍ତୁ ଏଠାରେ କେବଳ ବାଲୁକା ପଥରର ସମାବେଶ । ମନେ ହେଲା, ଜୀବନବ୍ୟାପୀ ଅସ୍ୱସ୍ତି ପରେ ଟିକିଏ ଶାନ୍ତି ପାଇଁ ଖଣ୍ଡିଏ ପ୍ରସ୍ତର ଉପରେ ଶରୀର ଲେଉଟାଇଦେବି ।

କୋଫ୍ରେଲ ମୋ ପାଇଁ କିଛି ଖାଦ୍ୟ ପଦାର୍ଥ ଆଣିଥିଲା । ଚିତ୍ରଟି ଆଣିବା ପାଇଁ ମୁଁ ତାକୁ ଆଦେଶ ଦେଲି । ଦେଖିଲି ଚିତ୍ରାଧାର ଛିନ୍ନ ପତ୍ରରେ ସମ୍ରାଟ ଆକବରଙ୍କ ସମସ୍ତ ଉତ୍‌କୀର୍ଣ୍ଣ ହୋଇଛି । ଅବଶ୍ୟ ସେ ଚିତ୍ରରେ ଭାରତର କୌଣସି ମହାକାବ୍ୟର ଦୃଶ୍ୟ କିମ୍ବା କେଉଁ ବିଜୟାପ୍ତ ଘଟଣା ଅଙ୍କିତ ହୋଇ ନ ଥିଲା । ଚିତ୍ରାଧାର ମଧ୍ୟରେ ଥିଲା—ପାଲିଙ୍କି-ବାହକ ଚିତ୍ରକର ଦଶନାଥଙ୍କ (୧) ଅଙ୍କିତ ଗୋଟିଏ କ୍ଷୁଦ୍ର ଚିତ୍ର । ମୋ ମାନସିକ ଅବସ୍ଥା ଦୃଷ୍ଟିରୁ ଏଇ ଚିତ୍ରଟି ମୋ ପକ୍ଷରେ ସୁମହାନ୍ ଆଶୀର୍ବାଦ ପରି ଥିଲା । ଚିତ୍ରଟିର ପ୍ରଚ୍ଛଦ ପଟରେ ଥିଲା ଉଚ୍ଚ ପ୍ରାସାଦ । ତାହାର ଚତୁର୍ଦ୍ଦିଗରେ ରକ୍ତିମାର ଉଜ୍ଜ୍ୱଳ ପର୍ବତମାଳା ପରିବେଷ୍ଟିତ ପ୍ରାଚୀର । ଏଇ ଔଜ୍ଜ୍ୱଲ୍ୟ ଆରାବଲ୍ଲୀ ପର୍ବତମାଳା ଗାତ୍ରରେ ହରିଦ୍ରାଭ ସ୍ଫଟିକର ଜ୍ୟୋତି କି ? ସନ୍ଧ୍ୟାକାଶର ଈଷତ୍ ସ୍ୱର୍ଣ୍ଣାଭ ଜ୍ୟୋତି ମଧ୍ୟରେ ଆରାବଲ୍ଲୀର ପ୍ରଭା ବିଲୀନ ହୋଇଗଲା । ଏକ ସ୍ୱଳ୍ପ ପରିସର ପଥ ସରୀସୃପ ଗତିରେ ପ୍ରାସାଦ ଅଭିମୁଖେ ଯାଇଛି । ସମ୍ମୁଖରେ ଗୋଟିଏ ନାରୀର ଚିତ୍ର । ହୁଏତ କେଉଁ ନବ ବିବାହିତା ବଧୂ, ତାର ଦୃଷ୍ଟି ଊର୍ଦ୍ଧ୍ୱ-ନିବଦ୍ଧ । ସେ ନୟନର ଜ୍ୟୋତି ଆଜି ବି ବିସ୍ମୃତ ହୋଇପାରି ନାହିଁ । ତାହାର ଊର୍ଦ୍ଧ୍ୱୋତ୍ତୋଳିତ ଦକ୍ଷିଣ ବାହୁ ବାମ ହସ୍ତର ତରବାରି ଦିଗରେ ପ୍ରସାରିତ । ତା ପଶ୍ଚାତରେ ସୁସଜ୍ଜିତ ସୈନ୍ୟ ଦଳ ଗୋଟିଏ ଚିତା ପ୍ରସ୍ତୁତ କରୁଥିଲେ ।

---

(୧) ଦଶନାଥ ଥିଲେ ଜଣେ ଅତି ଦରିଦ୍ର ପାଲିଙ୍କି ବାହକ ହରିଜନ ପୁତ୍ର । ମଥୁରାର ମନ୍ଦିର ଗାତ୍ରରେ ଅଙ୍ଗାର ସାହାଯ୍ୟରେ ସେ ଗୋଟିଏ ଛବି ଅଙ୍କିଥିଲେ । ଆକବର ତାହା ଦେଖି ତାଙ୍କ ପ୍ରତିଭାର ସନ୍ଧାନ ପାଇଲେ ଏବଂ ଦଶନାଥଙ୍କୁ ରାଜପ୍ରାସାଦକୁ ଆଣି ଉପଯୁକ୍ତ ଶିକ୍ଷା ଦେବାକୁ ଲାଗିଲେ । ପରିଶେଷରେ ଦଶନାଥ ରାଜଶିଳ୍ପୀର ସମ୍ମାନ ଲାଭ କଲେ । ଆକବରଙ୍କର ଲୋକ ଚିହ୍ନିବାର ଅପୂର୍ବ ଦକ୍ଷତା ଥିଲା ।

ମୁଁ କୋସ୍ନେଲକୁ ପଚାରିଲି, "କୋସ୍ନେଲ, ତୁମେ ତ ହିନ୍ଦୁନାରୀ, କୁହ ତ ଏହାର ଅର୍ଥ କ'ଣ ?"

ସେ ମୁହୂର୍ତ୍ତେ ମାତ୍ର ନିରୀକ୍ଷଣ କରି ମୋ ଆଡ଼କୁ ଅନାଇଲା । ତାର ଅଶ୍ରୁପୂର୍ଣ୍ଣ ନୟନରେ ଏକ ଅପୂର୍ବ ଶୋଭା । କମ୍ପିତ କଣ୍ଠରେ ମୃଦୁ ସ୍ୱରରେ କହିଲା, "ଏଇ ଚିତ୍ରର ନାୟିକା କୁମାର ଦେବୀ (କୁରମଦେବୀ) । ପ୍ରାୟ ଶତାଧିକ ବର୍ଷ ତଳର କଥା । ଏକଦା କୁମାର ଦେବୀ ମଣ୍ଡୋର ରାଜ-କୁମାରଙ୍କୁ ଦେଖି ମୁଗ୍ଧ ହୋଇଥିଲେ । ସେ ରାଜକୁମାରଙ୍କୁ ସ୍ୱାମୀଭାବରେ ବରଣ କରିଥିଲେ । କିନ୍ତୁ ତାଙ୍କ ପିତା ତାଙ୍କୁ ଅନ୍ୟ ରାଜକୁମାରଙ୍କ ସଙ୍ଗେ ବିବାହ ଦେବେ ବୋଲି ସ୍ଥିର କରିଥିଲେ । ମଣ୍ଡୋରର ରାଜକୁମାର ଦେବୀଙ୍କ ବିବାହ ଯାତ୍ରା ପଥରେ ଆକ୍ରମଣ କଲେ । କିନ୍ତୁ ତାଙ୍କର ମୃତ୍ୟୁ-ହେଲା । କୁମାର ଦେବୀ ସ୍ୱୟଂ ତରବାରୀରେ ତାଙ୍କର ଦକ୍ଷିଣ ହସ୍ତ ଛିନ୍ନ କରି ବରପିତାଙ୍କ ନିକଟକୁ ଉପହାର ପଠାଇଲେ । ଅଥଚ ସେ ବରପିତାଙ୍କୁ କେବେ ଦେଖି ନ ଥିଲେ । ଉପହାରରେ ଲେଖାଥିଲା,—'ଏଇ ଆପଣଙ୍କ ପୁତ୍ରବଧୂ ।' ଅନ୍ୟ ହସ୍ତଟି ଅନ୍ୟ ଜଣେ ସୈନ୍ୟଦ୍ୱାରା ଛିନ୍ନ କରାଇ ନିଜ ପିତାଙ୍କ ନିକଟକୁ ପଠାଇ ଦେଲେ । ତାହାପରେ କୁମାର ଦେବୀ ଚିତାରେ ଆତ୍ମାହୂତି ଦେଲେ, ରାଜକୁମାରୀ ଥିଲେ ହିନ୍ଦୁସ୍ଥାନର ନାରୀ ।"

କୋସ୍ନେଲ ଚାଲିଗଲା—ମୁଁ ଏକାକିନୀ ମୋ କୁଶାନରେ ମସ୍ତକ ନୁଆଇଁ ବସି ରହିଲି । କୁମାର ଦେବୀଙ୍କ ତୀକ୍ଷ୍ଣ ଦୃଷ୍ଟି ଯେପରି ମୋତେ ଅନୁସରଣ କରୁଥିଲା । ହଠାତ୍ ମନେ ପଡ଼ିଲା—ସମ୍ରାଟ ଆକବରଙ୍କ ଏଇ ଅନ୍ତଃପୁରରେ ମୁଁ ଜଣେ ପ୍ରବାସୀ ମାତ୍ର । ସମ୍ରାଟ ଆକବର ମୋଗଲ ରକ୍ତ ସଙ୍ଗେ ହିନ୍ଦୁସ୍ଥାନର ରକ୍ତର ମିଶ୍ରଣ ପାଇଁ ବୃଥା ଚେଷ୍ଟା କରୁଥିଲେ । କିନ୍ତୁ ହିନ୍ଦୁସ୍ଥାନ ହିନ୍ଦୁର ରହିଲା । ଆଉ ମୋଗଲ ? ମୋଗଲ୍-ମୋଗଲ ହୋଇ ରହିଲା, ନୁହେଁ କି ? ଏଇ ତ ହିନ୍ଦୁସ୍ଥାନର ନାରୀ । ସେ ସ୍ୱାମୀର ପ୍ରାୟଶ୍ଚିତ୍ତର ଅଗ୍ନିଶିଖା ମଧ୍ୟ ଦେଇ ସ୍ୱାମୀ ସଙ୍ଗେ ଚିର ମିଳନ ଲାଭ କରିବ, ଏଇ ଆଶାରେ ଅବଳୀଳା କ୍ରମେ ସ୍ୱାମୀର ଚିତାରେ ଆରୋହଣ କରିପାରେ । ସେ ନିଷ୍ଠୁର ସୁଲ୍ତାନର ଅଂଶଭାଗିନୀ ବିଦେଶିନୀ ନାରୀକୁ ଘୃଣା କରି ଜାଣେ । ବିଦେଶିନୀ କେବେ ସ୍ୱାମୀ ଚିତାରେ ଆରୋହଣ କରିପାରିବ ନାହିଁ । ମୋତେ ସେ ଘୃଣା କରିବ, ଏଇ ତ ସ୍ୱାଭାବିକ ।

ଚନ୍ଦ୍ର ବହୁନେ ସ୍ରୋତ ଯେପରି ବିପରୀତ ଦିଗରେ ବହିଯାଏ, ଦୁଃଖ-ପୀଡ଼ିତ ପ୍ରେମ-ଅବଲୁପ୍ତ-ଗୌରବରେ ମୋର ମନ ସେହିପରି ସଙ୍କୁଚିତ ହୋଇପଡ଼ିଲା । ଆଜି ତୈମୁରଙ୍କ ସେଇ ଯାଯାବରି ସୈନ୍ୟ-ବାହିନୀ କେଉଁଠି ? ମୋର ସେ ଆତ୍ମବିଶ୍ୱାସ ଆଉ କାହିଁ ?

ମୁଁ କାନ୍ଦି ଉଠିଲି, ମୋ ମାଆଙ୍କ ମୃତ୍ୟୁ ପରେ ଆଉ କେବେ ମୁଁ ଏପରି କାନ୍ଦି ନ ଥିଲି । ମନେ ହେଲା, ପାଦତଳର ପୃଥିବୀ ଘୁଞ୍ଚିଯାଇଛି । ସମଗ୍ର ପୃଥିବୀ ଯେପରି କେଉଁ ଭୀଷଣ ଆଦେଶର ଅପେକ୍ଷା କରୁଛି ।

ଭାରତର ଭବିଷ୍ୟତ ଏବଂ ମୋର ସମସ୍ତ ଭରସା ମୋର ରାଖିବନ୍ଧ ଭାଇଙ୍କ ଉପରେ ନିର୍ଭର କରୁଛି ।

କାନ୍ଦି କାନ୍ଦି ନିଦ୍ରାକୋଳରେ ଶୋଇପଡ଼ିଲି । ପୁଣି ହଠାତ୍ ଅଶ୍ୱପଦ ଶବ୍ଦରେ ଉଠି ବସିଲି । ଆଗ୍ରାର ପଥରୁ ସେଇ ଶବ୍ଦ କ୍ରମଶଃ ନିକଟତର ହୋଇ ଆସୁଥିଲା । ତାପରେ ଅକସ୍ମାତ୍ ସେ ଶବ୍ଦ ନୀରବ ହୋଇଗଲା ।

ସମ୍ରାଟ ଆକବରଙ୍କ ମୃତ ନଗରୀରେ ମୁଁ ନୂତନ ଜୀବନ ଅନୁଭବ କଲି । ଭାବୁଥିଲି, ମୋ କକ୍ଷର ପ୍ରସ୍ତର ନିର୍ମିତ ଦୀର୍ଘାୟତମାନ ଦରଜା ମୋତେ ନିକଟସ୍ଥ ପ୍ରକୋଷ୍ଠକୁ ନେଇଯିବ ଏବଂ ମୁଁ ସମ୍ରାଟଙ୍କୁ ଦେଖିବାକୁ ପାଇବି ।

ଦ୍ରୁତଗାମୀ ଅଶ୍ୱ ପଦଧ୍ୱନି ମୋ ଶିରାର ରକ୍ତକୁ ଚଞ୍ଚଳ କରିଦେଲା । ଭାରତବର୍ଷକୁ ରକ୍ଷା କରିବା ପାଇଁ ନିଶ୍ଚୟ ରାଜପୁତ ବାହିନୀ ଛୁଟି ଆସୁଛନ୍ତି । ରାଜସ୍ଥାନର ପ୍ରତ୍ୟେକ ନାରୀ ବୀରପ୍ରସବିନୀ । କୋଗ୍ୟେଲ କହୁଥିଲା, "ଯୌବନରେ ମୁଁ ଯେପରି ଥିଲି, ଏବେ ବି ସେହିପରି ସୁନ୍ଦରୀ ଅଛି । ସତ ନୁହେଁ କି ?"

ଚକାଧାର ପାଇଁ ହାତ ବଢ଼ାଇଲି । ଚକାଧାରଟି ମୋତେ ଚୁମ୍ବକ ପରି ଆକର୍ଷଣ କରିଥିଲା । ଚକାଧାରଟି ଖୋଲିଲି; ଆଉ ଗୋଟିଏ ଚକ ଆଖିରେ ପଡ଼ିଲା । ସେ ଚକରେ ଥିଲେ, ଶ୍ରୀକୃଷ୍ଣ । ଏକଦା ତାଙ୍କର ସହସ୍ର ଗୋପନାରୀଙ୍କ ସମ୍ମୁଖରେ ଉପସ୍ଥିତ । ରୁକ୍ମଣୀ ଶ୍ରୀକୃଷ୍ଣଙ୍କ ଜ୍ୟୋତିରେ ଉଦ୍ଭାସିତା, କାଳନ୍ଦୀ ଉପରେ ଶାୟିତା ଶ୍ରୀକୃଷ୍ଣ, ସତ୍ୟଭାମାଙ୍କ ସହିତ

ଙ୍ଗୀଡ଼ାରତ । ଯେ ତାହାଙ୍କୁ ଯେଉଁ ରୂପରେ ଆକାଂକ୍ଷା କରେ, ଶ୍ରୀକୃଷ୍ଣ ତାହା ନିକଟରେ ସେହି ରୂପରେ ଉପସ୍ଥିତ ହୁଅନ୍ତି । (୧) ଶବ ଶ୍ରମ୍ନରେ ଖୋଦିତ ଅଛି—

"ତୁମ ଦାସକୁ ତୁମେ ଦରିଦ୍ରତର କର । କାରଣ ଦରିଦ୍ର ହିଁ ତୁମକୁ ନିତ୍ୟ ସ୍ମରଣ କରେ ।"

କୋଫେଲ୍ ମୋ ପାଇଁ ଗୋଟିଏ ଦର୍ପଣ, କଛି ଗୁଗ୍ଗୁଳ ଏବଂ ନଖ ପାଇଁ ରକ୍ତଚନ୍ଦନ ରଖିଦେଇ ଯାଇଥିଲା । ଯେପରି ମୁଁ ବିବାହ ଉତ୍ସବ ଆମନ୍ତ୍ରଣରେ ଯିବି । ଅବଶ୍ୟ ଫତେପୁର ସମାଧିକୁ ଯାଇ ସେଲିମ୍ ଚିଶ୍ତିଙ୍କ ଦର୍ଶନ କରିବି । ମୁଁ ମୋର ସକଳ ମଣିମୁକ୍ତା ରଖି ଯାଇଥିଲି, ସଙ୍ଗରେ ଥିଲା ଏକମାତ୍ର ମୁକ୍ତାହାର । ତା ମଧ୍ୟରେ କବଚ, କବଚ ମଧ୍ୟରେ ସେଇ ପତ୍ରଟି । ଅତି ଧୀରେ ପରି ମୁଁ ସେହି ମହାପୁରୁଷଙ୍କ ନିକଟକୁ ଯିବି । ତାଙ୍କର ନ ଥିଲା ମଣିମୁକ୍ତା କିମ୍ବା କୌଣସି ପାର୍ଥିବ ସମ୍ପଦ—କିନ୍ତୁ ତାଙ୍କର ଥିଲା ଆଲୌକିକ କ୍ଷମତା—ବନ୍ୟ ପଶୁକୁ ସେ ଦୂରେଇ ରଖି ପାରୁଥିଲେ । ମଣିଷକୁ ସେ ନିଜ ପାଖକୁ ଆକର୍ଷଣ କରୁଥିଲେ ।

"ଆଲ୍ଲାହ୍, ତୁମ ଦାସକୁ ତୁମେ ଦରିଦ୍ରତର କର ।" ସେଲିମ୍ ଚିଶ୍ତିଙ୍କ ଦାରିଦ୍ର୍ୟ ହିଁ ଯେପରି ସମ୍ରାଟଙ୍କୁ ଫତେପୁର ଶିକ୍ରି ନିର୍ମାଣ କରିବାର ପ୍ରେରଣା ଦେଇଥିଲା । ଦାରିଦ୍ର୍ୟର ଅନ୍ତର୍ନିହିତ ଶକ୍ତି—ତାହା କି ସୌନ୍ଦର୍ଯ୍ୟର ପରିପନ୍ଥୀ । ମୋ ଗୃହପାଖକୁ ନିରୀକ୍ଷଣ କରି ଦେଖିଲି, ଏବେ ମଧ୍ୟ ସେଇ ଶାନ୍ତି ବିଦ୍ୟମାନ ।

ମୋ ଭାଇ ଆଉରଙ୍ଗଜେବ ଟୋପି ତିଆରି କରନ୍ତି, ଫକୀର ପରି ସେ ଟୋପି ବିକ୍ରି କରନ୍ତି । ତାଙ୍କର କ୍ଷମତା ପ୍ରତି ଆସକ୍ତି ଥିଲା । କିନ୍ତୁ ସୌନ୍ଦର୍ଯ୍ୟ ଦେଖିଲେ ଆଉରଙ୍ଗଜେବ ଅତିଷ୍ଠ ହୋଇ ଉଠୁଥିଲେ । ମୋ ପିତାଙ୍କର ଥିଲା ସୌନ୍ଦର୍ଯ୍ୟ ପ୍ରୀତି । ଆଜି ଯଦି ତାଙ୍କର ସେଇ ପୂର୍ବ କ୍ଷମତା ଥା'ନ୍ତା, ମୁଁ ଆଗ୍ରା ପ୍ରତ୍ୟାବର୍ତ୍ତନ କରି ଚୁଗ୍‌ଣ ଲୋକମାନଙ୍କ ମଧ୍ୟରେ ବହୁ ହସ୍ତୀ-ଅଶ୍ୱ ବାଣ୍ଟି ଦେବି—ସେମାନେ ପ୍ରାର୍ଥନା ପାଇଁ ମସଜିଦ ଓ ମନ୍ଦିରକୁ

(୧) ଜାହାନାରାଙ୍କର ହିନ୍ଦୁ ଶାସ୍ତ୍ର ଓ ଉପାଖ୍ୟାନରେ ଅତି ଗଭୀର ଓ ବ୍ୟାପକ ଜ୍ଞାନ ଥିଲା ।

ଆସିବେ । ମୁଁ କ୍ରୀତଦାସ ଓ କ୍ରୀତଦାସୀମାନଙ୍କୁ ମୁକ୍ତ ଦେବ । ଦରିଦ୍ର-ମାନଙ୍କ ମଧ୍ୟରେ ଦଶ ସହସ୍ର 'ଦୀନାର୍' (୧) ବାଣ୍ଟି ଦେବି । ମୋ ଦାନରେ ପିତାଙ୍କ ପାପର କାଞ୍ଚିତ୍ ପ୍ରାୟଶ୍ଚିତ୍ତ ହେବ ।

ମୁଁ ଜୁମ୍ମା ମସ୍‌ଜିଦ ଅଭିମୁଖେ ଗଲି । ତା'ପରେ ଶେଖ ଆବୁଲ ଫାଜଲ ଓ ତାଙ୍କ ଭାଇ ଫୈଜୀଙ୍କ ଅନାଡ଼ମ୍ବର ଗୃହ ବାଟିକାରେ ଉପସ୍ଥିତ ହେଲି । ସମ୍ରାଟ ଆକ୍‌ବରଙ୍କ ସାମ୍ରାଜ୍ୟ ଓ ଦୀନ-ଇ-ଇଲାହି ଏଇ ଭ୍ରାତୃ ଦ୍ୱୟଙ୍କ ନିକଟରେ କେତେ ଋଣୀ ! ମୁଁ ସ୍ଥିର ପାଦରେ ଚାଲୁଥିଲି, ମୋ ମସ୍ତକ ଶ୍ରଦ୍ଧାରେ ଅବନତ ହୋଇ ପଡ଼ୁଥିଲା । ଫୈଜୀଙ୍କ କ୍ଷୁଦ୍ର ଗୃହର ସୋପାନ ଶ୍ରେଣୀ ଆରୋହଣ କଲି । ମନେ ହେଲା, ଯେପରି ସେ ରାଜକବି ସମ୍ରାଟଙ୍କ ସମ୍ମୁଖରେ ଆବୃତ୍ତି କରୁଛନ୍ତି ! ଶ୍ରୀକୃଷ୍ଣଙ୍କର କୌଣସି କାହାଣୀ କିମ୍ବା ବାସୀର୍-ଇ ଖୁସ୍‌ରୁଙ୍କ କୌଣସି କବିତା ।

ସିନ୍ଧୁ ପରି ସୁବିଶାଳ ଶାସ୍ତ୍ରର ବିଧାନ
ମୁକ୍ତାପରି ଋଷି ଅନ୍ତର୍ଦୃଷ୍ଟି ସୁମହାନ୍ ।
ସମୁଦ୍ର ଗହ୍ୱରେ ନ୍ୟସ୍ତ ମୁକ୍ତା ଶତ ଶତ,
ଖୋଜ ହେଜ ଗୁରୁଙ୍କ ସନ୍ଧାନେ ହୁଅ ରତ ।

ଫୈଜୀଙ୍କ ସମ୍ପର୍କରେ ଗୋଟିଏ କଥା ମନେ ପଡ଼ୁଛି । ଯଦିଓ ସେ ଥିଲେ ଅତି ଖ୍ୟାତ କବି, ନିଜ ପ୍ରୟୋଜନରେ କେବେ ସେ କୌଣସି ବସ୍ତୁ ଭିକ୍ଷା କରି ନ ଥିଲେ । ତେବେ ଅନ୍ୟ ଜଣଙ୍କ ପାଇଁ ଅନୁଗ୍ରହ ଭିକ୍ଷା କରି ସେ ସମ୍ରାଟଙ୍କୁ ପତ୍ର ଲେଖିଥିଲେ, ଯଦିଓ ସେ ଜାଣିଥିଲେ ଯେ, ସେ ଲୋକ ଜଣକ ( ୨ ) ତାଙ୍କୁ ଘୃଣା କରୁଥିଲେ ।

ମନେ ପଡ଼ୁଛି; ଫୈଜୀ କି ଅପୂର୍ବ ବିନୀତ ଭାଷାରେ ସମ୍ରାଟଙ୍କ ନିକଟରେ ଶତ୍ରୁ ପାଇଁ କ୍ଷମା ପ୍ରାର୍ଥନା କରିଥିଲେ । ସିଂହାସନ ଚତୁଃପାର୍ଶ୍ୱରେ

(୧) ମୋଗଲ-ଯୁଗରେ ପ୍ରଚଳିତ ମୁଦ୍ରା ।

(୨) ଧର୍ମାନ୍ଧ ବାଦାୟୁନୀ ଥିଲେ ଉଦାରପନ୍ଥୀ ଫୈଜୀ ଏବଂ ଆବୁଲ ଫାଜଲଙ୍କ ଶତ୍ରୁ । ଏହା ରାଜ ଦରବାରରେ ସମସ୍ତେ ଜାଣିଥିଲେ । ବାଦାୟୁନୀ ମିଥ୍ୟା କଥା କହିବାରୁ ରାଜରୋଷରେ କର୍ମଚ୍ୟୁତ ହେଲେ । ଫୈଜୀ କିନ୍ତୁ ତାଙ୍କପାଇଁ ସମ୍ରାଟଙ୍କୁ ଅନୁରୋଧ କରି ତାଙ୍କୁ ପୁଣି କାର୍ଯ୍ୟରେ ପୁନଃ ପ୍ରତିଷ୍ଠିତ କଲେ । ଜାହାଙ୍ଗୀର ଏଠାରେ ତାହା ହିଁ ଉଲ୍ଲେଖ କରିଛନ୍ତି ।

ଯେଉଁ ସକଳ ଶୁଦ୍ଧ ଆତ୍ମା ଘୂରି ବୁଲୁଛନ୍ତି । ସେମାନେ ପ୍ରତ୍ୟହ ପ୍ରତ୍ୟୁଷରେ ଜନସ୍ମ ବସୁନ୍ଧରାଙ୍କ ସ୍ତୁତି ଗାନ କରନ୍ତି—ସେହିମାନଙ୍କ ନାମରେ ମୁଁ ସମ୍ରାଟଙ୍କୁ ନିବେଦନ ଜଣାଉଛି ।

ତାହାପରେ ମୁଁ ଆବୁଲ ଫାଜ୍‌ଲଙ୍କୁ ତାଙ୍କର ଆବାସରେ ଅଭି-ନନ୍ଦନ ଜ୍ଞାପନ କରିବାକୁ ଗଲି । ଏଇଠାରେ ଆବୁଲଫାଜଲ୍ ଗବେଷଣା-ନିମଗ୍ନ ରହୁଥିଲେ । ତାଙ୍କର ମୂଲ୍ୟବାନ ଗ୍ରନ୍ଥସବୁ ରଚନା କରୁଥିଲେ । ସେ ପ୍ରଚାର କରିଥିଲେ—ଭାରତର ବହୁ ଈଶ୍ୱରଙ୍କ ଉପରେ ଅଛନ୍ତି ପରମେଶ୍ୱର । ସେହି ଏକ ଈଶ୍ୱର ହିଁ ,ସମସ୍ତ ମନୁଷ୍ୟଙ୍କ ସ୍ରଷ୍ଟା ଓ ପରି-ପାଳକ । ସୁତରାଂ ବର୍ଷର ବିଶେଷ ବିଶେଷ ଦିନରେ ଭାରତ ବର୍ଷରେ ମନୁଷ୍ୟର ରକ୍ତପାତ ହେବ ନାହିଁ । ବିବାଦର ଅଙ୍କୁର ନଷ୍ଟକରି ଶାନ୍ତିର ପୁଷ୍ପୋଦ୍ୟାନ ରଚନା କରିବାକୁ ହେବ ।

ହେ ଈଶ୍ୱର ତୁମ ଅନ୍ୱେଷଣ ଘୂରେ ମନ୍ଦିରେ, ମନ୍ଦିରେ,
ଧ୍ୱନି ତ ପୃଥିବୀ ତୁମ ସ୍ତବର ଧ୍ୱନିରେ ।
ହିନ୍ଦୁ ଓ ମୁସଲମାନ ତୁମ ବାଣୀ କହେ;
ତୁମେ ଏକ ଅଦ୍ୱିତୀୟ ସର୍ବଧର୍ମ କହେ ।
ମାରିବେ ତୁମକୁ ସ୍ୱରେ ମସ୍‌ଜିଦେ ମୁସଲମାନ,
ଗିର୍ଜାରେ ତୁମରି ପ୍ରେମେ ଘଣ୍ଟାଧ୍ୱନି କରୁଛି ଖ୍ରୀଷ୍ଟାନ,

ଏଇ ହେଉଛି ଆବୁଲ ଫାଜଲଙ୍କ ବାଣୀ—ତାଙ୍କର ଇଚ୍ଛା ଥିଲା, ସେ ମଙ୍ଗୋଲିଆର ସାଧୁ ଓ ମହାପୁରୁଷମାନଙ୍କ ଦର୍ଶନ କରିବେ, ଲେବାନନ୍‌ର (୧) ସନ୍ନ୍ୟାସୀମାନଙ୍କ ଦର୍ଶନ କରିବେ । ସେମାନଙ୍କ ପ୍ରଭୁଙ୍କୁ ଈଶ୍ୱରଙ୍କ ପ୍ରତିନିଧି ରୂପେ ବରଣ କରିବେ । ଈର୍ଷାନ୍ୱିତ ରାଜକୁମାର ସେଲିମ୍ ବିଶ୍ୱାସଘାତକତା କରି ତାଙ୍କ ଶିର ଛେଦର ବ୍ୟବସ୍ଥା କରିଥିଲେ । ଶୋକ-ବିହ୍ୱଳ ଆକ୍‌ବର ଆହାର ନିଦ୍ରା ତ୍ୟାଗ କଲେ । ବନ୍ଧୁ ଆବୁଲ ଫାଜଲଙ୍କ ଜୀବନ ବିନିମୟରେ ସେ ନିଜ ଜୀବନ ଉତ୍ସର୍ଗ କରିବାକୁ କୁଣ୍ଠିତ ହୋଇ ନ ଥାନ୍ତେ ।

(୧) ଲେବାନନ୍ ଦେଶର ବାଲ୍‌ବେକ ମନ୍ଦିରରେ ଏବେ ବି ଭାରତୀୟ ସନ୍ନ୍ୟାସୀ-ମାନଙ୍କ ଅନୁକରଣରେ ଦେବତାଙ୍କ ଅର୍ଚ୍ଚନା କରାଯାଏ । ଧୂପ, ପ୍ରଦୀପ ଓ ଘଣ୍ଟା ଧ୍ୱନିଦ୍ୱାରା ପ୍ରତି ସନ୍ଧ୍ୟାରେ ଦେବତାଙ୍କ ଆରାଧନା ହୁଏ ।

ମୋ ପାଦତଳର ପ୍ରସ୍ତର ଖଣ୍ଡ ଆମ ବଂଶର ବହୁ ପାପର ମୂର୍ତ୍ତି ପ୍ରତୀକ ପରି ମନେ ହେଲା । ମୋତେ କ'ଣ ସମଗ୍ର ଜୀବନ ଏହି ପଥରେ ଚାଲିବାକୁ ହେବ ? ଅକସ୍ମାତ୍ ମୋ ପାଦତଳେ ଏକ ବୃହତ୍ ପଥର ଖଣ୍ଡରେ ରକ୍ତ ଚିହ୍ନ ଦେଖିଲି । ମୁଁ ଶିହରି ଉଠିଲି, ସମ୍ରାଟ ଆକବରଙ୍କୁ କ'ଣ ପାପ ସ୍ପର୍ଶ କରିଥିଲା ?

ରାଜତୋରଣ ମଧ୍ୟ ଦେଇ ଜୁମ୍ମା ମସ୍‌ଜିଦ ପ୍ରାଙ୍ଗଣରେ ପ୍ରବେଶ କଲି । ଅସ୍ତାୟମାନ ସୂର୍ଯ୍ୟର ଶେଷରଶ୍ମି ପାଦତଳର ପ୍ରସ୍ତର ଖଣ୍ଡ ସବୁକୁ ରକ୍ତାଭ କରିଥିଲା । ସେହି ପଟ୍ଟଭୂମିକାରେ ସେଲିମ୍ ଚିସ୍‌ତିଙ୍କ ମର୍ମର ସମାଧି ମୁକ୍ତାଶୁଭ୍ର ଉଜ୍ଜ୍ୱଳତାରେ ଉଦ୍‌ଭାସିତ ହୋଇଉଠିଥିଲା ।

ବର୍ତ୍ତମାନ ଦେଖୁଛି, ସ୍ତମ୍ଭର ପାଦଦେଶରେ ଆଉ କୌଣସି ଲୋଲୁପ ଶିଷ୍ୟ ଉପସ୍ଥିତ ନାହାନ୍ତି । ପୁଣ୍ୟ ଋଦ୍ଧବସୋଚିତ ପରିଚ୍ଛଦଭୂଷିତ କୌଣସି ବ୍ୟକ୍ତି ହୋମକୁଣ୍ଡ ନିକଟରେ ଉପସ୍ଥିତ ନାହାନ୍ତି । ମୁଁ ଏକାକିନୀ ସେହି ମହାପୁରୁଷଙ୍କ ପୁଣ୍ୟ ସମାଧି କ୍ଷେତ୍ରର ତୀର୍ଥଯାତ୍ରୀ ।

ଏହି କ୍ଷୁଦ୍ର ପବିତ୍ର ତୀର୍ଥକେନ୍ଦ୍ରଟି ସମ୍ରାଟ ଆକବରଙ୍କ ସମାଧିର ଅନୁରୂପ— ଶ୍ରେଣୀବଦ୍ଧ ସଚ୍ଛିଦ୍ର ଶ୍ୱେତମର୍ମର ଗବାକ୍ଷ ସମାଧି ପ୍ରଦକ୍ଷିଣ କରିଛି । ସେ ସବୁ ଇଯୁରୋପୀୟ ମଠମାନଙ୍କରେ ଝାଲର ଉତ୍ସବ ସ୍ମରଣ କରାଇ ଦେଉଥିଲା । (୧) ସମଗ୍ର ହିନ୍ଦୁସ୍ଥାନରେ ଆଉ କେଉଁଠି ଏପରି ସମାଧି ମନ୍ଦିର ପରିକଳ୍ପିତ ହୋଇଛି ? ଏହି ଅର୍ଘ୍ୟ ସମ୍ରାଟ ସ୍ୱୟଂ ସେଲିମ୍ ଚିସ୍‌ତିଙ୍କୁ ଉତ୍ସର୍ଗ କରିଥିଲେ । ସୋପାନ ଅତିକ୍ରମ କରି ମୁଁ ପ୍ରବେଶପଥ ଅଭିମୁଖେ ଅଗ୍ରସର ହେଲି । ସମ୍ରାଟ ଆକ୍‌ବରଙ୍କ ଦରଜା ଉପରେ ଗୋଟିଏ ରୌପ୍ୟ ନିର୍ମିତ ଅଶ୍ୱକ୍ଷୁର ସ୍ଥାପିତ ହୋଇଥିଲା । ଏହି ମାତ୍ର ଯେ ଅଶ୍ୱକ୍ଷୁର ଧ୍ୱନି ଶୁଣୁଥିଲି, ତାହା ମୋତେ ସେହି ଦୃଶ୍ୟ ସ୍ମରଣ କରାଇ ଦେଉଥିଲା । କଳ୍ପନା ନେତ୍ରରେ ଦେଖିଲି, ସହସ୍ର ରାଜପୁତ ଅଶ୍ୱାରୋହୀ ଦ୍ରୁତଗତିରେ ଚାଲିଛନ୍ତି । ମୋ ପିତାଙ୍କୁ ଉଦ୍ଧାର କରିବାକୁ । ପୁଣି ଦେଖିଲି ପ୍ରାଚୀର ଗାତ୍ରରେ ସ୍ୱର୍ଣ୍ଣାକ୍ଷରରେ ଉତ୍କୀର୍ଣ୍ଣ ହୋଇଛି । "ହେ ଈଶ୍ୱର,

(୧) କ୍ୟାଥଲିକ୍ ମଠକୁ ଝାଲର ଉତ୍ସର୍ଗ କରିବା ଭକ୍ତ ଖ୍ରୀଷ୍ଟିୟାନମାନେ ଏକ ପବିତ୍ର କାର୍ଯ୍ୟ ମନେ କରନ୍ତି । ଅକ୍‌ବରଙ୍କ ସମାଧିରେ ପ୍ରସ୍ତର ନିର୍ମିତ ଝାଲର ହିଁ ତାହାହିଁ ସ୍ମରଣ କରାଇଦଏ ।

ପୌତ୍ତଳିକ ଶତ୍ରୁମାନଙ୍କ ଶାସ୍ତିବିଧାନ କରନ୍ତୁ ।" କିନ୍ତୁ ଏଇ ବିଧର୍ମୀ-ମାନଙ୍କ ମଧ୍ୟରେ ଅଛନ୍ତି ଈଶ୍ୱରବିଶ୍ୱାସୀ, ସେମାନେ ଆମ ସାମ୍ରାଜ୍ୟର ପ୍ରହରୀ ।

ଅନନ୍ତ ସଙ୍ଗେ କାଳର ଯେଉଁ ସମ୍ପର୍କ, ଅସୀମ ସଙ୍ଗେ ସ୍ଥାନର ମଧ୍ୟ ସେଇ ସମ୍ପର୍କ । ପାର୍ଥିବତାର ସକଳ ବିରୋଧ ସତ୍ତ୍ୱେ ମୁଁ ମୋ ଶୈଶବର ଅନ୍ତରାଳରେ ଆଶ୍ରୟ ଲଭି କଲି । ଜଣେ ଦେବଦୂତ ଯେପରି ମୋ ନିକଟକୁ ଗୋପନ ବାର୍ତ୍ତା ନେଇ ଆସିଥିଲେ । କେବଳ ମୋ'ର ନିକଟକୁ । ଭଗବାନ ତାଙ୍କର ପକ୍ଷ ବିସ୍ତାର କରି ଯେପରି ପୃଥିବୀର ଜୀବଗଣଙ୍କୁ ରକ୍ଷା କରନ୍ତି (୧) ସେହିପରି ଆଲ୍ଲାହ୍‌ଙ୍କ ସିଂହାସନରୁ ଓହ୍ଲାଇ ଆସିଥିଲେ ଜଣେ ଦେବଦୂତ—ସେଲିମ୍ ଚିସ୍ତିଙ୍କ ଗମ୍ବୁଜକୁ ରକ୍ଷା କରିବାପାଇଁ ।

ଶୁଦ୍ଧତମଙ୍କ ସାନ୍ନିଧ୍ୟ ଲଭ କରିବା ମଣିଷ ପକ୍ଷରେ ସହଜ ନୁହେଁ । ସମାଧି କକ୍ଷର ଚତୁର୍ଦ୍ଦିଗ ବେଷ୍ଟନ କରିଛି ଚତୁଷ୍କୋଣ ସ୍ତମ୍ଭଶ୍ରେଣୀ । ପ୍ରାଚୀରର ସଚ୍ଛିଦ୍ର ଗବାକ୍ଷ ମଧ୍ୟ ଦେଇ ଦିନର ଆଲୋକ କକ୍ଷ ମଧ୍ୟରେ ପ୍ରବେଶ କରେ । ଅଭ୍ୟନ୍ତରର ଶ୍ୱେତ ମର୍ମର ପ୍ରାଚୀରରେ ଖଚିତ ପୁଷ୍ପାଧାରରେ ଜଳପଦ୍ମ ଏବଂ ଅନ୍ୟାନ୍ୟ ପୁଷ୍ପ ସ୍ୱର୍ଣ୍ଣାଭ କ୍ଷୀଣ ଆଲୋକ ସମ୍ପାତରେ ଉଦ୍‌ଭାସିତ । ମନେହେଲା, ମୁଁ ଯେପରି ଚନ୍ଦନ ବନର ବାହାରେ ଅପେକ୍ଷା କରିଛି । ଅନ୍ତର୍ଦ୍ଦୃଷ୍ଟିରେ ଅଜ୍ଞାତ ଜୀବନର ବହୁ ସ୍ମୃତି ଭାସିଉଠିଲି । ମୁଁ ଯେପରି ସ୍ୱର୍ଗର ଶାନ୍ତିସଦନ ଅଭିମୁଖେ ଚାଲିଛି, ଯେଉଁଠାରେ ମଳୟ ପବନ ଚିର ପ୍ରବହମାନ ।

ଅତି ସନ୍ତର୍ପଣରେ ଗୁପ୍ତ ପ୍ରକୋଷ୍ଠର ଦ୍ୱାର ଉନ୍ମୁକ୍ତ କଲି, ଏ ଯେପରି ସୂର୍ଯ୍ୟାସ୍ତରେ ଦିବାଲୋକର ରୂପପରିବର୍ତ୍ତନ । ଏହାର ଗବାକ୍ଷ ପଥ ହିଁ ଆଲୋକ ପ୍ରବେଶର ଏକମାତ୍ର ପଥ । ଗବାକ୍ଷର ଉଭୟ ପାର୍ଶ୍ୱରେ ନିର୍ବାପିତପ୍ରାୟ ପ୍ରଦୀପମାଳା ପ୍ରଜ୍ୱଳିତ ।

---

(୧) ପ୍ରଳୟର ଦିନ ଭଗବାନ୍ ପକ୍ଷୀ ରୂପରେ ସୃଷ୍ଟିର ଜୀବଙ୍କୁ ସ୍ୱୀୟ ପକ୍ଷପୁଟ ତଳେ ରକ୍ଷା କରିଥିଲେ । ସେମେଟିକ୍ ଧର୍ମମତ ଏଇ ସୃଷ୍ଟିରକ୍ଷା ତତ୍ତ୍ୱ ବିଶ୍ୱାସ କରେ ।

ଅନନ୍ତ କାଳର ବିସ୍ମୃତିରୁ ମୁଁ ପୁଷ୍ପସମ୍ପଦ ଚୟନ କରୁଛି ମାତ୍ର, ପ୍ରାଚୀର ତଥା ଗବାକ୍ଷରେ ଖଚିତ ପୁଷ୍ପଗୁଡ଼ିକ ଦେଖି ଏହାହିଁ ମୋର ମନେହେଲା । ଏହି ପୁଷ୍ପ ସବୁ ସ୍ୱର୍ଗର ନନ୍ଦନ କାନନରୁ ସଂଗୃହୀତ । ସେ କାନନର ଅପସ୍‌ସରାଗଣ ପୁଷ୍ପର ସୁରଭିରେ ହିଁ ଜୀବନ ଧାରଣ କରନ୍ତି ।

ଏ କକ୍ଷର ସବୁଠାରୁ ଦର୍ଶନୀୟ ସ୍ତମ୍ଭ ଉପରେ ସ୍ଥାପିତ ଚନ୍ଦ୍ରାତପ । ଶୁକ୍ତିମୁକ୍ତା ଏବଂ ଆବଲୁଶ୍ କାଠର ପ୍ରଚ୍ଛଦ ପଟରେ ଅପୂର୍ବ ସୁନ୍ଦର ଏହି ଭାସ୍କର୍ଯ୍ୟ ! ସମାଧି ଗାତରେ ମୁକ୍ତାଗୁଡ଼ିକ ଯେପରି ମନୁଷ୍ୟର ଚକ୍ଷୁ ନିଃସୃତ ଅଶ୍ରୁକଣା । ମୋ ହୃଦୟ ଉଦ୍‌ବେଳିତ ହୋଇଉଠିଲା— ମୁଁ ନତଜାନୁ ହୋଇ ମସ୍ତକ ଅବନତ କଲି ।

ସମଗ୍ର ଜଗତ କ'ଣ କେତେକ ସାମ୍ରାଜ୍ୟର ସମାଧି କ୍ଷେତ୍ର ନୁହେଁ । ବୀଜ ଅଙ୍କୁରିତ ହୋଇ ପୁଣି ଧୂଳିରେ ମିଶିଯାଏ, ଗୋଟିଏ ମତ୍ତହସ୍ତୀ ବହୁ ଜୀବନ୍ତ ପ୍ରାଣୀଙ୍କୁ ପାଦରେ ଦଳିତ କରେ । ଏହାହିଁ ତ ପରସ୍ପର ପ୍ରତି ମଣିଷର ନୃଶଂସତାର ପ୍ରତିଛବି ! ତରଙ୍ଗ ଉପରେ ତରଙ୍ଗ ପରି ମଣିଷର ଦୁଃଖରାଶି ସଞ୍ଚିତ ହୁଏ—ଆକାଶ ବକ୍ଷରେ ରକ୍ତ ମେଘପରି—ମେଘାବୃତ ସୂର୍ଯ୍ୟ ପରି । କିନ୍ତୁ ଅକସ୍ମାତ ଏକ ଉଜ୍ଜ୍ୱଳ ସ୍ୱର୍ଣ୍ଣାଭ ଆଲୋକ-ରେଖାରେ ସବୁକିଛି ଆଲୋକିତ ହୁଏ । ଦୁଃଖର ତରଙ୍ଗ ଖୁବ୍ ବେଶୀ ସ୍ପର୍ଶ କରି ପାରେନା ।

ମହମ୍ମଦଙ୍କ ପରି (୧) ସ୍ୱର୍ଗରେ ଆରୋହଣ କରି । ଆଲ୍ଲାହଙ୍କ ବିରାଟ କର୍ମକ୍ଷେତ୍ର ନିରୀକ୍ଷଣ କରି । ଶୈଶବରେ ଯେପରି ଦେଖିଥିଲି, ଆଜି ବି ସେହିପରି ଦେଖୁଛି, ମହମ୍ମଦଙ୍କ ଶୁଭ୍ର ପଶମ ବସ୍ତ୍ର ଧୂଳିରେ ଅବଲୁଣ୍ଠିତ । (୨) ବହୁ କମ୍ପିତ ହସ୍ତ ସେହି ବସ୍ତ୍ର ଉଦ୍ଦେଶ୍ୟରେ

---

(୧) ଅନେକ ମୁସଲମାନ ବିଶ୍ୱାସ କରନ୍ତି ଯେ, ମହମ୍ମଦ ଜେରୁଜାଲେମର ମସ୍‌ଜିଦରୁ ସଶରୀରେ ସ୍ୱର୍ଗାରୋହଣ କରିଥିଲେ, ଏବଂ ଆଲ୍ଲାହଙ୍କ ସଙ୍ଗେ ଆଳାପ କରିଥିଲେ । ସ୍ୱୟଂ ମହମ୍ମଦ ସ୍ୱର୍ଗ ଓ ନରକ ଚର୍ମ ଚକ୍ଷୁରେ ଦେଖି-ଥିଲେ ଏବଂ ଆଲ୍ଲାହଙ୍କ ବିରାଟ ସୃଷ୍ଟିର ରୂପ ପ୍ରତ୍ୟକ୍ଷ କରିଥିଲେ । ଏ ଘଟନା ଇସ୍‌ଲାମ୍‌ର ଇତିହାସରେ, 'ମେରାଜ' ନାମରେ ବିଖ୍ୟାତ ।

(୨) ମହମ୍ମଦଙ୍କ ବ୍ୟବହୃତ ପଶମ ବସ୍ତ୍ର ମୁସଲମାନଗଣ ଅତି ପବିତ୍ର ମନେ କରନ୍ତି ଏବଂ ତାହାକୁ ନେଇ ଶୋଭାଯାତ୍ରା କରନ୍ତି ।

ପ୍ରସାରିତ—ସହସ୍ର ବ୍ୟକ୍ତି ତାହାକୁ ସ୍ପର୍ଶ କରିବା ପାଇଁ ଚେଷ୍ଟିତ—କ୍ଷିନ ମଧ୍ୟରେ ମହାତ୍ମାଙ୍କୁ ଅନୁସରଣ କରିବାକୁ ବହୁ ବ୍ୟକ୍ତି ପ୍ରୟାସରତ ।

ମୁଁ କେବଳ ମସ୍ତକ ଉତ୍ତୋଳନ କଲି—ଦେଖିଲି, ଶୁକ୍ତିମୁକ୍ତା ସନ୍ଧ୍ୟାର ଅନ୍ଧକାରରେ ଆର୍ଦ୍ର ଶ୍ରାନ୍ତ ଚକ୍ଷୁପରି ଉଜ୍ଜ୍ୱଳ । ଯେଉଁ ମହାପୁରୁଷମାନେ ଏଇ ହତଭାଗ୍ୟ ମଣିଷକୁ ଦୁଃଖ ସାଗରରୁ ଉଦ୍ଧାର କରିବାକୁ ଉଦ୍ୟମ କରିଥିଲେ, ଶୁକ୍ତିମୁକ୍ତାଗୁଡ଼ିକ ଯେପରି ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରୁଥିଲେ ! ନୀରବରେ ମୁଁ ପ୍ରାର୍ଥନା କଲି ।

"ହେ ଈଶ୍ୱର, ପୃଥିବୀରୁ ଯେଉଁ ଆନନ୍ଦ ଲୁପ୍ତ ହୋଇ ଯାଇଛି, ତୁମେ ସେହି ଆନନ୍ଦ-କଣିକା ଗୁଡ଼ିକ ସ୍ୱର୍ଗରେ ସଂଗ୍ରହ କର । ପୁଣି ସେଇ ଆନନ୍ଦକୁ ଆହୁରି ପବିତ୍ର କରି ନୂତନ ପୃଥିବୀର ଜନଗଣଙ୍କୁ ଫେରାଇ ଦିଅ ।"

ମୁଁ ମୋ କକ୍ଷ ପାର୍ଶ୍ୱରେ କାହାର ପଦଧ୍ୱନି ଶୁଣିଲି ! ନା, କେବଳ ନୀରବତା । କିନ୍ତୁ ଏଠାରେ ଯେପରି କେଉଁ ମଣିଷର ସ୍ପଷ୍ଟ ପଦଧ୍ୱନି ! ଉଠି ଦେଖିଲି ଦ୍ୱାର ଉନ୍ମୁକ୍ତ ହୋଇଛି । ଉନ୍ମୁକ୍ତ ଦ୍ୱାର ମଧ୍ୟ ଦେଇ ଏକ ଆଲୋକ ଶିଖା—ସେ ଆଲୋକରେ ଦେଖିଲି, ଉନ୍ନତ ଶିର, ଦୀର୍ଘ ଦେହ, ଶୁଭ୍ର ଉଷ୍ଣୀଷଧାରୀ ଜଣେ ବୀର ସୈନିକ ଦଣ୍ଡାୟମାନ—ମୋର ସାକ୍ଷୀବନ୍ଧୁ ଭାଇ । ଅକସ୍ମାତ ବିସ୍ମୟରେ ଅଭିଭୂତ ହୋଇପଡ଼ିଲି । ତା'ପରେ ବିସ୍ମୟ ପରିଣତ ହେଲା ଅପୂର୍ବ ପ୍ରଶାନ୍ତି ଭାବରେ । ଏପରି ଘଟଣା କ'ଣ ସମ୍ଭବ ହୋଇପାରେ ? ହବ୍ୟ ଅନୁଭୂତିରୁ ମୋତେ ଜଣାଗଲା,' ଯେପରି ମୁଁ ଆହୁରି ବହୁ ଜନ୍ମ ଏଇ ପୃଥିବୀରେ ବାସ କରିଛି । ମୋର ଯାହା କିଛି ପୂର୍ବ ସତ୍‌କର୍ମ, ସେ ସକଳ ଯେପରି ଏଇ ମୁହୂର୍ତ୍ତରେ ପୂର୍ଣ୍ଣତା ପ୍ରକାଶ କଲା । ମୁଁ ଏ ମୁହୂର୍ତ୍ତରେ ଆଉ ଜାହାନାବି ନୁହେଁ, ଅନନ୍ତ ବିଶ୍ୱର ଏକ ସତ୍ତା ମାତ୍ର ।

ତା'ପରେ ମୁଖର ଅବଗୁଣ୍ଠନ ଖୋଲି ଦେଲି—ତାଙ୍କ ଚକ୍ଷୁରେ ଦୃଷ୍ଟି ନିବଦ୍ଧ କଲି । ହଠାତ୍ ମନେ ହେଲା, ମୁଁ ଯେଉଁ ପତ୍ର ପାଇଥିଲି, ତାହା ଯେପରି ସେ ଲେଖି ନ ଥିଲେ । ସେ ଯେପରି ମୋ ପତ୍ର ପାଇ ନାହାନ୍ତି । ଆଉରଙ୍ଗଜେବ ଗୋଟିଏ ପତ୍ର ଜାଲ କରିଥିଲେ । ତାଙ୍କ ଲିଖିତ ପତ୍ରଟି ନଷ୍ଟ କରି ଦେଇଥିଲେ । ପ୍ରଶାନ୍ତ ଦୃଷ୍ଟିରେ ସେ ମୋତେ ଅନାଇଲେ । ତାଙ୍କ ନୟନର ଭାଷାରେ ଥିଲା—"ହେ ଦୋଷହୀନା

ନାରୀ ।" ପରବର୍ତ୍ତୀ ମୁହୂର୍ତ୍ତରେ ତାଙ୍କ ଚେହେରାରେ ପରିବର୍ତ୍ତନ ଲକ୍ଷ୍ୟ କଲି । ତାଙ୍କର ସମସ୍ତ ଶରୀର କମ୍ପିତ ହେଉଥିଲା । ତାଙ୍କ ରକ୍ତ ଦ୍ରୁତ ସଞ୍ଚାଳିତ ହେଉଥିଲା । ତାଙ୍କ ଚକ୍ଷୁର ବର୍ଣ୍ଣ ପ୍ରତି ମୁହୂର୍ତ୍ତରେ ବଦଳି ଯାଉଥିଲା । ମୁହୂର୍ତ୍ତକ ପାଇଁ ମୁଁ ବାସ୍ତବ ଜଗତରୁ ଊର୍ଦ୍ଧ୍ୱ ଲୋକକୁ ଉଠିଲି । ତା'ପରେ ମୋତେ ଅବସନ୍ନ ଲାଗିଲା । ମୋର ଯେପରି ସୁଦୃଢ଼ ଅବଲମ୍ବନର ପ୍ରୟୋଜନ । ମୁଁ ଅବଗୁଣ୍ଠନରେ ମୋ ମୁଖ ଆବୃତ କଲି । ମୃଦୁ କଣ୍ଠରେ କହିଲି, "ମୋର ରଖିପିନ୍ଧା ସ୍ୱାଇ !" ନିସ୍ତବ୍ଧତା ଅପସୃତ ହେଲା ।

ସେ ମୋତେ ସମ୍ଭାଷଣ କଲେ; ଯେପରି କରିଥିଲେ ଦରବାର ପ୍ରବେଶର ପ୍ରଥମ ଦିନ । ଲକ୍ଷ୍ୟ କଲି, ସେ ତାଙ୍କ ଲଲାଟ ନିବଦ୍ଧ କରପୁଟ ଉତ୍ତୋଳନ କଲେ – କମ୍ପିତ କରପୁଟ । ତା'ପରେ ହସ୍ତଦ୍ୱୟରେ ବକ୍ଷଦେଶ ସ୍ପର୍ଶ କଲେ । ତାଙ୍କର ଦୃଷ୍ଟିଶକ୍ତି ମୁକ୍ତାଖଚିତ ଚନ୍ଦ୍ରାତପରେ ନିବଦ୍ଧ ଥିଲା । କେବେ କେଉଁ ନାରୀ ଏଇ ପବିତ୍ରତମ ରାଜ୍ୟରେ ପ୍ରବେଶ କରିବାର ଅଧିକାର ଲାଭ କରିବ ? କିନ୍ତୁ ଜାହାନାରା ବେଗମ୍ ସେ ଅଧିକାର ପାଇଥିଲା । ମନେହେଲା, କକ୍ଷଟି ଯେପରି ଧନ୍ୟତ୍ୱ ଲାଭକରିଛି ।

ସେହି ସ୍ତମ୍ଭବେଷ୍ଟିତ କକ୍ଷର ମଧ୍ୟସ୍ଥଳରେ ଶେଖ୍‌ମାନଙ୍କ ପାଇଁ ଗୋଟିଏ ସତରଞ୍ଜି ବିସ୍ତୃତ ହୋଇଥିଲା । ସେମାନେ ସେଠାରେ ଅଗଣିତ ତୀର୍ଥ-ଯାତ୍ରୀମାନଙ୍କ ପାଇଁ ଅହରହ କୋରାଣ ଆବୃତ୍ତି କରୁଥିଲେ । ଆଜି ଆମେ ମାତ୍ର ଦୁଇଜଣ ତୀର୍ଥ-ଯାତ୍ରୀ । 'ରାଓ'ଙ୍କୁ ('ଛତ୍ରଶାଳ') ସତରଞ୍ଜି ଉପରେ ବସିବାକୁ ମୁଁ ଅନୁରୋଧ କଲି—ମୁଁ ଅଳ୍ପ ଦୂରରେ ବସିଲି । ମୁଁ ନିଃସନ୍ଦେହ ଥିଲି ଯେ, ତାଙ୍କର ଗଭୀର ବକ୍ତବ୍ୟ ପ୍ରକାଶ ପାଇଁ ସମାଧିର ନିର୍ଜନତା ହିଁ ପ୍ରୟୋଜନ ।

ରାଓ ମୋତେ ସ୍ପଷ୍ଟ କହିଲେ—"ଆମର ଏଇ ସାକ୍ଷାତ୍ ଉପରେ ହିନ୍ଦୁସ୍ଥାନର ଭବିଷ୍ୟତ ନିର୍ଭର କରୁଛି । ସେଇଥିପାଇଁ ମୁଁ ଅଶ୍ୱାରୋହଣ କରି ଛୁଟିଆସିଛି ।" ଏଥର ମୁଁ ବୁଝିଲି, କେଉଁଠାରୁ ଅଶ୍ୱକ୍ଷୁର ପଦଧ୍ୱନି ଆସୁଥିଲା । ଆଜି ମୋର ପିତା ସ୍ଥିର କରିଛନ୍ତି – ସେ ନିଜେ ତାଙ୍କ ବିଦ୍ରୋହୀ ପୁତ୍ରମାନଙ୍କ ବିରୁଦ୍ଧରେ ଅଭିଯାନ କରିବେ । କିନ୍ତୁ ଶାୟସ୍ତାଖାଁ ଓ ଖଲିଲୁଲ୍ଲାଙ୍କ ପ୍ରବେଚନାରେ ରାଜକୁମାର ଦାରା ସେ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ଏ ଦୁଇ ବିଶ୍ୱାସଘାତକ ଦାରାଙ୍କୁ ବୁଝାଇଲେ—"ସମ୍ରାଟ ଯଦି ସ୍ୱୟଂ ଯୁଦ୍ଧ ଚାଳନା କରନ୍ତି, ତେବେ ବିଜୟର ଗୌରବ ସମ୍ରାଟଙ୍କର

ହିଁ ପ୍ରାପ୍ୟ—ସମ୍ରାଟଙ୍କ ପୁତ୍ରଙ୍କର ନୁହେଁ । ଭାଗ୍ୟଦେବତା ରାଜକୁମାରଙ୍କୁ ସେନାଧ୍ୟକ୍ଷର କୃତିତ୍ୱ ପ୍ରଦର୍ଶନ କରିବାର ଯେଉଁ ସୁଯୋଗ ଦେଇଛନ୍ତି, ତାହା ବ୍ୟର୍ଥ ହୋଇଯିବ ।" କି ଦୁର୍ଭାଗ୍ୟ ! ଦାରା, ତୁମେ ଏତେ ସହଜରେ ପ୍ରତାରିତ ହୋଇଛ ।

ରାଓ କହିଲେ—ମୁଁ ଦାରାଙ୍କ ଚକ୍ଷୁ ଖୋଲିଦେବି । ତାହା ମୋତେ କାଲିହିଁ କରିବାକୁ ହେବ ।

ମଥା ଉପରର ମୁକ୍ତ ଆକାଶ ଦେଖିବାପାଇଁ, ମୁକ୍ତ ପବନରେ ବସିବା ପାଇଁ ମୋର ଆକୁଳ ଆଗ୍ରହ ହେଲା । ବର୍ତ୍ତମାନ ପ୍ରତି ମୁହୂର୍ତ୍ତ ମୋ ପକ୍ଷରେ ଅତି ମୂଲ୍ୟବାନ୍ । ଫତେପୁରର ପରିତ୍ୟକ୍ତ ଉଦ୍ୟାନରେ କ୍ଷୁଦ୍ର ପ୍ରାସାଦର ସନ୍ଧାନ କରିବି—ସେଇଠାରେ ଆମର ଗୁପ୍ତ ମନ୍ତ୍ରଣା ହେବ ।

ପ୍ରଥମେ ଶକଟ ଆରୋହଣ କରି ଅଗ୍ରସର ହେଲି । ଗୋଟିଏ ପ୍ରାସାଦରେ ପହଞ୍ଚିଲି । ପୂର୍ବେ ସେଠାରେ ଗୋଟିଏ ଉଦ୍ୟାନ ଥିଲା । ବର୍ତ୍ତମାନ ଶୂନ୍ୟ ପ୍ରାନ୍ତର, କିନ୍ତୁ ପଥ ପାର୍ଶ୍ୱରେ ପଦ୍ମବନ୍ଧ ସ୍ତୂପ ଶୀର୍ଷରେ ଅବସ୍ଥିତ ପ୍ରାସାଦ ପର୍ଯ୍ୟନ୍ତ ବ୍ୟାପି ଯାଇଛି । ସ୍ତୂପର ପଦଚୁମ୍ବନ କରି ଦୁଇଟି ଆମ୍ର-ବୃକ୍ଷ ପରସ୍ପର ସଙ୍ଗେ ମିଶି ଯାଇଛନ୍ତି । ଏକ ଧର୍ମ ଉତ୍ସବର ଅଙ୍ଗ ରୂପେ ଏଇ ବୃକ୍ଷ-ଯୁଗଳ ରୋପିତ ହୋଇଥିଲେ । ଭାରତବର୍ଷର ଉଦ୍ୟାନରେ କୃଷିର ସାଫଲ୍ୟ କାମନା କରି ଦୁଇଟି ସଜୀବ ବୃକ୍ଷ ଶିଶୁଙ୍କୁ କୂପ ପାର୍ଶ୍ୱରେ ବିବାହ ଦିଆଯାଏ । ଏଇ ଯୁଗଳ ବୃକ୍ଷ ଛାୟାରେ ମୁଁ ମୋର ରାଖିବନ୍ଧ ଭାଇଙ୍କ ପାଇଁ ଅପେକ୍ଷା କରିବି ।

ସେ ଆସି ଉପସ୍ଥିତ ହେଲେ । ପ୍ରବେଶ ପଥର ଦ୍ୱାର ଉନ୍ମୋଚନ କରିବା ସଙ୍ଗେ ସଙ୍ଗେ ହିଁ ମୁଁ ତାଙ୍କର ଦୃଷ୍ଟି ଆକର୍ଷଣ କଲି । ମୁହୂର୍ତ୍ତକ ଧାଇଁ ସେ ସ୍ତବ୍ଧ ହୋଇପଡ଼ିଲେ । ତାଙ୍କର ଦୃଷ୍ଟି ମୋ ଉପରେ ନିବଦ୍ଧ । ସେ ଦୃଷ୍ଟିର ଉଜ୍ଜ୍ୱଳତାରେ ମୋ ଚତୁର୍ଦ୍ଦିଗ ଉଦ୍ଭାସିତ ହୋଇଉଠିଲା । କମ୍ପିତ ଦୃଷ୍ଟିରେ ମୁଁ ତାଙ୍କୁ ଅଭିନନ୍ଦନ କଲି । ମୋ ସ୍ମୃତିରେ ଭାସି ଉଠିଲା ପ୍ରାଚୀନ ହିନ୍ଦୁ କାବ୍ୟର ଜଣେ ନାୟକର କାହାଣୀ—ସତେ ଯେପରି ମଦନ-ଦେବତାଙ୍କ ଅଗ୍ରଦୂତ ଆସିଛନ୍ତି । ଚନ୍ଦ୍ରାଲୋକରେ ନୂତନ ରାଜ୍ୟ ସୃଷ୍ଟି କରିବେ । ହୃଦୟ ଓ ଆତ୍ମାର ମିଳନରେ ସୃଷ୍ଟି ହେବ

ଅସ୍ତମିତ ଏକ ପ୍ରେମର ବିବସ । (୧) ବସନ୍ତର ସମାଗମରେ ବୃକ୍ଷର ନବ ପତ୍ର ବିକଶିତ ହେବା ପରି ମୋ ହୃଦୟରେ ପ୍ରେମ ସଞ୍ଚାରିତ ହେଲା । ମୁଁ ମୋ ରାକ୍ଷିବନ୍ଧ ଭାଇଙ୍କୁ ଅଭିନନ୍ଦନ କଲି—ଆଲ୍ଲା ହୋ ଆକ୍‌ବର, 'ଜାଲ୍ ଜାଲାଲୁଲ୍ଲାହ୍'—ସେ ଉତ୍ତର ଦେଲେ (୨) ।

ସେ ପ୍ରାସାଦରେ ମର୍ମର ଆସନଗୁଡ଼ିକ ତଥାପି ପୂର୍ବନିର୍ଦ୍ଦିଷ୍ଟ ସ୍ଥାନରେ ରହିଥିଲା । 'ରାଓ' କେତେଗୁଡ଼ିଏ ଚିଠି ସମ୍ମୁଖରେ ରଖି-ଦେଲେ । ଆମେ ଆମର ନୂତନ ଦେଓୟାନ-ଇ-ଖାସ୍‌ରେ ଉପବେଶନ କଲୁ । ପ୍ରଥମେ ଚିଠିଗୁଡ଼ିକ ସମ୍ପର୍କରେ ଜାଣିବାକୁ ମୁଁ ଇଚ୍ଛା ପ୍ରକାଶ କଲି । ମୋର ଧାରଣା ହିଁ ଠିକ୍ ଥିଲା—ପ୍ରକୃତରେ ସେ ମୋର କୌଣସି ଚିଠି ପାଇ ନ ଥିଲେ । ସେ ମଧ୍ୟ ମୋତେ କୌଣସି ଚିଠି ଲେଖି ନ ଥିଲେ । ଆମେ ଦୁହେଁ ଘଟଣାର ଶୃଙ୍ଖଳ ଲକ୍ଷ୍ୟ କରି ଲଜ୍ଜାରେ ସଙ୍କୁଚିତ ହୋଇ ପଡ଼ିଲୁ ।

ତା'ପରେ ମୋ ରାଖୀବନ୍ଧ ଭାଇ ଆଉରଙ୍ଗଜେବଙ୍କ ଶିବିରରୁ ତାଙ୍କର ପଳାୟନର କାହାଣୀ ମୋତେ ଶୁଣାଇଲେ । ରାଜଦରବାରରେ ଉପସ୍ଥିତ ହେବାପାଇଁ ଆଦେଶ ପତ୍ର ଯେତେବେଳେ 'ରାଓ'ଙ୍କ ନିକଟରେ ପହଞ୍ଚିଲା, ଆଉରଙ୍ଗଜେବ ତାଙ୍କର ଦାକ୍ଷିଣାତ୍ୟ ତ୍ୟାଗ ବନ୍ଦ କରିବା ପାଇଁ ବହୁ ଉଦ୍ୟମ କରିଥିଲେ । କିନ୍ତୁ ହର ବଂଶର ସନ୍ତାନ ତାଙ୍କର ବିଶ୍ୱସ୍ତ ରାଜପୁତ ଅନୁଚରମାନଙ୍କୁ ନେଇ ଉଦ୍‌ବେଳିତ ଯମୁନା ଅତିକ୍ରମ କରି ଆସିଛନ୍ତି । ଆଉରଙ୍ଗଜେବଙ୍କ ସୈନ୍ୟଗଣ ତାଙ୍କୁ ଅନୁସରଣ କରିଥିଲେ; କିନ୍ତୁ ଆକ୍ରମଣ କରିବାପାଇଁ ସାହସ କଲେ ନାହିଁ ।

ତାପରେ ସମ୍ବାଦ ଆସିଲା, ଆଉରଙ୍ଗଜେବ ଷଡ଼ଯନ୍ତ୍ର କରି ମୋ ଭାଇ ମୁରାଦଙ୍କୁ ନିଜ ପକ୍ଷକୁ ଟାଣି ନେଇଛନ୍ତି । ବିଦ୍ରୋହର ପ୍ରାରମ୍ଭରେ

(୧) ଜାହାନାରା ଏଠାରେ ବାଣ ରଚିତ 'ହର୍ଷଚରିତ' ନାଟକର ଉପମା ଉଦ୍ଧାର କରିଛନ୍ତି ।

(୨) ସାଧାରଣତଃ ପ୍ରଥମ ଦର୍ଶନରେ ମୁସଲମାନମାନେ ସମ୍ଭାଷଣ କରନ୍ତି, "ଆଲେକୁମ୍ ଉର୍ଦ୍ଦ-ସେଲାମ୍," ଉତ୍ତର ଆସେ; "ସେଲାମ୍ ଆଲେକୁମ୍ ।" ଆକ୍‌ବର ଏ ପ୍ରଥା ପରିବର୍ତ୍ତନ କରିଦେଲେ । ସମ୍ଭାଷଣର ନୂତନ ରୀତି ହେଲା, "ଆଲ୍ଲା ହୋ ଆକବର" । "ଜାଲ୍ ଜାଲାଲୁଲ୍ଲାହ୍" । ଏଇ ରୀତି ପାଇଁ ଆକ୍‌ବରଙ୍କୁ ଅନେକ କଟୂକ୍ତି ଶୁଣିବାକୁ ହୋଇଥିଲା ।

'ଘଓ' ଆଉରଙ୍ଗଜେବଙ୍କ ଦ୍ୱାରା ସୁଜାଙ୍କୁ ଲିଖିତ ପତ୍ରରେ ପତ୍ରଲିପି ପାଠ କରିବାକୁ ଅନୁମତି ପ୍ରାର୍ଥନା କରିଥିଲେ ।

କନିଷ୍ଠ ସହୋଦର ମୁରାଦ ତାଙ୍କ ସୈନ୍ୟଗଣଙ୍କୁ ଉତ୍ସାହିତ କରିବା ପାଇଁ ଗର୍ବର ସହିତ ଏହି ପତ୍ରଟି ପ୍ରତ୍ୟେକ ସେନାନାୟକଙ୍କୁ ଦେଖାଇଥିଲେ । ଆଜି ବି ସେ ପତ୍ରର ପ୍ରତିଲିପି ମୋ ନିକଟରେ ଅଛି ।

"ବୀର ଶାହାଜାଦା, ମୁରାଦବକ୍ସ, ତୁମକୁ ଜଣାଇ ଦେଉଛି— ମୁଁ ସମ୍ବାଦ ପାଇଛି ଯେ, ଶାହାଜାଦା ଦାରା ବିଷ ପ୍ରୟୋଗ କରି ପିତାଙ୍କୁ ହତ୍ୟା କରିଛନ୍ତି ଏବଂ ସାମ୍ରାଜ୍ୟ ଭାର ଗ୍ରହଣ କରିଛନ୍ତି— ଉଦ୍ଦେଶ୍ୟ ସମ୍ରାଟ ପଦବୀ । ଏଇ କାରଣରୁ ଶାହାଜାଦା ଶାହ ସୁଜା ଏକ ପ୍ରବଳ ପରାକ୍ରମୀ ସୈନିକଦଳ ନେଇ ସିଂହାସନ ଅଧିକାର କରିବା ପାଇଁ ତଥା ଦାରାଙ୍କ ପ୍ରତିଶୋଧ ନେବାପାଇଁ ଅଗ୍ରସର ହୋଇଛନ୍ତି । ଏ ସମ୍ବାଦ ପାଇ ମୁଁ ତୁମକୁ ପତ୍ରଦ୍ୱାରା ଜଣାଇବାକୁ ବାଧ୍ୟ ହେଉଛି ଯେ, ତୁମ ବ୍ୟତୀତ ଆଉ କେଉଁ ରାଜକୁମାର ସମ୍ରାଟ ପଦ ପାଇଁ ଉପଯୁକ୍ତ ନୁହନ୍ତି । ଦାରା ବିଧର୍ମୀ, ଦାରା ପୌତ୍ତଳିକ, ଦାରା ଇସ୍‌ଲାମ ଧର୍ମ ବିନାଶକ, ଶାହାଜାଦା, ଶାହ ସୁଜା ଧର୍ମଚ୍ୟୁତ ଶିୟା ସମ୍ପ୍ରଦାୟଭୁକ୍ତ ଏବଂ ଆମ୍ଭମାନଙ୍କର ଧର୍ମ ବିରୋଧୀ । ମୋର କୌଣସି ପ୍ରତି ଆସକ୍ତି ତୁମକୁ ସମଗ୍ର ଭାରତବର୍ଷର ସମ୍ରାଟ ପଦରେ ଅଭିଷିକ୍ତ କରିବା ପାଇଁ ଉତ୍ସାହିତ କରିଛି । ଏହା ସର୍ବବିଧସମ୍ମତ ଯେ, ମୁଁ ବହୁଦିନ ହେଲା ସଂସାର ତ୍ୟାଗ କରିଛି ଏବଂ ମକ୍‌କା ଯାଇ ସେଠାରେ ମୋର ଶେଷ ଜୀବନ ଅତିବାହିତ କରିବି । ଏହା ମୋର ବ୍ରତ । ମୁଁ ତୁମ ନିକଟରେ ଆବେଦନ ଜଣାଇଛି—ତୁମେ କୋରାଣ ସ୍ପର୍ଶ କରି ଶପଥ କର ଯେ, ଆଲ୍ଲାହଙ୍କ ଅନୁଗ୍ରହ ବଳରେ ମୁଁ ତୁମକୁ ଅପ୍ରତିଦ୍ୱନ୍ଦୀ ସମ୍ରାଟ ପଦରେ ଅଭିଷିକ୍ତ କରିବା ପରେ ତୁମେ ମୋ ପରିବାର ପ୍ରତି ସଦୟ ବ୍ୟବହାର କରିବ । ଯଦି ତୁମେ କୋରାଣ ସ୍ପର୍ଶ କରି ମୋତେ ଏପରି ପ୍ରତିଶ୍ରୁତି ଦିଅ, ତେବେ ମୁଁ ଶପଥ କରୁଛି ଯେ, ମୋର ସମସ୍ତ ଶକ୍ତି, କୌଶଳ ଓ ବୁଦ୍ଧି ତୁମ ସପକ୍ଷରେ ବ୍ୟବହୃତ ହେବ ଏବଂ ତୁମକୁ ଦିଲ୍ଲୀ ସିଂହାସନରେ ଆସୀନ କରିବାପାଇଁ ସର୍ବ-ପ୍ରକାର ଚେଷ୍ଟା କରାଯିବ । ମୋର ଏଇ ଶପଥର ସ୍ମାରକ ସ୍ୱରୂପ ମୁଁ ତୁମ ନିକଟକୁ ଏକ ଲକ୍ଷ ରୌପ୍ୟ ମୁଦ୍ରା ପ୍ରେରଣ କରୁଛି । ଏଇ ଅର୍ଥ ଦ୍ୱାରା ଆମ୍ଭ ମଧ୍ୟରେ ସୁଦୃଢ଼ ଏବଂ ଚିରନ୍ତନ ଐକ୍ୟ ଓ ବାନ୍ଧବତା

ସ୍ଥାପିତ ହେବ । ଆମେ ଦୁହେଁ ସହୋଦର ଭ୍ରାତା, ଏକ ପିତାଙ୍କ ସନ୍ତାନ, ଏକ ଧର୍ମରେ ବିଶ୍ୱାସୀ ଏବଂ ଉଭୟେ କୋରାଣର ରକ୍ଷକ । ଏଇଠାରେ ପତ୍ର ଶେଷ ହେଉ । ତୁମ ଆଗମନକୁ ଅପେକ୍ଷା କରିଛି । ଇତି ।

ତୁମର ବିଶ୍ୱାସୀ ଭ୍ରାତା
ଆଉରଙ୍ଗଜେବ

ଲଜ୍ଜାରେ ମୁଁ ମସ୍ତକ ଅବନତ କଲି ଏବଂ ହୃଦୟବିଦାରକ ଶୋକରେ ଆର୍ତ୍ତନାଦ କରିଉଠିଲି —ଓଃ ଏ କି ଶଠତା ! ଆମ ବଂଶର କି ଭୀଷଣ ଅବମାନନା । କିନ୍ତୁ ଏଇ କପଟୀ ଶାସକଙ୍କ ନିକଟରେ ଭାରତର ପ୍ରାଚୀନ ବୀର ବଂଶ ତାଙ୍କ ରାଜ୍ୟ ଭାର ଅର୍ପଣ କରିବାକୁ ବାଧ୍ୟ ହେବ ! ଆଉରଙ୍ଗଜେବ ହୃଦୟରେ ଏକ ହିଂସ୍ର ବ୍ୟାଘ୍ର ଲୁକ୍କାୟିତ ଅଛି, ଯେପରି ଥିଲି ତୈମୁରଙ୍କ ହୃଦୟରେ—କିନ୍ତୁ ତୈମୁରଙ୍କ ନାମର ମହିମା କେବେ ଆଉରଙ୍ଗଜେବଙ୍କ ମୁକୁଟକୁ ସ୍ପର୍ଶ କରିପାରିବ ନାହିଁ ।

'ରାଓ' ମୋ କଥାର ଅର୍ଥ ବୁଝିପାରିଲେ । ସମସ୍ତ ପ୍ରାସାଦବ୍ୟାପୀ ନିର୍ଜନତା ! ସେ ପୁଣି ଯେତେବେଳେ କଥା କହିବାକୁ ଆରମ୍ଭ କଲେ, ତାଙ୍କର ସ୍ୱର ସ୍ୱାଭାବିକ ଅପେକ୍ଷା ଗମ୍ଭୀର ମନେ ହେଲା । ସେ ଆସନରୁ ଉଠି ଇତସ୍ତତଃ ପଦ ସଞ୍ଚାରଣ କରିବାକୁ ଲାଗିଲେ । ଗମ୍ଭୀର ସ୍ୱରରେ କହିଲେ, "ଆମର ସାମନ୍ତଗଣ ଆମ ଦେଶକୁ ସାମ୍ରାଜ୍ୟରେ ପରିଣତ କରିଥିଲେ । ରାଜ ପରିବାରରେ କେବେ ବିବାଦ ଉପସ୍ଥିତ ହେଲେ, ସେ ସାମ୍ରାଜ୍ୟର ଐକ୍ୟ ରକ୍ଷା କରିବା ପାଇଁ ସକ୍ଷମ, ରାଜସ୍ଥାନର ନାୟକଗଣ ତାଙ୍କୁ ହିଁ ସାହାଯ୍ୟ କରୁଥିଲେ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ବା ହର୍ଷବର୍ଦ୍ଧନଙ୍କ ଯୁଗରୁ ହିଁ ଆମର ଯୋଦ୍ଧା ଜାତି ଗୋଟିଏ ଆଶା ପୋଷଣ କରି ଆସିଛନ୍ତି—ଗୋଟିଏ ସ୍ୱପ୍ନ ଦେଖି ଆସିଛନ୍ତି । ଭାରତବର୍ଷ ହେବ ଏକଛତ୍ର ସାମ୍ରାଜ୍ୟ । କୌଣସି ବିଦେଶୀ ସମ୍ରାଟ ଆକବରଙ୍କ ସମକକ୍ଷ ହୋଇ ପାରିନାହାନ୍ତି । ସୁଲତାନ୍ ବାବର ବା ହୁମାୟୁନଙ୍କ ପରି ସମ୍ରାଟ ଆକବର, ସମରଖନ୍ଦ ବା ବୋଖାରା ଦେଶକୁ ପ୍ରତ୍ୟାବର୍ତ୍ତନର ପ୍ରୟାସୀ ନ ଥିଲେ । ସେ ଇଚ୍ଛା କରିଥିଲେ—ଭାରତବର୍ଷରେ ଏକ ସାମ୍ରାଜ୍ୟ ସ୍ଥାପନ କରିବେ, ଯେଉଁଠାରେ ସବୁ ଦେଶର ସର୍ବୋତ୍ତମ ପଦାର୍ଥର ସମାବେଶ ହେବ । ସେ ଭାରତବାସୀଙ୍କୁ ବିଶ୍ୱାସ କରୁଥିଲେ, ଭାରତବାସୀଙ୍କ ଉପରେ ନିର୍ଭର କରୁଥିଲେ ଏବଂ ସେ ଭାରତ-

ବର୍ଷର ହିଁ ଜଣେ ହୋଇଥିଲେ । ସେହି ସ୍ୱର୍ଗବାସୀ ଆକବରଙ୍କ ସମତୁଲ୍ୟ ହୁଏତ ଆଉ କେହି ହୋଇପାରି ନାହାନ୍ତି । କିନ୍ତୁ ଆଉରଙ୍ଗଜେବ ରାଜ୍ୟ-ଭାର ଲାଭ କଲେ ଯାହା ହେବେ, ସେପରି ମଧ୍ୟ କେହି ନାହାନ୍ତି । ଆଉରଙ୍ଗଜେବ ଭାରତବାସୀଙ୍କୁ ଘୃଣା କରନ୍ତି ··।"

ସାହସ-ସଞ୍ଚୟ କରି 'ଗୁରୁ' ଙ୍କ ଆଡ଼େ ଅନାଇଲି । ତାଙ୍କର ସହଜ ସରଳ ଶାନ୍ତ ନୟନ ଅକସ୍ମାତ୍ ପିଞ୍ଜରା-ମୁକ୍ତ ଈଗଲର ଚକ୍ଷୁପରି ଅଗ୍ନିଉଜ୍ଜ୍ୱଳ ହୋଇଉଠିଲା । ତାଙ୍କର ସଞ୍ଚରମାଣ ଚକ୍ଷୁର ମଣି ବିଦ୍ୟୁତ୍ ଶିଖା ପରି ଦ୍ରୁତ ଗତିରେ ଚାଳିତ ହେଉଥିଲା । ସେ ମୋ ସମ୍ମୁଖରେ ଦଣ୍ଡାୟମାନ ଅଛନ୍ତି । ଅପୂର୍ବ ରାଜୋଚିତ ମୂର୍ତ୍ତି ମେରୁ ଶିଖରରେ ଅଗ୍ନିଗର୍ଭ ବିଷ୍ଟୁଙ୍କ ପ୍ରତୀକ ।

ସେ ପୁଣି ମୃଦୁ ସ୍ୱରରେ କହିଲେ --"ଆଉରଙ୍ଗଜେବ ହିନ୍ଦୁଙ୍କୁ ଘୃଣା କରନ୍ତି । ତାଙ୍କ ଉଦ୍ଦେଶ୍ୟ ସାଧନର ଉପଯୁକ୍ତ ଇଚ୍ଛା ମୋର ଅଛି, ଏହା ଆଉରଙ୍ଗଜେବ ଜାଣନ୍ତି । ସେ ମୋର ନିଷ୍ଠାକିତାକୁ ସନ୍ଦେହ କରନ୍ତି ନାହିଁ; କିନ୍ତୁ ଆମ ପୂର୍ବ ପୁରୁଷମାନଙ୍କ ଧର୍ମବିଶ୍ୱାସକୁ ଘୃଣା କରନ୍ତି । ଆଉରଙ୍ଗଜେବ ସ୍ୱର୍ଗକୁ ନିଜ ସମ୍ପତ୍ତି ବୋଲି ବିବେଚନା କରନ୍ତି । କୋରାଣର ଦୁଇମଲାଟ ଅଭ୍ୟନ୍ତରରେ ଯେଉଁମାନେ ଏଇ ସୃଷ୍ଟିଧାରାକୁ ଆବଦ୍ଧ ରଖିବାକୁ ଚାହାନ୍ତି, ସେଇମାନଙ୍କ ସଙ୍ଗେ ଆଉରଙ୍ଗଜେବ ସ୍ୱର୍ଗର ଏକଚ୍ଛତ୍ର ଅଧିକାର ଦାବୀ କରନ୍ତି । ସମ୍ରାଟ ଜାହାଙ୍ଗୀର ଓ ଶାହାଜାହାନ କୋରାଣକୁ ଶ୍ରଦ୍ଧା କରୁଥିଲେ; କିନ୍ତୁ ସେମାନଙ୍କ ଶାସନରେ ହିନ୍ଦୁ ପ୍ରଜାଗଣ ନିଜକୁ ନିରାପଦ ମନେ କରୁଥିଲେ । ଶାହଜାଦା ଆଉରଙ୍ଗଜେବ ନିଜକୁ ଈଶ୍ୱରଙ୍କ ପରି ନିର୍ଭୁଲ ମନେ କରନ୍ତି । ସୁତରାଂ ସେ ନିଜ ଆତ୍ମୀୟମାନଙ୍କ ସଙ୍ଗେ ରାଜ୍ୟର ସତରଞ୍ଜିଖେଳ ଖେଳିବାକୁ ବସିଛନ୍ତି । ରାଜ୍ୟର ସିଂହାସନ ଅଧିକାର କରିବା ପାଇଁ କୌଣସି କାର୍ଯ୍ୟକୁ ସେ ଅନ୍ୟାୟ ମନେ କରନ୍ତି ନାହିଁ । ଯଦି ସେ ଜୟଲାଭ କରନ୍ତି, ତେବେ ସମ୍ରାଟ-ଆକବରଙ୍କ ମହାନୁଭବ ରାଜ୍ୟରେ ଯାହା କିଛି ଉତ୍ତମ, ସେ ସମସ୍ତ ନଷ୍ଟ ହୋଇଯିବ । ହିନ୍ଦୁସ୍ଥାନ ପୁଣି ସେଇ ଅନ୍ଧାରରେ ଡୁବିଯିବ । ହୁଏତ ଶତଶତ ବର୍ଷବ୍ୟାପୀ··"

ମୁଁ ଚିତ୍କାର କରି ଉଠିଲି, "ସେ କେବେ ଜୟୀ ହୋଇ ପାରିବେ ନାହିଁ···।" ସେଲିମ୍ ଚିଶ୍ତିଙ୍କ ସମାଧି ମନ୍ଦିରରେ ଶୋକର ଯେଉଁ ଅଗ୍ରବୃତ୍ତା-ହ୍ରାସ ହୋଇଥିଲା, ତାହା ପୁଣି ଥରେ ଗୁରୁଙ୍କ ଉପସ୍ଥିତିରେ ମୋତେ

ଆହତ କଲା । ଆମ୍ଭେମାନେ ଷଷ୍ଟ୍ରୁ ଭିତ୍ତି ଉପରେ ଇତସ୍ତତଃ ବାତ୍ୟା-ବିକ୍ଷୁବ୍‌ଧ ପ୍ରାସାଦରେ ଦଣ୍ଡାୟମାନ ହୋଇଛୁ । ମନେ ହେଲା, ପାଦତଳେ ତଳହୀନ ସମୁଦ୍ର ଗହ୍ୱର ମୁଖବ୍ୟାଦାନ କରି ଅପେକ୍ଷା କରିଛି ।

ତାହାପରେ ଅଶ୍ରୁତର ଘଟଣା ବର୍ଣ୍ଣନା କରି ମୁଁ ରାଓଙ୍କୁ କହିଲି, ଶାହାଜାଦା ଦାରା ତାଙ୍କର ଯୌବନରେ ମୋର ପିତା, ଆଉରେଙ୍ଗଜେବ, ଶୁଜା ଓ ମୁରାଦାଙ୍କୁ ଆମନ୍ତ୍ରଣ କରିଥିଲେ । ଆମନ୍ତ୍ରଣ କକ୍ଷ ସଙ୍ଗେ ପାର୍ଶ୍ୱବର୍ତ୍ତୀ ନଗାଟିଏ ସଂଯୋଜିତ ହୋଇଥିଲା । ଏଲେପ୍‌ପୋ ଦେଶରେ ନିର୍ମିତ ବହୁ ମୁକୁର ସେଠାରେ ଥିଲା । ଶାହଜାଦା ଦାରା ଏଇ କକ୍ଷଟି ଦେଖାଇବା ଉଦ୍ଦେଶ୍ୟରେ ହିଁ ଏ ନିମନ୍ତ୍ରଣର ଆୟୋଜନ କରିଥିଲେ । (୧) ଦାରା ବହୁବାର ସେ କକ୍ଷରେ ଯାତାୟାତ କଲେ । ଆଉରଙ୍ଗଜେବ ଗୋଟିଏ ଦରଜା ପାର୍ଶ୍ୱରେ ବସିରହିଲେ, ଏବଂ ଥରେ ହେଲେ କକ୍ଷ ଅଭ୍ୟନ୍ତରରେ ପ୍ରବେଶ କଲେ ନାହିଁ । ଶେଷରେ ସେ ସେଠାରୁ ଉଠି ଅଦୃଶ୍ୟ ହୋଇ-ଗଲେ ।

ସମ୍ରାଟ ତାଙ୍କ ବ୍ୟବହାରରେ ଅସନ୍ତୁଷ୍ଟ ହୋଇଛନ୍ତି ଜାଣି ସେ ଉତ୍ତର ଦେଲେ ଯେ, ତାଙ୍କର ସନ୍ଦେହ ହେଲା, ଶାହଜାଦା ଦାରା ହୁଏ ତ ସମ୍ରାଟ ଓ ସମ୍ରାଟଙ୍କ ପୁତ୍ର ତିନ୍ତିଙ୍କୁ ବନ୍ଦୀ କରିବା ପାଇଁ ଏପରି ବ୍ୟବସ୍ଥା କରିଥିଲେ । ମୁଁ ଚିତ୍କାର କରି ଉଠିଲି । "ଆଉରଙ୍ଗଜେବ ହିଁ ଆମ ସମସ୍ତଙ୍କୁ ବନ୍ଦୀ କରି ରଖିବେ, ଏକମାତ୍ର ବେଗମ୍ ଆରା ମୁକ୍ତ ରହିବେ ।"

ରାଓ ପୁନର୍ବାର ଆସନ ଗ୍ରହଣ କଲେ ଏବଂ କହିଲେ, "ସମ୍ରାଟଙ୍କର ଜଣେ ଗୁପ୍ତଚର ସନ୍ଧାନ ପାଇଥିଲେ ଯେ, ବେଗମ୍-ଆରା ସବୁ ସମୟରେ ଆଉରଙ୍ଗଜେବଙ୍କ ସଙ୍ଗେ ପତ୍ରାଳାପ କରନ୍ତି । ଏଇ ପତ୍ର ଉପରେ ନିର୍ଭର କରି ଆଉରଙ୍ଗଜେବ ଏତେ ଶୀଘ୍ର ଏଇ ଷଡ଼ଯନ୍ତ୍ରର ବ୍ୟବସ୍ଥା କରିପାରିଲେ । ଅନ୍ତଃପୁରର ଆବରଣ ଅନ୍ତଃପୁରିକାକୁ ପୁରୁଷର ଦୃଷ୍ଟିଠାରୁ ଦୂରେଇ ରଖେ, କିନ୍ତୁ ଅବଗୁଣ୍ଠନ ଅନ୍ତରାଳରେ ନାରୀର ଅସ୍ତ୍ର ପୁରୁଷର ଅସ୍ତ୍ର ଅପେକ୍ଷା ଘାତକତର ।"

---

(୧) ଏହିପରି ଏକ କକ୍ଷ ଆକ୍‌ବରଙ୍କ ସମୟରେ ହାକିମ୍ ଆଲି ଗିଲାନି ନିର୍ମାଣ କରିଥିଲେ । ଆଇନ୍-ଇ-ଆକ୍‌ବରୀରେ ତାହାର ବର୍ଣ୍ଣନା ଅଛି ।

ଚତୁର୍ଦ୍ଦିଗର ଶଠତାରେ ବକ୍ଷୁବ୍ଧ ହୋଇ ମୁ କହି ଉଠିଲି, "ସମର୍ଥ ହୋଇଥିଲେ ଶ୍ରୀଦ ହିନ୍ଦଙ୍କ ପରି ମୁଁ ଯୁଦ୍ଧରେ ଯୋଗ ଦେଇଥାନ୍ତି । ସେ ସମ୍ରାଟ ଆକ୍‌ବରଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିଥିଲେ । ଆମରି ବଂଶର କୁଳବଧ ନୂରଜାହାନ୍ ବେଗମ୍ ତାଙ୍କର କାରାବଦ୍ଧ ସ୍ୱାମୀ ଜାହାଙ୍ଗୀରଙ୍କୁ ମୁକ୍ତ କରିବାକୁ ହସ୍ତୀ ପୃଷ୍ଠରେ ନଦୀ ଅତିକ୍ରମ କରିଥିଲେ । (୧)

ଏହାପରେ ରାଓ ଉଠି ଠିଆ ହେଲେ । ଦୃଢ଼ ମୁଷ୍ଟିଦ୍ୱାରା ସେ ସମ୍ମୁଖର ଆସନକୁ ଆଘାତ କଲେ । ମନେ ହେଲା, ମର୍ମର ପ୍ରସ୍ତର ଖଣ୍ଡ-ବିଖଣ୍ଡ ହୋଇଯିବ । ସେ କହିଲେ, "ଶାହଜାଦା ଆଉରଙ୍ଗଜେବ ଘୋଷଣା କରିଥିଲେ, ଯଦି ତୈମୁର ବଂଶର ସମସ୍ତ ସନ୍ତାନ ତାଙ୍କ ବିରୁଦ୍ଧରେ ଅଭିଯାନ କରନ୍ତି, ତେବେ ସେ ବିନ୍ଦୁମାତ୍ର ବିଚଳିତ ହେବେ ନାହିଁ । ମୁଁ କହୁଛି, ସମ୍ରାଟଙ୍କ ଭକ୍ତିଶୀଳ ଅନୁଚରଗଣ ଯଦି ଦଳବଦ୍ଧ ଭାବେ ଆଉରଙ୍ଗ-ଜେବଙ୍କ ବିରୁଦ୍ଧରେ ସିଂହାସନର ପଥରେ ଅଗ୍ରସର ହୁଅନ୍ତି, ତେବେ ସମ୍ରାଟ କେବେ ବଶ୍ୟତା ସ୍ୱୀକାର କରିବେ ନାହିଁ । ରକ୍ତ ବର୍ଣ୍ଣର ଆସ୍ତରଣ ଅତିକ୍ରମ କରି ଆସିବାକୁ ହେବ ।"

ମନେ ହେଲା, ମୁଁ ମୋ ସମ୍ମୁଖରେ ଦେଖି ପାରୁଛି, ଇସ୍‌ଲାମ୍‌ର ପ୍ରଥମ ଅଭିଯାନ ସମୟରୁ ମୋ ବଂଶର ପୂର୍ବ ପୁରୁଷଗଣ ଇସ୍‌ଲାମ୍ ବିରୁଦ୍ଧରେ ଆତ୍ମରକ୍ଷା କରି ଆସୁଛନ୍ତି । ସେଇ ବୀର ପୁରୁଷମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ହେଉଛନ୍ତି ମାଣିକ ରାୟ । ମହମ୍ମଦଙ୍କ ମୃତ୍ୟୁର ଅବ୍ୟବହିତ ପରେ ହିଁ ସେ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କ ବୀରତ୍ୱର କାହାଣୀ ଆଜ ମଧ୍ୟ ବୁନ୍ଦୀ ରାଜ୍ୟରେ ଶ୍ରଦ୍ଧାର ସହିତ ଗୀତ ହୁଏ ।

ତାହାପରେ ଗୋଗା ଚୌହାନ୍ ମାମୁଦ୍ ଗଜନୀ ବିରୁଦ୍ଧରେ ମୃତ୍ୟୁ ଅଭିଯାନ କରିଥିଲେ, ତାଙ୍କର ଛୟାଳିଶିଟି ପୁତ୍ରଙ୍କ ସହିତ ।

ମୁଁ ଚୌହାନ୍ ଷ୍କୁରଣକବି ଶ୍ରୀନ୍ଦବରଦାୟୀଙ୍କ ଭାବ ଅନୁକରଣ କରି କହିଲି, "ଶତ୍ରୁର ଉନ୍ମୁକ୍ତ ତରବାରି ବିରୁଦ୍ଧରେ ତୀର୍ଥଯାତ୍ରୀ ପରି ସେମାନେ ଅଭିଯାନ କରିଥିଲେ । ମୁଁ ମାମୁଦ ଗଜନୀଙ୍କୁ ଘୃଣା କରେ ।"

---

(୧) ମହବତ୍ ଖାନ୍ ଜାହାଙ୍ଗୀରଙ୍କୁ ବନ୍ଦୀ କରିଥିଲେ । ନୁରଜାହାନ୍ ସ୍ୱୟଂ ହସ୍ତୀପୃଷ୍ଠରେ ଆରୋହଣ କରି ଶତ୍ରୁ ବିରୁଦ୍ଧରେ ଅଗ୍ନିଚାଳନା କରି ସ୍ୱାମୀଙ୍କୁ ମୁକ୍ତ କରିଥିଲେ । ତାହା ବାସ୍ତବିକ ଏକ ଅପୂର୍ବ ବୀରତ୍ୱର କାହାଣୀ ।

ରାଓ ବୋଧହୁଏ ମୋ କଥାର ଶକ୍ତି ଅନୁଭବ କରି ପାରିଥିଲେ । ତାଙ୍କ ମୁଖମଣ୍ଡଳ ମୋ କଥାରେ ଉଦ୍‌ଭାସିତ ହୋଇଉଠିଲା । ସେ କହି ଚାଲିଲେ, "ଏଇ ବୀର ସନ୍ତାନଗଣଙ୍କର ମୃତ୍ୟୁ ବ୍ୟର୍ଥ ହୋଇନାହିଁ । ଆମେ ଭାରତୀୟ ଯୋଦ୍ଧାଗଣ ଦେଶାନ୍ତର ଅଭିଯାନ କରି କେବେ କେଉଁ ମସ୍‌ଜିଦ୍ ଧ୍ୱଂସ କରିଛୁ କି ? କିନ୍ତୁ ଆଲ୍ଲାହ୍‌ଙ୍କ ପବିତ୍ର ନାମରେ ରାଜସ୍ଥାନର ରାଜ-ପଥରେ ଯୁଗଯୁଗ ଧରି ରକ୍ତର ନଦୀ ବହିଚାଲିଛି । ଏଇ ଭାରତ ଭୂମିରେ ମନ୍ଦିର ପରେ ମନ୍ଦିର ଲୁଣ୍ଠିତ ହୋଇଛି, ଧ୍ୱସ୍ତ ହୋଇଛି । ନାଗରକୋଟ୍‌ର ପବିତ୍ର ମନ୍ଦିରର ଅନିର୍ବାଣ ଅଗ୍ନିଶିଖା ମାମୁଦ ନିର୍ବାପିତ କରିଛନ୍ତି । ବିରାଟ ସୋମନାଥ ମନ୍ଦିରର ଧନରତ୍ନରାଜି ଲୁଣ୍ଠନ କରିଛନ୍ତି । ବହୁ ଶତାବ୍ଦୀସଞ୍ଚିତ ହିନ୍ଦୁ ରାଜନ୍ୟବର୍ଗଙ୍କ ଧନରତ୍ନରାଜି ସେ ଅପହରଣ କରିଛନ୍ତି । ଭାରତର ଦେବତାମାନଙ୍କ ମର୍ମର ମୂର୍ତ୍ତି ସବୁ ମନ୍ଦିରରୁ ନିକ୍ଷିପ୍ତ ହୋଇ ନଦୀ-ସମୁଦ୍ର ଗର୍ଭରେ ସମଗ୍ର ଜାତିର ପାଣ୍ଡୁର ଶବଦେହ ପରି, ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଛି ।"

ରାଓ ଶୂନ୍ୟକୁ ଦୃଷ୍ଟି ନିକ୍ଷେପ କଲେ, ଯେପରି ବହୁ ଦୂରରେ କିଛି ଗୋଟାକର ସନ୍ଧାନ ସେ ପାଇଛନ୍ତି । ମୁଁ ତାଙ୍କର ଦୁଃଖ ଅନୁଭବ କଲି । କେତେକ କ୍ଷଣ ପରେ ତାଙ୍କର ରାଜୋଚିତ ଆଭିଜାତ୍ୟ ଫୁଟିଉଠିଲା । ସେ କହିଲେ, "ଆଜ୍‌ମୀରର ଚୌହାନ ରାଜବଂଶର ସନ୍ତାନ, ତାଙ୍କ ରାଜଧାନୀ ଅବରୋଧ ପରିତ୍ୟାଗ କରି ପଳାୟନ କରିବାକୁ ସୁଲତାନ୍ ମାମୁଦଙ୍କୁ ବାଧ୍ୟ କରିଥିଲେ । ସେଇ ଥିଲା ସୁଲତାନ୍ ମାମୁଦଙ୍କ ଶେଷ ଭାରତ ଅଭିଯାନ । କିନ୍ତୁ ଚୌହାନ ରାଜା ମୃତ୍ୟୁବରଣ କରିଥିଲେ । ଶତାବ୍ଦୀ ଅତିକ୍ରାନ୍ତ ହୋଇଛି । ଆଜି ପୁନର୍ବାର ସେଇ ଦୁର୍ଦ୍ଦଶାର ପୁନରାବୃତ୍ତି । ଭାରତର ଚିରନ୍ତନ ଅବମାନନା । ସେଦିନ କନୌଜର ରାଜା ଆଜ୍‌ମୀର ଦିଲ୍ଲୀର ଅଧିପତି ଭାରତବାସୀଙ୍କ ଶେଷ ରାଜା ପୃଥ୍ୱୀରାଜଙ୍କୁ ଧ୍ୱଂସ ପାଇଁ, ମହମ୍ମଦ ଘୋରୀଙ୍କୁ ଆହ୍ୱାନ କରିଥିଲେ । କିନ୍ତୁ କନୌଜ ରାଜା ମଧ୍ୟ ସେ ବିପଦରୁ ଅବ୍ୟାହତି ପାଇପାରିଲେ ନାହିଁ । ଏଇ ଦୁଇ ରାଜ୍ୟର ପତନ ପରେ ଭାରତବର୍ଷ ମୁଖରେ ପରାଧୀନତାର ଯେଉଁ ଚିହ୍ନ ଅଙ୍କିତ ହୋଇଥିଲା, ତାହା ଆଜି ମଧ୍ୟ ଲୁପ୍ତ ହୋଇନାହିଁ ।"

ମୁଁ ମୃଦୁ ସ୍ୱରରେ କହିଲି—'ସଂଯୁକ୍ତା'—ସେ ସ୍ୱର କେବଳ ମୁହିଁ ଶୁଣିଲି । ଅବଗୁଣ୍ଠନ ତଳେ ମୋ କପାଳ ରକ୍ତିମ ହୋଇଉଠିଲା । ସେ ଶବ୍ଦ

ସେ ମଧ୍ୟ ଶୁଣିଲେ । ସେ ଚଞ୍ଚଳ ହୋଇ ଉଠିଲେ, ତାଙ୍କ ମୁଖମଣ୍ଡଳ ରକ୍ତହୀନ ହେଲା, କିନ୍ତୁ ପାଂଶୁ ନ ହୋଇ କୃଷ୍ଣବର୍ଣ୍ଣ ହୋଇଉଠିଲା । ମୁଁ ସେ ପରିବର୍ତ୍ତନ ଲକ୍ଷ୍ୟ କଲି । ତାଙ୍କ ମୁଖମଣ୍ଡଳରେ ଯେପରି ଏକ ଘୃଣ୍ୟାସଂପାତ ହେଲା । କିନ୍ତୁ ଚକ୍ଷୁଦ୍ୱୟରେ ଫୁଟି ଉଠିଲା ଉଜ୍ଜ୍ୱଳତା । ସେ କହିଲେ, "ପୃଥ୍ୱୀରାଜଙ୍କ ନିକଟରେ ସଂଯୁକ୍ତାଙ୍କ ସ୍ଥାନ ପାର୍ଥିବ ସମ୍ପଦର ବହୁ ଊର୍ଦ୍ଧ୍ୱରେ । ତେଣୁ ସଂଯୁକ୍ତା ପାଇଁ ପୃଥ୍ୱୀରାଜ ନିଜର ସିଂହାସନ ଏବଂ ଜୀବନ ବିସର୍ଜନ ଦେଲେ । କେତେ ବୀର ରାଜପୁତ ପ୍ରେମ ପାଇଁ, ସମ୍ମାନ ପାଇଁ, ଯୁଦ୍ଧ କ୍ଷେତ୍ରରେ ଆତ୍ମବଳି ନ ଦେଇଛନ୍ତି ! ରାଜକୁମାରୀ, ତୁମ ମୁଖମଣ୍ଡଳର ଅବଗୁଣ୍ଠନ ଛିନ୍ନ କରି ମୋ ମଣିବନ୍ଧର ବନ୍ଧନ କରିଦିଅ । ତାହାକୁ ସମ୍ବଳ କରି ମୁଁ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେବି । ଏଇ ଦେଖ, ସୁଦୂର ପ୍ରାନ୍ତରରେ ଆଜି ମଧ୍ୟ ସମ୍ରାଟ ଆକ୍‌ବରଙ୍କ ଆକାଶ ପ୍ରଦୀପ ଜଳୁଛି । ରାତିର ଅନ୍ଧକାରରେ, ଯୁଦ୍ଧ ପରେ ପ୍ରତ୍ୟାବର୍ତ୍ତନଶୀଳ ସ୍ୱୀୟ ସୈନିକମାନଙ୍କ ଫତେପୁର ଶିକ୍‌ରିର ପଥ ଆଲୋକିତ କରିବା ପାଇଁ ସମ୍ରାଟ ତାହା ନିର୍ମାଣ କରିଥିଲେ । ବେଗମ ସାହେବଙ୍କ ରାଖୀବନ୍ଧ ଭାଇ ରୂପେ, ମୁଁ ମୋ ପୂର୍ବ ପୁରୁଷମାନଙ୍କ ପରି, ଇସ୍‌ଲାମ୍‌ର ସମ୍ମାନ ରକ୍ଷା ଉଦ୍ଦେଶ୍ୟରେ ଏହା ସ୍ମରଣ କରିବି ଏବଂ ସର୍ବସ୍ୱ ଉତ୍ସର୍ଗ କରିବି । ବେଗମ୍ ସାହେବଙ୍କ ସମ୍ମାନ, ମୋ ନିଜର ବି ସମ୍ମାନ ।"

ରାଓ୍ୱ ମୋତେ ପୂର୍ବ ଭଳି ସମ୍ମାନ କରୁଥିଲେ । ମୁଁ ସ୍ୱସ୍ତିରେ ନିଃଶ୍ୱାସ ନେଲି । ମୁଁ ମୋ ଅବଗୁଣ୍ଠନର ଅଂଶ ଛିନ୍ନକରି ତାଙ୍କର ମଣିବନ୍ଧରେ ବାନ୍ଧିଦେଲି । ସେଇ ଛିନ୍ନ ଅବଗୁଣ୍ଠନ ପ୍ରଥମେ ମୋ ଅଧର ସ୍ପର୍ଶ କଲା ।

ସମସ୍ତ ଅତିକ୍ରାନ୍ତ ହେଉଥିଲା । ମନେ ହେଲା, ଆଜିର ଅର୍ଦ୍ଧଦିବସ ମୋର ସମସ୍ତ ଜୀବନକୁ ଅତିକ୍ରମ କରିଯିବ । ତେଣୁ ମୁଁ ମୋର ରାଖୀବନ୍ଧ ଭାଇଙ୍କ ସଙ୍ଗେ ଆଜି ପ୍ରକୃତିରେ ଏଇ ସୌନ୍ଦର୍ଯ୍ୟ ସମ୍ପୂର୍ଣ୍ଣ ଉପଭୋଗ କରିବି ।

ଅସ୍ତାୟମାନ ସୂର୍ଯ୍ୟର ରକ୍ତ କିରଣ ଦିଗନ୍ତରେଖାରେ ବିଚ୍ଛୁରିତ ହୋଇ ପଡ଼ୁଥିଲା । ମନେହେଲା, ଆମେ ଯେପରି ସୂର୍ଯ୍ୟୋଦୟ ସମୟରେ

ପଥ ଅତିକ୍ରମ କରି ଚାଲିଛୁ ! ସନ୍ଧ୍ୟାଲୋକ ଆବରଣର ଅନ୍ତରାଳରେ ଆକାଶ ଶୁକ୍ତି—ମୁକ୍ତା ପରି ପ୍ରତିଭାତ ହେଉଥିଲା । ଅଦୂରର ମେଘଖଣ୍ଡ ସବୁ ଅଗ୍ନିଶିଖା ପରି ସ୍ୱର୍ଣ୍ଣାଭ ନୀଳ ଲୋହିତ ବର୍ଣ୍ଣରେ ଅନୁରଞ୍ଜିତ । ଦୂର ପ୍ରାନ୍ତରରୁ ଉତ୍‌ଥିତ ଭାସମାନ କୁଜ୍‌ଝଟିକା ଅରୁଣ-ରାଗରେ ଅଗ୍ନିଗର୍ଭ ହୋଇ ଉଠିଲା । ବାସ୍ତବିକ ସେଇ ରକ୍ତିମ ଆଲୋକ ମଧ୍ୟ ଦେଇ ଆମେ ନନ୍ଦନକାନନର ପଥରେ ପରିଭ୍ରମଣ କରୁଥିଲୁ ।

କରବୀ ଓ ପ୍ରବାଳ ଦ୍ୱୀପ ମଧ୍ୟ ଦେଇ ଗୋଟିଏ ପଥ ଶୁଷ୍କ ସରୋବର ଅଭିମୁଖେ ଲମ୍ବି ଯାଇଛି । ଏଇଠାରେ ସମ୍ରାଟ ବାବର ଜଳକ୍ରୀଡ଼ା କରୁଥିଲେ । କେବେ କେବେ ମଧ୍ୟ ସ୍ଥଳର ଉଚ୍ଚାସନରେ ବସି ବିଶ୍ରାମ କରୁଥିଲେ । ଏକଦା ଏଇ ସ୍ଥାନଟି ସାମାନ୍ୟ ଏକ ଗ୍ରାମ ହିଁ ଥିଲା । ଏହାର ନାମ ଥିଲା ଶିକ୍‌ରୀ । ସରୋବର ପାର୍ଶ୍ୱକୁ ଯାଇ ମୁଁ ସେ ଉଚ୍ଚାସନରେ ବସିଲି । ଉଚ୍ଚାସନର ଏକ ପାର୍ଶ୍ୱସ୍ଥ ସୋପାନରେ ରାଓ ଉପବେଶନ କଲେ ।

ଯେଉଁ ସମସ୍ତ ସେନାଧ୍ୟକ୍ଷ ମନେ ମନେ ଆଉରଙ୍ଗଜେବଙ୍କ ପକ୍ଷ-ପାତୀ ଥିଲେ, କମ୍ବା ମୀର୍‌ଜୁମଲା ଓ ନଜରତ୍ ଖାଁଙ୍କ ପରି ପୂର୍ବରୁ ଯେଉଁମାନେ ତାଙ୍କ ସଙ୍ଗେ ଯୋଗ ଦେଇଥିଲେ, ସେମାନଙ୍କ କଥା କହିବାକୁ ଆରମ୍ଭ କଲି । ହଠାତ୍ ରାଓ ମସ୍ତକ ସଞ୍ଚାଳନ କରି ସତେ ଯେପରି ଦୂରର କୌଣସି ଏକ ଜନିଷ ଦେଖି ପାରିଲେ । ମୁଁ ଦେଖି ପାରିଲି, ତାଙ୍କ ଉଷ୍ଣୀଷ ଅନ୍ତରାଳରେ ମୁକ୍ତାହାର ସଂଲଗ୍ନ ଦୁଇଟି ଅପୂର୍ବ ମୁକ୍ତାଖଣ୍ଡ । ମୁଁ ମୋ ଆନନ୍ଦର ଉଚ୍ଛ୍ୱାସ ସମ୍ବରଣ କଲି । ଏହା ଯେ ମୋର ପ୍ରଦତ୍ତ ଉପହାର ।

ଏକ ନୂତନ ସ୍ୱରରେ ସେ କହିଲେ, "ବେଗମ୍ ସାହେବା, ସେଇ ପ୍ରାନ୍ତର ଦେଖନ୍ତୁ—ସେଇଠାରେ ଏକଦା ବାବର ଓ ରାଣା ସଂଗ୍ରାମ ସିଂହ ଯୁଦ୍ଧ କରିଥିଲେ··· ।

ସେଇ ରକ୍ତପ୍ଲାବନର କାହାଣୀ ମୁଁ ଆଉ ଶୁଣି ପାରିଲି ନାହିଁ । ମୋ'ର ସହଧର୍ମୀଗଣ ଭାରତ ଉପରେ କି ରକ୍ତର ବନ୍ୟା ବୁହାଇ ଥିଲେ !

ମୁଁ କହିଲି, ଯଦି ଏହି ଯୁଦ୍ଧ ହିଁ ସାମ୍ରାଜ୍ୟ ଉଦ୍ଦେଶ୍ୟରେ ଶେଷ ଯୁଦ୍ଧ ହୁଅନ୍ତା ଏବଂ ମୋ ଭାଇ ଦାରା ଯଦି ଫତେପୁର ପ୍ରବେଶ କରି ଶାନ୍ତିର ଉତ୍ସବ ସମାପନ କରି ପାରନ୍ତେ !

ଗାଛିକ୍ଷି କରି ସାର୍ଓ କହିଲେ, ଏଇ ନଗରଟି ଗତୋର ଲଣ୍ଡନର ଶେଷ ଭାଗରେ ନିର୍ମିତ ହୋଇଥିଲା । ରକ୍ତ ମଧ୍ୟ ଦେଇ ହିଁ ଏ ସାମ୍ରାଜ୍ୟର କଳ୍ପନା କରାଯାଇଥିଲା ଏବଂ ରକ୍ତ ଦେଇ ଏ ସମ୍ରାଜ୍ୟର ଐକ୍ୟ ରକ୍ଷା କରିବାକୁ ହେବ । ସେ ସ୍ୱପ୍ନ ଦେଖୁଥିଲେ, ଏକ ନୂତନ ବିଶ୍ୱାସ ଦ୍ୱାରା ସେ ଐକ୍ୟ ରକ୍ଷା କରା ଯାଇପାରେ; କିନ୍ତୁ ତୈମୁର ବେଗ୍‌ଙ୍କ ମୃତ୍ୟୁ ପରେ ସାମ୍ରାଜ୍ୟର ବିଶାଳତା ଯୋଗୁ ହିଁ ଦ୍ରୁତ ଗତିରେ ତାହା ଧ୍ୱଂସ ମୁଖୀ ହେଲା । ସମ୍ରାଟ ଆକବରଙ୍କ ସ୍ୱପ୍ନ ଏତେ ବିଶାଳ ଥିଲା ଯେ, ଲକ୍ଷକୋଟି କ୍ଷୁଦ୍ର ମଣିଷ ସେ ସ୍ୱପ୍ନକୁ ସଫଳ କରିପାରିଲେ ନାହିଁ । ତଥାପି ଆମେମାନେ ଆଜି ସେଇ ସ୍ୱପ୍ନର ଧ୍ୱଂସାବଶେଷର ଭିତ୍ତି ଉପରେ ଠିଆ ହୋଇଛୁ ।

ମୁଁ ଅସ୍ୱସ୍ତି ବୋଧକଲି । ମନେହେଲା, ମୋ ପାଇଁ ଏକ ସୁଦୃଢ଼ ଭିତ୍ତିର ପ୍ରୟୋଜନ ଅଛି, ସେଠାରେ ଆମେ ଦୁହେଁ ହୁଏ ତ ଦଣ୍ଡାୟମାନ ହୋଇପାରିବୁ ! ମୁଁ କହିଲି, "ସମ୍ରାଟ ଆକ୍‌ବର ଭାରତବାସୀଙ୍କୁ ଭଲ ପାଉଥିଲେ ଏବଂ ରାଜସ୍ଥାନର ନାରୀମାନଙ୍କୁ ବିବାହ କରିଥିଲେ ।"

ସାର୍ଓ ସାମାନ୍ୟ ତୀକ୍ଷ୍ଣ ସ୍ୱରରେ ଉତ୍ତର ଦେଲେ, "ସବୁ ସମୟରେ ସେ ହିନ୍ଦୁମାନଙ୍କୁ ସମ୍ମାନ କରୁ ନ ଥିଲେ । ଏବେ ବି ରାଜସ୍ଥାନରେ କିମ୍ବଦନ୍ତୀ ଅଛି, ସମ୍ରାଟ ପୃଥ୍ୱୀରାଜଙ୍କ ସ୍ତ୍ରୀ ଙ୍କୁ ପ୍ରଲୁବ୍‌ଧ କରିବାକୁ ଚାହୁଁଥିଲେ । ଏଇ ପୃଥ୍ୱୀରାଜ ପ୍ରତାପଙ୍କୁ ଲେଖିଥିଲେ, ହିନ୍ଦୁ ହିଁ ହିନ୍ଦୁର ଭରସା । ନଓରୋଜ ଉତ୍ସବରେ ସମ୍ରାଟ ଆକବର ପୃଥ୍ୱୀରାଜଙ୍କ ସ୍ତ୍ରୀଙ୍କୁ ସ୍ୱାମୀଙ୍କ ପ୍ରତି ଅବିଶ୍ୱାସୀ କରାଇବାକୁ ଚେଷ୍ଟା କରିଥିଲେ । ସେଇ ଅପମାନରେ ରାଣୀ ତରବାରି ଆଘାତରେ ଆତ୍ମହତ୍ୟା କରିବାକୁ ଚାହିଁଥିଲେ ।"

ମୋ ଶିରାରେ ମୋ ବଂଶର ରକ୍ତ ଚଞ୍ଚଳ ହୋଇ ଉଠିଲା । ମୁଁ କହିଲି, "ଯଦି ଏପରି କୌଣସି ବ୍ୟକ୍ତି ଥାନ୍ତି, ଯାହାଙ୍କ ପାଇଁ ମୁଁ ମୋ ଚିରନ୍ତନ ଶାନ୍ତି ବିନାମୂଲ୍ୟ କରିପାରେ, ତେବେ ସେ ହେଉଛନ୍ତି ଭାରତର ସମ୍ରାଟ ଆକ୍‌ବର୍ ।" ରକ୍ତ ଉଷ୍ଣ ହୋଇ ଉଠିଲା । ପୁଣି କହିଲି, "ତାଙ୍କ ନୟନର ପ୍ରସନ୍ନ ଦୃଷ୍ଟି ପାଇଁ ମୁଁ ମୋର ସର୍ବସ୍ୱ ତ୍ୟାଗ କରିପାରେ ।"

ରତ୍ନଙ୍କ ମୁଖ ମଣ୍ଡଳ ଅନ୍ଧକାରାଚ୍ଛନ୍ନ ହେଲା । ତାଙ୍କ ଦୃଷ୍ଟି ଅବନମିତ ହେଲା । ମୋର ଭାଷା ତାଙ୍କୁ ତୀବ୍ରଭାବରେ ଦଂଶନ କରିଥିଲା । ମୋ ହୃଦୟ ବିଚଳିତ ହେଲା । ମୁଁ କହିଲି, ପୃଥ୍ୱୀରାଜଙ୍କ ସ୍ତ୍ରୀ ପରି ମୁଁ ଯଦି କୌଣସି ଭାରତୀୟ ରାଜକୁମାରଙ୍କୁ ବିବାହ କରିଥାନ୍ତି !

ମେଘ କୋଳରେ ସୂର୍ଯ୍ୟରଶ୍ମି ବିଲୀନ ହୋଇଗଲା । ଅତି କ୍ଷୀଣ ଶୁଭ୍ର କୁଜ୍‌ଝଟିକା ସୂର୍ଯ୍ୟକୁ ଆବୃତ କରିଦେଲା । ଅସ୍ତ ହେବାର ପୂର୍ବ ମୁହୂର୍ତ୍ତରେ ମୁହୂର୍ତ୍ତକ ପାଇଁ ସୂର୍ଯ୍ୟ ଦିଗନ୍ତରେ ଉଦ୍‌ଭାସିତ ହୋଇ ଉଠିଲା । ଯେପରି ଏକ ବିରାଟ ହୀରକ ଖଣ୍ଡ ଆଲୋକ ଶିଖାରେ ବିଚ୍ଛୁରିତ ହେଲା । ଆମେ ଦୁହେଁ ଶେଷ ସୂର୍ଯ୍ୟର ଆଲୋକ-ରଶ୍ମିରେ ମହିମାନ୍ୱିତ ହେଲୁ । ରତ୍ନ ମୋତେ ଅନାଇ ରହିଲେ, ସସ୍ମିତ ଦୃଷ୍ଟି । ହୁଏତ ମୋ ଅବଗୁଣ୍ଠନ ମଧ୍ୟ ଦେଇ ସେ ମୋ ହାସ୍ୟୋଜ୍ଜ୍ୱଳ ମୁଖ ମଣ୍ଡଳ ଦେଖି ପାରୁଥିଲେ ।

ରତ୍ନ କହିଲେ, "ଶାହଜାଦୀ, ମୋତେ କ୍ଷମା କରନ୍ତୁ । ମୋ ଭିତରର ସୁପ୍ତ ସୈନିକ ଜାଗି ଉଠିଥିଲା । ମୁଁ ଆପଣଙ୍କ ଅନୁଗତ, ମୋ ମଣିବନ୍ଧର ନୂତନ ବନ୍ଧନ ରତ୍ନ ତାଙ୍କ ଅଧର ପୃଷ୍ଠରେ ସ୍ପର୍ଶ କଲେ ।"

ଆଗାମୀ ପ୍ରଭାତ ପର୍ଯ୍ୟନ୍ତ ମୁଁ ଫତେପୁରରେ ବିଶ୍ରାମ କରିବି । ଏ ସିଦ୍ଧାନ୍ତ ରତ୍ନଙ୍କର ମନଃପୂତ ହେଲା ନାହିଁ, କାରଣ ପାରିପାର୍ଶ୍ୱିକ ଅବସ୍ଥା ଅତ୍ୟନ୍ତ ସଙ୍କଟାପନ୍ନ ଥିଲା । ସେ ସ୍ଥିର କରିଥିଲେ, ପ୍ରଭାତ ପୂର୍ବରୁ ସେ ସ୍ଥାନ ପରିତ୍ୟାଗ କରିବେ ନାହିଁ । ତାଙ୍କ ସୈନ୍ୟଗଣ ମୋ କ୍ଷୁଦ୍ର ପ୍ରାସାଦର ନିମ୍ନରେ ରାତିଯାପନ କରିବେ, ଏବଂ ସେ ସ୍ୱୟଂ ଉଦାର ପ୍ରକୋଷ୍ଠର ନିମ୍ନରେ ଗମ୍ବୁଜ ସଂଲଗ୍ନ ଏକ କୋଠରୀରେ ଅବସ୍ଥାନ କରିବେ ।

ଆମର ପରବର୍ତ୍ତୀ ସାକ୍ଷାତ୍ ପ୍ରାସାଦ ଅଭ୍ୟନ୍ତରରେ ହିଁ ହେଲା । କ୍ରୀତ ଦାସ ଖୋଜା ଆମର ସମ୍ମାନିତ ଅତିଥିଙ୍କ ପାଇଁ ନିମ୍ନତଳର ସୁନ୍ଦରତମ କକ୍ଷରେ ଅତି ଅନାଡ଼ମ୍ବର ଏକ ଭୋଜିର ବ୍ୟବସ୍ଥା କରିଥିଲା; କିନ୍ତୁ ଆଜିକାଲି ମୁଁ ସ୍ଥାନ, କାଳ, ପାତ୍ର ତଥା ପ୍ରଚଳିତ ସମାଜ ନିୟମ ଅତିକ୍ରମ କରି ଯାଉଥିଲି । ଇଚ୍ଛା ହେଉଥିଲା, ମୋ ରାଖିବନ୍ଧ ଭାଇଙ୍କ ହସ୍ତରେ କିଛି ଫଳ ପରିବେଷଣ କରିବି । ମୋ ପ୍ରକୋଷ୍ଠର ବାହାରେ ତ୍ରିକୋଣ ପ୍ରାଚୀର

ପାର୍ଶ୍ୱରେ କୋଏଲ୍ ଏକ ମୃତ୍ପାତ୍ରରେ ଚମ୍ପକ ପୁଷ୍ପ ଏବଂ ଗୋଟିଏ ସବୁଜ କୃଷ୍ଣାନ୍ ରଖିଥିଲା । କସ୍ତୁରୀ ଗନ୍ଧ ନିଃସୃତ ବୃହତ୍ ପ୍ରଦୀପାଧାରରେ ଦୁଇଟି ମହମବତୀ ରକ୍ଷିତ ହୋଇଥିଲା । ପ୍ରଦୀପାଧାରର ଦୁଇ ପାର୍ଶ୍ୱରେ ଦୁଇଟି ପ୍ରବାଳ ଦୀପ ଜଳୁଥିଲା । ଏକ କ୍ଷୁଦ୍ର ଟେବୁଲ ଉପରେ ସବୁଜ ତରଭୁଜ ଏବଂ ସୁନେଲି ଅଙ୍ଗୁର ରକ୍ଷିତ ଥିଲା । ସେଗୁଡ଼ିକ ବାବରଙ୍କ କାବୁଲ-ଉଦ୍ୟାନରୁ ଆମଦାନୀ କରାଯାଇଥିଲା । ଆତ, ଆମ୍ବ, ଲିଚୁ, ଶୁଷ୍କ ଖଜୁରୀକୋଳି ଓ ବାଦାମ ବାସରା ତଥା ଇରାନ ଦେଶରୁ ସଂଗୃହୀତ ହୋଇଥିଲା । ସୁବର୍ଣ୍ଣ ପାତ୍ରରେ ମୂଲ୍ୟବାନ୍ ସୁରା ଥିଲା । ସିରାଜର ସେଇ ସୁରା ଯେପରି ସିରାଜର ରକ୍ତ-ଅଶ୍ରୁ ହିଁ ଥିଲା ! ପ୍ରଥମ ବନ୍ଦିର ବାସର ରାମିଣୀ ନବବଧୂପରି ମୁଁ ସଲଜ୍ଜ ହସ୍ତରେ କେତୋଟି ପୁଷ୍ପ ଚୟନ କରି ମୋ କର୍ଣ୍ଣଦ୍ୱୟ ଅଳଂକୃତ କଲି । ନିଜର ସର୍ବାଙ୍ଗ ଅଳଙ୍କାର ବିଭୂଷିତ କଲି । ଏଇତ ସମାନ୍ୟ, ପୂର୍ବରୁ ମୁଁ ସେ ଅଳଙ୍କାର ସବୁ ଦାନ କରି ଦେବାକୁ ଚାହିଁଥିଲି ।

ରାଓ ମୋ କକ୍ଷଦ୍ୱାରରେ ଉପସ୍ଥିତ । ତାଙ୍କର ମୁଖମଣ୍ଡଳ ମୋ ପକ୍ଷରେ ନିତ୍ୟ ନୂତନ । ତାଙ୍କ ଆକୃତିରେ ଭୀଷଣ ସଂଗ୍ରାମ ଓ ଅଦମ୍ୟ ଇଚ୍ଛା ଶକ୍ତିର ଆଭାସ । କେଉଁ ମୁହୂର୍ତ୍ତରେ ତାଙ୍କ ମୁଖମଣ୍ଡଳ ହାସ୍ୟଦୀପ୍ତ ହୋଇ-ଉଠେ, ପୁଣି ଅନ୍ୟ କେଉଁ ମୁହୂର୍ତ୍ତରେ ତାହା ଏତେ ଗମ୍ଭୀର ହୁଏ ଯେ, ମୁଁ ଭୀତତ୍ରସ୍ତ ହୋଇପଡ଼େ ।

ସେ ମୋ ସମ୍ମୁଖ ଆସନରେ ଉପବେଶନ କଲେ । ତାଙ୍କର ଦୃଷ୍ଟି ଅବନମିତ । ଆମେ ଅଳିନ୍ଦ କୋଣରେ ପରସ୍ପରର ବିପରୀତ ଦିଗରେ, ଚତୁଷ୍କୋଣ ଆସନରେ ଉପବେଶନ କଲୁ । ମୋ ମସ୍ତକର ଉପରି ଭାଗରେ ଏକ କ୍ଷୁଦ୍ର ଅର୍ଦ୍ଧ ଗୋଲାକୃତି ପ୍ରାଚୀର । ବହୁଦିନ ଯାବତ୍ ସୂର୍ଯ୍ୟବଂଶର ସନ୍ତାନଗଣ ସ୍ୱର୍ଣ୍ଣପୀତାଭ ସୂର୍ଯ୍ୟାଲୋକରେ ଉଦ୍ଭାସିତ । ଅପରିବର୍ତ୍ତନୀୟ ଆଲୋକର ଗଭୀର ରେଖା ଏ ବଂଶର ସନ୍ତାନମାନଙ୍କ ମୁଖମଣ୍ଡଳରେ ଚିରଦିନ ଅଙ୍କିତ ହୋଇଛି । ସେ ବୀରପୁରୁଷ ମୋ ସମ୍ମୁଖରେ ଶ୍ରୀରାମଚନ୍ଦ୍ରଙ୍କ ମୂର୍ତ୍ତିରୂପେ ପ୍ରତିଭାତ ହେଉଥିଲେ । ଆମେ ପରସ୍ପରର ଅତି ନିକଟରେ ବସିଥିଲୁ । ମନେ ହେଉଥିଲା, ଯେପରି ଏକ ଅଦୃଶ୍ୟ ଅତଳସ୍ପର୍ଶୀ ଗହ୍ୱରତା ଆମ ମଧ୍ୟରେ ବିରାଟ ବ୍ୟବଧାନ ରଚନା କରିଛି । ଆମ ଚତୁଷ୍ପାର୍ଶ୍ୱରେ ଜୀବନ, ଆମ ପାଶ୍ଚାତରେ ସହସ୍ର ବର୍ଷ··· ।

ମୋତେ ଯେପରି କେହି ଅକସ୍ମାତ୍ ପ୍ରଶ୍ନ କରିବାକୁ ବାଧ୍ୟ କଲା, "ଯୁଦ୍ଧ କ୍ଷେତ୍ରରେ ମଣିଷ ଯେଉଁ ହତ୍ୟାକାଣ୍ଡ ଘଟାଏ, ତାର କପରି ଅନୁଭୂତି ହୁଏ ?" ମୁଁ ମୋର ପାନ୍ନାଖଚିତ ପାନପାତ୍ର ତାଙ୍କ ହାତକୁ ବଢ଼ାଇ ଦେଲି । ସେ ପାନ ପାତ୍ର ସ୍ପର୍ଶ ନ କରି ଦୂରରୁ ପାମାପ୍ୟ ପ୍ରତି ଦୃଷ୍ଟି ନକ୍ଷେପ କଲେ । ଉତ୍ତର ଦେଲେ, "ଆମେ ରାଜପୁତମାନେ ଯଦି ଅସ୍ତ୍ରଧାରଣ କରିବାକୁ ଅକ୍ଷମ ହୋଇଥାନ୍ତୁ; ତେବେ ରାଜସ୍ଥାନର ଅସ୍ତିତ୍ୱ ଆଜି ନଥାନ୍ତା, ମୋଗଲ ସାମ୍ରାଜ୍ୟ ଆଜି ପର୍ଯ୍ୟନ୍ତ ତିଷ୍ଠି ନ ଥାନ୍ତା । ହେ ଶାହଜାଦି ! ହନ୍ତା ଓ ନିହତ ଉଭୟ ବ୍ୟକ୍ତି ମଧ୍ୟଦେଇ ଏକ ସ୍ରୋତ ବହିଚାଲିଛି । ଆମେ ତାହାକୁ ହିଁ ଜୀବନ ବୋଲି କହୁଁ । ନଦୀ ଅସୀମ ସମୁଦ୍ରର ସନ୍ଧାନ କରେ । ମଣିଷର ଜୀବନ ସମସ୍ତ ସୀମା ଅତିକ୍ରମ କରି ସ୍ରଷ୍ଟା ଓ ସୃଷ୍ଟି ମଧ୍ୟ ଦେଇ ଅସୀମର ସନ୍ଧାନରେ ଛୁଟିଚାଲେ । ମୁଁ ଯେତେବେଳେ ସମ୍ରାଟଙ୍କ ପାଇଁ ଯୁଦ୍ଧ କରୁଛି, ମଣିଷ ହତ୍ୟା କରୁଛି, ମନୁଷ୍ୟତ୍ୱର ଦାବୀ ହିଁ ମୋତେ ପ୍ରେରଣା ଦେଉଛି । ଯେଉଁ ଦିନ ଯୁଦ୍ଧରେ ମୁଁ ନିହତ ହେବି, ସେଇଦିନ ମୁଁ ମନେ କରିବି ଯେ, ମୋର କ୍ଷତ୍ରିୟ ଧର୍ମ ପାଳନ କରିଛି । "

ମୁଁ ମନସ୍ତାପରେ ଅଭିଭୂତ ହୋଇ ପଡ଼ିଲି । ମୋର ଭୟ ହେଲା, ମୁଁ ହୁଏତ ମୋର ବୀରଭାଇଙ୍କୁ ହରାଇବି । ମୁଁ ପ୍ରାୟ ସ୍ୱଗତ ଉକ୍ତି କଲି— "ଆମ ଭିତରେ ଏପରି କେତେ ଜଣ ଅଛନ୍ତି, ଯେଉଁମାନେ ଚିରନ୍ତନ ପରିବର୍ତ୍ତନ ଇଚ୍ଛା କରନ୍ତି ?" ମୁଁ ମୋ ଅଦୃଷ୍ଟ ବିରୁଦ୍ଧରେ ବିଦ୍ରୋହ କଲି । —ଏଇ ଅଦୃଷ୍ଟ ହିଁ ମଣିଷକୁ ସ୍ରୋତରେ ଭସାଇ ଦିଏ । ରାଓଙ୍କର ମୁଖ ମଣ୍ଡଳ ମଧୁର ମୃଦୁତାରେ ଭରିଗଲା । ସେ କହିଲେ, "ନାଡ୍ଡୋଲ୍‌ର ଏକ ପ୍ରସ୍ତର ଗାତ୍ରରେ ଉତ୍କୀର୍ଣ୍ଣ ଥିଲା, ହରିରାଜ କୁମାର ଅଳଂଦେବଙ୍କ କାହାଣୀ । ସିଂହାସନ ଆରୋହଣର ଦିନ ଅଳଂଦେବ ବୁଝିଲେ ଯେ, ଏ ଜଗତ୍ ଅନିତ୍ୟ, ଅର୍ଥାତ୍ ପଦ୍ମପତ୍ରରେ ଶିଶିର ବିନ୍ଦୁ ପରି, ଅଦୃଶ୍ୟ ହେବା ପୂର୍ବରୁ ମୁହୂର୍ତ୍ତକ ପାଇଁ ମୁକ୍ତାର ରୂପ ଧାରଣ କରେ । ଶାହାଜାଦି ଜାହାନାରା ! ଏଇ ଯେ ସ୍ୱର୍ଗୀୟ ଆନନ୍ଦର ଶିଶିର କଣିକା ଆମେ ଉପଭୋଗ କରୁଛୁ । ସେଇଥିରୁ କ'ଣ ପ୍ରମାଣିତ ହେଉନାହିଁ ଯେ, ଜୀବନସ୍ରୋତ ଆନନ୍ଦ-ସମୁଦ୍ର ଅଭିମୁଖେ ଛୁଟି ଚାଲିଛି ? ମଣିଷ କ'ଣ ଚିରନ୍ତନର ଆକାଂକ୍ଷା କରେ ନାହିଁ ?"

ସେ ମୋ ପ୍ରଦତ୍ତ ପାନ ପାତ୍ର ଉପରେ କର ସଞ୍ଚାଳନ କରି ତାହାକୁ ଆଦର କରୁଥିଲେ । ମୋ ହୃଦୟ ପରିପୂର୍ଣ୍ଣ ହୋଇଗଲା । ମୁଁ କୌଣସି

ଉତ୍ତର ଦେଇ ପାରିଲି ନାହିଁ । ମୋ ଆଡ଼େ ଦୃଷ୍ଟି ନିକ୍ଷେପ ନ କରି ସେ ମୋ ପ୍ରଥମ ପ୍ରଶ୍ନର ଉତ୍ତର ଦେଲେ । "ବହୁକାଳ ପୂର୍ବେ ଭାରତରେ ଜଣେ ସମ୍ରାଟ ଥିଲେ; ସେ ଜୀବହତ୍ୟା ନିଷେଧ କରିଥିଲେ । ତାଙ୍କର ନାମ ଥିଲା ଅଶୋକ । ସେ ଇହଜଗତରେ ଯାହା କିଛି କରୁଥିଲେ, ସେ ସମସ୍ତ ପରଜଗତ ଉଦ୍ଦେଶ୍ୟରେ ବ୍ୟବସ୍ଥିତ ଥିଲା । ମୁକୁରର କାଚଖଣ୍ଡ ପରି ଥିଲା, ତାଙ୍କ ଅନ୍ତରର ପ୍ରଶାନ୍ତି ।" ଗାଓ ଯେପରି ନିଜ ସଙ୍ଗେ ନିଜେ କଥା କହୁଥିଲେ;— "ଅଶୋକ ଥିଲେ ଅହିଂସାବାଦୀ, ଶତ୍ରୁ ପାଇଁ ସେ ଆର୍ଯ୍ୟାବର୍ତ୍ତର ଦ୍ୱାର ଉନ୍ମୁକ୍ତ ରଖିଗଲେ । ଉତ୍ତର ଦିଗରୁ ଶତ୍ରୁର ଅଭିଯାନ ଆରମ୍ଭ ହେଲା । ତାହା ଫଳରେ ଧ୍ୱଂସ ହତ୍ୟାକାଣ୍ଡ ..... ।"

ମୁଁ ତାଙ୍କର ପ୍ରତ୍ୟେକ କଥା ମନଦେଇ ଶୁଣୁଥିଲି । କିନ୍ତୁ ଅନେକ ଦିନ ପରେ ତାଙ୍କ କଥାର ମର୍ମାର୍ଥ ଉପଲବ୍ଧି କଲି । ସେଇ ପରମ ଶୁଭ-କ୍ଷଣରେ କେବଳ ତାଙ୍କରି ଚିନ୍ତା ମୋତେ ଅପରିସୀମ ଆନନ୍ଦ ଦେଉଥିଲା । ସେ ମୋ ସମ୍ମୁଖରେ ବସିଥିଲେ । ତାଙ୍କର ଉଷ୍ଣୀଷ ଶୁଭ୍ର, ରାଜଭୂଷଣ ଶୁଭ୍ର, ତାଙ୍କର ବର୍ଣ୍ଣ ଶୁଭ୍ର, ତାଙ୍କ କଟୀଦେଶରେ ଶୁଭ୍ର କମରବନ୍ଧ । ତାଙ୍କ ପାଦତଳେ ସୁବର୍ଣ୍ଣରେଖାଙ୍କିତ କମଳ ଦଳ କି ସୁନ୍ଦର, ସୁ-ସଙ୍ଗତ !

ଆକାଶରେ ତାରକାମାନଙ୍କ ମେଳା ବସିଛି । ଗୋଟିଏ ତାରା ଆମ ମଥା ଉପରେ ଆଲୋକ ସଂପାତ କରିବାରେ କାର୍ପଣ୍ୟ କରୁନାହିଁ । ଯେଉଁ ତାରାଟି ଆମର ନିକଟତମ ଓ ଉଜ୍ଜ୍ୱଳତମ ଥିଲା, ସେଇଟି ଅନ୍ତଃପୁର ଉଦ୍ୟାନ ପାର୍ଶ୍ୱରେ ଦୁଇଟି ବୃକ୍ଷ ଅନ୍ତରାଳରେ ବିଲୀନ ହୋଇଗଲା । ତାହାର ଗତି ପଥ ମୁଁ ସ୍ତବ୍ଧ କରି ଦେଇପାରନ୍ତି । କାରଣ ଏଇ ତାରାହିଁ ଆମର ସମସ୍ତ ପରିମାପ କରୁଥିଲା ।

ମୋ ବକ୍ଷରେ ଦ୍ରୁତତାଳରେ ରକ୍ତଧାରା ବହିଚାଲିଛି । ମୋର ଅନେକ କଥା କହିବାର ଥିଲା । ମୁଁ ସ୍ୱର୍ଗର ଦ୍ୱାରରେ ବସି ରହିଛି । କିନ୍ତୁ ନନ୍ଦନକାନନର ଦ୍ୱାର ଶୃଙ୍ଖଳାବଦ୍ଧ, ମାତ୍ର ଗୋଟିଏ ପଦକ୍ଷେପ କରି ମୁଁ ସ୍ୱର୍ଗରେ ପ୍ରବେଶ କରି ପାରୁନାହିଁ ।

ଆମ୍ଭେ ପୁଣି ଆଲୋଚନା ଆରମ୍ଭ କଲୁ— ସମ୍ରାଟଙ୍କ କଥା, ଶାହାଜାଦା ଦାରାଙ୍କ କଥା । ସେଇ ନକ୍ଷତ୍ରଟି ଦୂରରେ ବିଟପୀ ଅନ୍ତରାଳରେ

ବିଲୀନ ହୋଇଗଲା । ମୁଁ ଉଠିପଡ଼ିଲି, କାରଣ ତାଙ୍କର ଭୋଜନର ସମୟ ହୋଇ ଆସୁଛି । ସମ୍ରାଟ ଆକ୍‌ବରଙ୍କ ନିୟମ ଅନୁକରଣରେ ତୃସ ମୋତେ ବିଦାୟ ସମ୍ଭାଷଣ ଜଣାଇଲେ । ଭୂମି ସ୍ପର୍ଶ କରି, ଆକ୍‌ବରଙ୍କ ଅନୁକରଣରେ, ସେ ମୋତେ ସିଜ୍‌ଦା (୧) କଲେ । ସେ ସମ୍ଭାଷଣ କି ସହଜ ସୁନ୍ଦର, କି ଅପରୂପ ଆଭିଜାତ୍ୟପୂର୍ଣ୍ଣ । ମନେହେଲା, ସେ ଯେପରି ଏହି ପ୍ରକାର ବିଦାୟ ସମ୍ଭାଷଣରେ ଅଭ୍ୟସ୍ତ । ତା'ପରେ ସେ ମସ୍ତକ ଉତ୍ତୋଳନ କରି ମୋ ସମ୍ମୁଖରେ ଦଣ୍ଡାୟମାନ ହେଲେ ।

ସେ ସମ୍ଭାଷଣ କଲେ, "ଶାହାଜାଦି !" ସେ ସ୍ୱର ଆଜି ବି ମୋ କର୍ଣ୍ଣରେ ଧ୍ୱନିତ ହେଉଛି । "ଶାହାଜାଦି" ଆପଣଙ୍କର କୌଣସି ସମ୍ବାଦ ନ ପାଇ ଭାବିଥିଲି, ଆପଣ ମୋତେ ବିସ୍ମୃତ ହୋଇଯାଇଛନ୍ତି । ସ୍ୱପ୍ନ ଦେଇ ଆପଣଙ୍କର ସେ ରୂପ କଳ୍ପନା କରିଥିଲି; ସେ ରୂପ ସ୍ମରଣ କରୁଥିଲି ।

"ଅବଶ୍ୟ ସେ ବାସ୍ତବ ମୂର୍ତ୍ତି କେବେ ଦେଖି ନ ଥିଲି । ତଥାପି ଅନ୍ତରରେ କଳ୍ପନାର ସେ ମୂର୍ତ୍ତିକୁ ଶ୍ରଦ୍ଧା କରୁଥିଲି । ଆଜି ଆପଣଙ୍କୁ ଦେଖୁଛି ।" ମୁହୂର୍ତ୍ତିକ ପାଇଁ ନୀରବ ହୋଇ ସେ କହିଲେ, "ଆପଣଙ୍କ କଥା ଶୁଣି ମନେ ହେଲା, ଅଦୃଷ୍ଟ ଭିନ୍ନ ଆଉ କେହି ଛତ୍ରଶାଳଙ୍କ ପ୍ରତିରୋଧ କରି ପାରେନା ।"

ସେ ତାଙ୍କର ବାହୁଦ୍ୱୟ ବକ୍ଷ ସଂଲଗ୍ନ କରି ଦ୍ରୁତ ପଦରେ ନିଷ୍କ୍ରାନ୍ତ ହୋଇଗଲେ । ମୁଁ ଗମ୍ଭୀର ତଳେ ସବୁଜ କୁଶାନ୍ ଅଭିମୁଖେ ଅଗ୍ରସର ହେଲି ।

ସେଠାରେ ଶୂନ୍ୟ ଆସନ ପାର୍ଶ୍ୱରେ ପ୍ରଦୀପଟି ଈଷତ୍ ବାୟୁସଞ୍ଚାଳିତ ହେଉଥିଲା । ପୁଷ୍ପାଧାରରୁ ମୁଁ କେତୋଟି ଚମ୍ପକ ତୋଳିନେଲି । ମୋ ଅବଗୁଣ୍ଠନର ରୂପେଲି ସୂତାରେ ମାଳା ଗୁନ୍ଥିଲି । ଦିଲ୍ଲୀ ପ୍ରାସାଦରେ, ଆଉ ଏକ ରଜନୀରେ, ଏପରି ମାଳା ଗୁନ୍ଥିଥିଲି; କିନ୍ତୁ ଆଜି ମନେ ହେଲା ଆକାଶ

(୧) ମୁସଲମାନଗଣ ଆଲ୍ଲାହଙ୍କ ବ୍ୟତୀତ ଆଉ କାହାରିକୁ ପ୍ରଣତି ଜଣାଉ ନଥିଲେ— କିନ୍ତୁ ଆକବର ବାଦ୍‌ଶାହ ସମ୍ରାଟଙ୍କୁ ଅଭିବାଦନ 'ସିଜଦା' କରିବାକୁ ଆଦେଶ ଦେଲେ । ପରିଶେଷରେ ସମ୍ରାଟଙ୍କ ପରିବାରର ଅନ୍ୟମାନେ ଏଇ ସିଜ୍‌ଦା ଦାବି କଲେ । ଛତ୍ରଶାଳ ଜାହାନାରାଙ୍କୁ ସିଜ୍‌ଦା କରିଛନ୍ତି ।

ଆହୁରି ଦୂରକୁ ଘୁଞ୍ଚିଯାଉଛି;--ଆକାଶରେ ନକ୍ଷତ୍ର ମଣ୍ଡଳୀର ସ୍ୱର୍ଣ୍ଣାଭ ଅସ୍ପଷ୍ଟ ନୀଳ ସମୁଦ୍ରରେ ମିଶିଯାଉଛି ।

କିନ୍ତୁ ମୋର ଗୋଲାପ କିଏ ହେବ ? ଏଇ ଗୋଲାପ ପାଇଁ ମୁଁ ଯେ ସମସ୍ତ କଣ୍ଟକଘାତ ସହ୍ୟ କରିଥିଲି ! ମୁଁ ଯେପରି ସ୍ୱପ୍ନ ମଧ୍ୟ ଦେଇ ଏକ ଅଭିନବ ଅଦ୍‌ଭୁତ ଜଗତରେ ପରିଭ୍ରମଣ କରୁଥିଲି । ସେଠାରେ ସକଳ ବସ୍ତୁ ପରିବର୍ତ୍ତିତ ହୋଇ ଆହୁରି ଗାଢ଼ତର ହୋଇ ଉଠୁଥିଲା । ସେଠାରେ ଆମର ସତ୍ତା ଯେପରି ଗଭୀର ହ୍ରଦ ପରି ଏକ ରହସ୍ୟମୟ ଛନ୍ଦରେ ଆସି ମିଶିଥିଲା ।

ଅବଗୁଣ୍ଠନ-ଅପସୃତ ବଧୂର ମୁଖମଣ୍ଡଳ ପରି, ଉଜ୍ଜ୍ୱଳ ଚନ୍ଦ୍ର, ଏ ପ୍ରାନ୍ତରର ଅପର ପାର୍ଶ୍ୱରେ କୁଜ୍‌ଝଟିକା ଭେଦ କରି ଗ୍ଲୁଳୁଛି । ରାତି ଦିବସ ପରି ଉଜ୍ଜ୍ୱଳ । ହ୍ରଦର ଅବଶିଷ୍ଟ ଅଂଶ ସ୍ୱର୍ଣ୍ଣାଭ ସେତୁ ପରି ପୁଣ୍ୟ ତୀର୍ଥ ଭୂମି ଅଭିମୁଖେ ବିସ୍ତୃତ ହୋଇଛି । ଅର୍ଦ୍ଧ ସମାପ୍ତ ମାଳିକା ହସ୍ତରେ ମୁଁ ପ୍ରାଚୀର ପାର୍ଶ୍ୱକୁ ଗଲି । କୁଜ୍‌ଝଟିକା ଯେପରି ସ୍ରୋତର ଆକାର ଧାରଣ କରି ଫତେପୁର ଅଭିମୁଖେ ଗ୍ଲୁଳୁଛି;—ତା'ପରେ ସେ କୁଜ୍‌ଝଟିକା ତୈମୁର ଯୁଗରେ ନହତ ରାଜପୁତ ବାହିନୀରେ ପରିଣତ ହେଲା । ସମ୍ରାଟ ଆକବର ଓ ଜାହାଙ୍ଗୀରଙ୍କ ସମୟରେ, ସେ ରାଜପୁତ ବାହିନୀ ଆସିଥିଲା ସମରଖନ୍ଦ୍‌ରୁ, ବଲ୍‌ଖ୍‌ରୁ, ଉଜ୍‌ବେକିସ୍ତାନରୁ । ସେମାନଙ୍କ ଦେହରେ ରକ୍ତର ଚିହ୍ନ ନାହିଁ । ସେମାନଙ୍କ ଦେହରେ ଦାରିଦ୍ର୍ୟର ପରିଚ୍ଛଦ ନାହିଁ; ସେମାନଙ୍କ ଶ୍ୱେତ ପରିଚ୍ଛଦ ସ୍ମରଣ କରାଇ ଦେଉଥିଲା, ଯେପରି ସେମାନେ କୌଣସି ଗୋପନ ବାର୍ତ୍ତା ବହନ କରି ଆସିଛନ୍ତି । ...ଆଜିର ରଜନୀରେ ଚନ୍ଦ୍ର ଯେପରି ସେମାନଙ୍କର ଆକାଶ ପ୍ରଦୀପ ହୋଇଛି !

ମୋ ଅଜ୍ଞାତରେ ମୁଁ ପୂର୍ବ ଦିଗ ପ୍ରତି ଦୃଷ୍ଟିପାତ କଲି । ମୋର ମୁକ୍ତ ଗବାକ୍ଷ ପଥରେ ଅଦୂରରେ ରାଣୀଙ୍କ କ୍ଷୁଦ୍ର ପ୍ରାସାଦର ଛାତ ଦେଖି ପାରିଲି । ନିମ୍ନ ପ୍ରାନ୍ତରେ ରାଣୀ ଠିଆ ହୋଇଥିଲେ । ମୁଁ ନତଜାନୁ ହୋଇ ପାଷାଣ ପ୍ରାଚୀର ପାର୍ଶ୍ୱରେ ଆତ୍ମଗୋପନ କଲି । ମୁଁ ନିଃଶ୍ୱାସ ନେବାକୁ ମଧ୍ୟ ସାହସ କରିପାରିଲି ନାହିଁ । ହୁଏତ ରାଣୀ ମୋ ଉପସ୍ଥିତି ଜାଣି

ପାରିବେ । ଅବଶ୍ୟ ମୋ ଦେହର ଅଣୁ ପରମାଣୁ ଏକ ଆକୁଳ ଆକାଂକ୍ଷାରେ ଉଚ୍ଛ୍ୱସିତ ହୋଇ ଉଠୁଥିଲା । ରାଓ ଯେପରି ମୋର ଆଡ଼କୁ ଦୃଷ୍ଟିକ୍ଷେପ କରନ୍ତୁ ।

କିନ୍ତୁ ସେ ନିଶ୍ଚଳ ଠିଆ ହୋଇଥିଲେ । ତାଙ୍କ ଦୃଷ୍ଟି ବହୁଦୂରରେ ଅସୀମରେ ଯେପରି କେଉଁ ବାର୍ତ୍ତାର ସନ୍ଧାନ କରି ଫେରୁଥିଲା । ମୁଁ ତାଙ୍କ ନୟନରେ ଦେଖିଲି ଏକ ପ୍ରଦୀପ୍ତ ଅଗ୍ନିଶିଖା । ସୈନ୍ୟ ତାଙ୍କର ଅଭିମୁଖେ ଆଗେଇ ଆସୁଥିଲେ । ଆସନ୍ନ ସଂଗ୍ରାମରେ ଏଇ ସୈନ୍ୟଦଳ ତାଙ୍କ ପାର୍ଶ୍ୱରେ ଠିଆ ହେବ, ସେମାନେ ଆମକୁ ସାହାଯ୍ୟ କରିବେ ।

ସେ ଅଦୃଶ୍ୟ ହୋଇଗଲେ । ବାୟୁର ଆବେଗରେ ଗୋଟିଏ ଦୀପ ଲିଭିଗଲା । ଦୁଃଖ ମୋତେ ପୁଣି ଅଭିଭୂତ କରିଦେଲା, ମୋ ଅଙ୍ଗ ପ୍ରତ୍ୟଙ୍ଗ କମ୍ପିତ ହେବାକୁ ଲାଗିଲା । ମୁଁ ଅକସ୍ମାତ୍ ସମସ୍ତଙ୍କୁ ଦେଖି ପାରିଲି । ଉଦ୍ଧତ ଅଧୈର୍ଯ୍ୟ ଦାରା, ବିଳାସୀ ଧୈର୍ଯ୍ୟହୀନ ଶୁଜା, କୂଟବୁଦ୍ଧି ଅଦମନୀୟ ଆଉରଙ୍ଗଜେବ, ବୀରବାହୁ ସ୍ଥୂଳବୁଦ୍ଧି ମୁରାଦ୍ ଏବଂ ମୋର ରୁଗ୍ଣ ପିତା । ସେଠାରେ ନାରୀ ମାତ୍ର ମୁଁ ଜଣେ ।

ମୁଁ ମୋ କକ୍ଷକୁ ପ୍ରତ୍ୟାବର୍ତ୍ତନ କଲି । କୋଏଲ୍ ମୋ କକ୍ଷ ସମ୍ମୁଖରେ ଦରଜା ପାର୍ଶ୍ୱରେ ଶୟନ କରିଥିଲା । ଅନ୍ୟ ଦରଜା ମଧ୍ୟ ଦେଇ ରାଓଙ୍କ କକ୍ଷକୁ ପ୍ରବେଶ ପଥ । ମୁଁ କ'ଣ ଜୀବନରେ ଆଉ ତାଙ୍କର ଦର୍ଶନ ପାଇବି ନାହିଁ ? ଯୁଦ୍ଧ ପୂର୍ବରୁ ପ୍ରତ୍ୟେକ ଯୋଦ୍ଧା ପ୍ରିୟଜନଙ୍କ ସଙ୍ଗେ ମିଳନର ସମୟ ନିର୍ବାଚନ କରିନିଏ । ମୋ ପାଇଁ ରାଓ କ'ଣ ଗୋଟିଏ ମୁହୂର୍ତ୍ତ ବ୍ୟୟ କରିବେ ନାହିଁ ? ଆମ ଭିତରେ କୌଣସି ଆଳାପ ହୋଇ ନାହିଁ । ନା, କୌଣସି ଆଳାପ ତ ହୋଇ ନାହିଁ ! ମୁଁ ଯାଇ ଦରଜା ପାର୍ଶ୍ୱରେ ଠିଆ ହେଲି । ଅତି ମୃଦୁ ସ୍ପର୍ଶରେ ଅର୍ଗଳ ଉପରେ ଅଙ୍ଗୁଳି ସଞ୍ଚାଳନ କରିବାକୁ ଲାଗିଲି । ମୁଁ ଜାଣେନା, ଆଜି ମଧ୍ୟ ଜାଣେନା, କିପରି ହଠାତ୍ କବାଟଟି ଖୋଲିଗଲା । ନିଦ୍ରା-ଭ୍ରମଣକାରୀ ପରି ମୁଁ ନିଜ ଅଜ୍ଞାତରେ କକ୍ଷ ଦ୍ୱାରଦେଶରେ ଉପସ୍ଥିତ ହୋଇଛି ।

ରାଓ ଦ୍ୱାର ପ୍ରାନ୍ତରେ ଏକ ବ୍ୟାଘ୍ରଚର୍ମ ଉପରେ ନିଦ୍ରିତ । ତାଙ୍କ ମସ୍ତକରେ ଉଷ୍ଣୀଷ ନାହିଁ—ତାଙ୍କ ମୁଖ ମଣ୍ଡଳ ଚନ୍ଦ୍ର କିରଣରେ

ଉଦ୍‌ଭାସିତ,—କେବେ ତାଙ୍କୁ ଏତେ ସୁନ୍ଦର ଦେଖି ନଥିଲି, ତାଙ୍କ ଆଖି କୋଣରେ ହାସ୍ୟର ଚଞ୍ଚଳତା ନ ଦେଖିଲେ ମୁଁ ମନେ କରିଥାନ୍ତି, ହୁଏତ ସେ ଅନନ୍ତ ନିଦ୍ରାରେ ଶାୟିତ । ମୋ ବାହୁ ବେଷ୍ଟିତ ମାଳାର ପୁଷ୍ପଗନ୍ଧରେ ଯେପରି ସମଗ୍ର କକ୍ଷଟି ଆମୋଦିତ ହୋଇ ଉଠୁଥିଲା··· ।

ଚନ୍ଦ୍ରାଲୋକରେ ପ୍ରକୃତି ଯେପରି ତାର ରୂପ ପରିବର୍ତ୍ତନ କରେ, ମୁଁ ସେପରି ମୋ ଦ୍ୱାର ପ୍ରାନ୍ତରୁ, ଦିବସର ଜାଗ୍ରତ ପୃଥିବୀରୁ, ରାତ୍ରିର ରହସ୍ୟମୟ ପୃଥିବୀର ପ୍ରକୋଷ୍ଠରେ ଅବତୀର୍ଣ୍ଣ ହେଲି । ଅବସନ୍ନ ଆବେଗରେ ଅତି ଧୀରେ ମୁଁ ତାଙ୍କ ପାର୍ଶ୍ୱରେ ବସି ପଡ଼ିଲି । ମୋର ସମଗ୍ର ଶରୀର ପାଷାଣ ଚଟାଣ ଉପରେ ଢଳିପଡ଼ିଲା । ମୋର ମସ୍ତକ ଗୁରୁଙ୍କ ବସନ ପ୍ରାନ୍ତରେ ଅବଶାୟିତ । ମନେହେଲା, ଯେପରି ମୁଁ ବୁଡ଼ି ଯାଉଛି, ବୁଡ଼ି ଯାଉଛି । ସେଦିନ ଚନ୍ଦ୍ରାଲୋକରେ ମୋର ଅବସ୍ଥା ଯାହା ହୋଇଥିଲା, ଆଜି କିନ୍ତୁ ଶାନ୍ତିର ସାଗରରେ ବୁଡ଼ିଗଲି । ଏକ ଅବ୍ୟକ୍ତ ଅପୂର୍ବ ତୃପ୍ତିରେ ମୁଁ ପରିପୂର୍ଣ୍ଣ ହେଲି । ମୋ ଜୀବନର ସେଇ ଏକମାତ୍ର ମୁହୂର୍ତ୍ତ ଯେପରି ସହସ୍ର ରଜନୀର ପରିପୂର୍ଣ୍ଣତାରେ ଭରିଗଲା । ମୁଁ ମୋ କକ୍ଷ ପ୍ରାଚୀର ପାର୍ଶ୍ୱରେ ଇତସ୍ତତଃ ପଦଧ୍ୱନି ଶୁଣିପାରିଲି, ମୁଁ ଉଠି ବସିଲି । ଗୁରୁ ତାଙ୍କର ମସ୍ତକ ସଞ୍ଚାଳନ କଲେ ଏବଂ ନିଦ୍ରା ମଧ୍ୟରେ ଗଭୀର ଦୀର୍ଘଶ୍ୱାସ ପକାଇଲେ ।

ଦ୍ରୁତ ଅଥଚ ଶାନ୍ତ ଭାବରେ ମୁଁ ଉଠିଲି । ପଦକ୍ଷେପରେ ମୁଁ କେତେ ଶୀଘ୍ର ସ୍ୱର୍ଗରୁ ବିତାଡ଼ିତ ହେଲି । କମ୍ପିତ କପୋଳ ଭୀତ ହୃଦୟରେ ମୁଁ ମୋ କକ୍ଷରୁ ଫେରି ଆସିଲି । କିନ୍ତୁ ଦେଖିଲି, ମୋ ଅର୍ଦ୍ଧ ସମାପ୍ତ ସେ ମାଳାଟି ପଛରେ ଛୁଡ଼ିଆସିଛି ।

ମୋ କକ୍ଷର ପ୍ରାଚୀର ଅତିକ୍ରମ କରି କେଉଁ ଏକ ନିଶାଚର ପକ୍ଷୀ ଉଡ଼ିଗଲା । ଏ କାହାର ପଦଧ୍ୱନି ? ···ମୋର ସମସ୍ତ ଶକ୍ତି ଲୁପ୍ତ ହୋଇଗଲା । ଆନନ୍ଦ, ଦୁଃଖ, ଭୟ—କିଛି ଯେପରି ସହ୍ୟ କରିବାର ଶକ୍ତି ମୋର ନାହିଁ । ମୁଁ ସତରଞ୍ଜି ଉପରେ କୁଶାସନରେ ମଥା ଦେଇ ଶୋଇପଡ଼ିଲି—ଗଭୀର ନିଦ୍ରା ମୋତେ କୋଳକୁ ଟେକିନେଲା ।

ପ୍ରଭାତର ଆକାଶ ଭେଦୀ ଏକ ତୀବ୍ର ଚିତ୍କାରରେ ମୋ ନିଦ୍ରାଭଙ୍ଗ ହୋଇଗଲା । କୋଷେଲ୍ ସମ୍ବାଦ ଦେଲା ଯେ, ରାତ୍ରିର ପ୍ରହରୀଗଣ ଜଣେ

ନିରପରାଧ ବ୍ୟକ୍ତିକୁ ପ୍ରାସାଦରେ ପ୍ରବେଶ କରିବାର ଚେଷ୍ଟା ଅଭିଯୋଗରେ ହତ୍ୟା କରିଛନ୍ତି ।

ମୁଁ କିନ୍ତୁ ଶୁଣି ପାରିଲି ନାହିଁ । ମୋର ଆଦୌ ଦୁଃଖ ହେଲା ନାହିଁ, ଏତିକି ମନେ ହେଲା ଯେ ଗତ ରାତିରେ ଏହି ବ୍ୟକ୍ତିର ଚିତ୍କାରରେ ମୋର ଚିତ୍ତ ସଞ୍ଚାର ହୋଇଥିଲା । ତାହାର ମୃତ୍ୟୁଯନ୍ତ୍ରଣାର ତୀବ୍ର ଚିତ୍କାର ତଥାପି ମୋ କର୍ଣ୍ଣରେ ଧକ୍କା ଦେଉଥିଲା । ମୁଁ ପଚାରିଲି, "ରାଓ କେଉଁଠି ?"

ପ୍ରତ୍ୟୁଷରୁ ସେ ସସୈନ୍ୟ ପ୍ରାସାଦ ଛାଡ଼ି ଯାଇଛନ୍ତି । ମୁଁ ମୋ ଶୟନ କକ୍ଷକୁ ଯିବାର ପୂର୍ବ କକ୍ଷକୁ ଯାଇ ଦେଖିଲି ଯେ, ମାଳାଟି ସେଠାରେ ନାହିଁ । ଏହି ମାଳାଟି ଆମ ଦୁହିଁଙ୍କ ମଧ୍ୟରେ ନୂତନ ଯୋଗସୂତ୍ର ସୃଷ୍ଟି କରିବ ? ମୁଁ ଏହାପରେ କିପରି ତାଙ୍କୁ ସାକ୍ଷାତ୍ କରିବି ?

ଆମେ ନହବତ୍ ଖାନା ଅତିକ୍ରମ କରି ଆସୁଛୁ, ପଥରେ ଦେଖିଲୁ ଏକ ଶବଯାତ୍ରା । ମୋର ମନେ ହେଲା, ଜଣେ ଦରିଦ୍ର ହିନ୍ଦୁର ମୃତଦେହ ନଦୀଘାଟକୁ ଦାହ କରିବା ପାଇଁ ନିଆ ଯାଉଛି । ମୁଁ ହାଜୀରକୁ ପ୍ରଶ୍ନ କଲି, ମୃତ ଲୋକଟି କିଏ ? ସେ ଉତ୍ତର ଦେଲା, "ଗତ ରାତିର ନିହତ ବ୍ୟକ୍ତି ।" ଏ ଲୋକଟି ଥିଲା ଜଡ଼ବୁଦ୍ଧି କିନ୍ତୁ ସ୍ୱର ଥିଲା ସୁମିଷ୍ଟ । ବେଗମ୍ ସାହେବଙ୍କୁ ରାତି ପ୍ରହରରେ ସଙ୍ଗୀତ ଶୁଣାଇବାକୁ ଚାହିଁଥିଲା, ଏହାହିଁ ତାର ଅପରାଧ । ତାହାର ବୁକୁ ମଧ୍ୟରେ ଗୋଟିଏ ମୂଲ୍ୟବାନ୍ କଙ୍କଣ ଲୁକ୍କାୟିତ ଥିଲା । ପ୍ରହରୀର ଧାରଣା ହେଲା, ସେ ନିଶ୍ଚୟ ଚୋରି କରିଛି । କିନ୍ତୁ ତାର ମାଆ କହିଲା, "ମୋ ପୁଅ ଜୀବନରେ କେବେ ଚୋରି କରିନି । ସେ କେବଳ ଦାନ କରିଛି ।" ମୁଁ ମୋ ହାଜୀରକୁ ଫର୍ମାନ ଲେଖିବାକୁ କହିଲି— "ମୁଁ ମୃତବ୍ୟକ୍ତିକୁ ଏ କଙ୍କଣ ଦେଇଥିଲି ତା ସଙ୍ଗୀତରେ ମୁଗ୍ଧ ହୋଇ, ତାର ମାତା ହିଁ ସେ କଙ୍କଣର ଅଧିକାରିଣୀ ।" ତାହାପରେ ଆଉ ଗୋଟିଏ କଙ୍କଣ ତାହାକୁ ଉପହାର ଦେଲି । ଏଇ ଗୁଣୀ ବ୍ୟକ୍ତିର ମୃତ୍ୟୁ ମୋ ମନ ଉପରେ ଭୀଷଣ ଅମଙ୍ଗଳର ଗଭୀର ଛାୟାପାତ କଲା ।

ଗ୍ରୀଷ୍ମତାପ-ଦଗ୍ଧ ଦିନରେ ସମଗ୍ର ପୃଥିବୀ ଯେପରି ନିଃଶ୍ୱାସ ନେବା ପାଇଁ କାତର ହୋଇଉଠେ । ମୁଁ ଦେଖିଲି ସକଳ ଆଗ୍ରାନଗରୀ

ଉତ୍ତେଜନାରେ ସେହିପରି ଚଞ୍ଚଳ ହୋଇ ଉଠିଛି । କେହି ଆନନ୍ଦରେ ଭବିଷ୍ୟତର ଆକାଶକୁସୁମ ରଚନା କରିଚାଲିଛି, କେହି ବା ଧାରଣା କରୁଛି, ବିପ୍ଳବ୍ ଅବଶ୍ୟମ୍ଭାବୀ…… ।

ପଙ୍ଗପାଳ ପରି ସତ୍ୟ, ମିଥ୍ୟା ବହୁ ଜନଶ୍ରୁତି ଆଗ୍ରା ସହରକୁ ବିଭ୍ରାନ୍ତ କରିଥିଲା । ମୁଁ ଶୁଣିଲି, ଆଉରଙ୍ଗଜେବ ଓ ମୁରାଦ୍ ନିଜକୁ ଅପରାଜେୟ ମନେ କରୁଛନ୍ତି । ସେମାନଙ୍କ ସୈନ୍ୟଗଣ ଉଜ୍ଜୟିନୀର ଯୁଦ୍ଧ ଜୟର ଗର୍ବରେ ଉଲ୍ଲସିତ । ସେମାନେ ଘୋଷଣା କରିଛନ୍ତି, ସାମ୍ରାଜ୍ୟ ଜୟ କରି ସେମାନେ ପାରସ୍ୟ ଓ ତୁରସ୍କ ବିରୁଦ୍ଧରେ ଅଭିଯାନ କରିବେ । ବିଶ୍ୱାସଘାତକଙ୍କ ଦଳ ବ୍ୟସ୍ତ । ଆଜି କାହାରି ମସ୍ତିଷ୍କ ସ୍ଥିର ନାହିଁ । ଆଉରଙ୍ଗଜେବ କହିଛନ୍ତି ଯେ, ମୋର ପିତାଙ୍କ ସୈନ୍ୟ ଦଳରେ ସହସ୍ର ସହସ୍ର ବିଶ୍ୱାସଘାତକ ଅଛନ୍ତି ।

ମୁଁ ମୋ ଭାଇ ଦାରାଙ୍କ ସଙ୍ଗେ ଦେଖା କରିବା ପାଇଁ ପ୍ରସ୍ତୁତ ହେଉଛି, ଏପରି ସମୟରେ ଗୋଟିଏ ପତ୍ର ପାଇଲି—ରାଣୀ ଛତ୍ରଶାଳଙ୍କ ପତ୍ର । କେତୋଟି ମାତ୍ର ବାକ୍ୟରେ ଦ୍ରୁତ ଲିଖିତ ପତ୍ରରେ ସେ ଲେଖିଛନ୍ତି ଯେ, ଯଦି ଶାହାଜାଦା ଦାରାଙ୍କୁ ସୈନ୍ୟ ଦଳର ଏକଚ୍ଛତ୍ର ଅଧ୍ୟକ୍ଷ ନିଯୁକ୍ତ ନ କରାଯାଏ, ତେବେ ଶାହାଜାଦା ସମ୍ରାଟଙ୍କ ସମ୍ମୁଖରେ ଆତ୍ମହତ୍ୟା କରିବେ । ମୋର ମନେହୁଏ, ସମ୍ରାଟଙ୍କ ସିଦ୍ଧାନ୍ତ ପରିବର୍ତ୍ତନର ଆଶା ନାହିଁ ଏବଂ ଦାରାଙ୍କ ସଙ୍କଳ୍ପ ସେ ସମର୍ଥନ କରିବେ ନାହିଁ । ପତ୍ର ଶେଷରେ ରାଣୀ ଏକ ଅନୁରୋଧ କରିଛନ୍ତି—ମୁଁ ଯେପରି ମୋ ହସ୍ତାକ୍ଷର ସଂଯୁକ୍ତ ଏକ ସ୍ମୃତି ଚିହ୍ନ ତାଙ୍କୁ ଉପହାର ଦିଏ । ସେ ସେହି ସ୍ମୃତି ଚିହ୍ନ ଆମରଣ ନିଜ ପାଖରେ ରଖିବେ । ସମୁଦ୍ରରେ ଆନ୍ଦୋଳିତ ଜଳତରଙ୍ଗ ଭୂଭାଗ ଦର୍ଶନରେ ଯେପରି ଉଲ୍ଲସିତ ହୋଇଉଠେ, ମୁଁ ସେହିପରି ତାଙ୍କ ଶେଷ କଥାରେ ଅପୂର୍ବ ଆନନ୍ଦର ଆଭାସ ପାଇଲି ; କିନ୍ତୁ ତାହାପରେ ?

ମୁଁ ମୋ ପ୍ରାସାଦ ଶିଖରରେ ଏକ କକ୍ଷରେ ବସିଥିଲି । ସମ୍ରାଟ ଆକ୍‌ବର ଓ ଜାହାଙ୍ଗୀରଙ୍କ ଲୀଳକଳା ଅତିକ୍ରମ କରି, ମୋର ଗୌର ବର୍ଣ୍ଣିମାର ଅନ୍ତଃପୁରିକା—ତୋରଣ (୧) । ତାର ନିହାଳ ମୁଁ ମୋ ପିତାଙ୍କ

(୧) ମୋଗଲମାନଙ୍କ ମଧ୍ୟରେ ୟୁରୋପୀୟ ନାରୀ ଅନ୍ତଃପୁରରେ ରଖିବାର ବ୍ୟବସ୍ଥା ଥିଲା । ସେହି ଶ୍ୱେତାଙ୍ଗିନୀ ମହଲର ନାମ ଥିଲା ଫିରଙ୍ଗୀ ମହଲ ।

ସମୀପରେ ଉପସ୍ଥିତ ହେଲୁ । ଏହି ଅନ୍ତଃପୁର ତୋରଣ ଭାରତୀୟ ସ୍ଥାପକ ଶିଳ୍ପୀମାନଙ୍କ ଦ୍ଵାରା ନିର୍ମିତ । ଏଠାରେ ପ୍ରତ୍ୟେକଟି ବସ୍ତୁ ଅତି ସୁନ୍ଦର, ଅତି ଉଜ୍ଜ୍ୱଳ ଓ ଅତି ସହଜ । ମୁଁ ଫତେପୁର୍ ସିକ୍ରୀର ସ୍ୱପ୍ନପୁରୀ ସ୍ମରଣ କରି ଦୀର୍ଘ ନିଃଶ୍ୱାସ ପକାଇଲି ।

ଯମୁନାର ଉପରିଭାଗରେ ଏକ କ୍ଷୁଦ୍ର କକ୍ଷରେ, କୁଶାନରେ ଦେହ ବିନ୍ୟସ୍ତ କରି ମୋ ପିତା ବିଶ୍ରାମ କରୁଥିଲେ । ସମ୍ରାଟଙ୍କ ମୁଖମଣ୍ଡଳରେ ଯେପରି ଏକ ନିଃସଙ୍ଗ ଭାବ । ସାଧାରଣ ମଣିଷ ତାହା ସ୍ପର୍ଶ କରି ପାରିବ ନାହିଁ । ଏ ଭାବ ମୁଁ ତାଙ୍କ ଯୌବନରୁ ହିଁ ଲକ୍ଷ୍ୟ କରିଥିଲି । ମୋ ସଙ୍ଗେ ସାକ୍ଷାତ୍ ହେବା ମାତ୍ରେ ଫତେପୁର ସିକ୍ରୀର ଗୋଟିଏ ଫୁଲ ମୁଁ ତାଙ୍କୁ ଉପହାର ଦେଲି । କୃତଜ୍ଞତାରେ ତାଙ୍କର ମୁଖମଣ୍ଡଳ ଉଲ୍ଲସିତ ହୋଇ ଉଠିଲା । ଅତି ସାମାନ୍ୟ ଉପହାରରେ ମଧ୍ୟ ସେ ଉଲ୍ଲାସ ଅନୁଭବ କରୁଥିଲେ । ମୁଁ ଭାବିଲି, ଏ କ'ଣ ସେଇ ସମ୍ରାଟ ଶାହାଜାହାନ ! ପ୍ରଜାଗଣ ତାଙ୍କୁ କଣ ମଣିଷ ପରି ଭଲ ପାଉଥିଲେ !

ସେ ମୋତେ କହିଲେ, ମୁଁ ଶାହାଜାଦା ଦାରାଙ୍କ ହସ୍ତରେ ସମ୍ପୂର୍ଣ୍ଣ ଶାସନଭାର ଅର୍ପଣ କରିଛି । କାରଣ, ସେ ପରିପୂର୍ଣ୍ଣ କ୍ଷମତାର ଅଧିକାରୀ ହୋଇ ଦାରା ତାଙ୍କ ପିତାଙ୍କ ରାଜ୍ୟରକ୍ଷା କରିପାରିବେ ଏବଂ ତାଙ୍କ ପିତାଙ୍କୁ ଆଉରଙ୍ଗଜେବଙ୍କ କାରାଗାରରୁ ଉଦ୍ଧାର କରିପାରିବେ । ଏହି ଆଲୋଚନା ପ୍ରସଙ୍ଗରେ ତାଙ୍କ ଶୀର୍ଣ୍ଣ ମୁଖରେ ଉଚ୍ଛ୍ୱାସ ଫୁଟି ଉଠିଲା । ସୁଶିକ୍ଷିତ ସୈନ୍ୟ ଦଳସହ ସୁଲେମାନ ଶୁକୋଙ୍କ ଅନୁପସ୍ଥିତି ସମ୍ରାଟଙ୍କୁ ଆତଙ୍କିତ କରି ରଖିଥିଲା ।

ରାଜା ଜୟସିଂହଙ୍କ ଉପଦେଶ ଅନୁସାରେ ସୈନ୍ୟ ଦଳ ସହ ଆଗ୍ରାରେ ଉପସ୍ଥିତ ନ ହୋଇ ସୁଲେମାନ କାହିଁକି ଶାହସୁଜାଙ୍କ ପଶ୍ଚାତ୍-ଧାବନ କରୁଥିଲେ !

ମୁଁ ଉତ୍ତର ଦେଲି ନାହିଁ, କେବଳ ଚିନ୍ତା କଲି । ଅମ୍ବର-ଅଧିପତି ରାଜା ଜୟସିଂହ ଜଣେ ବିଶ୍ୱାସୀ ସାମନ୍ତ ; କିନ୍ତୁ ଦିନେ ଦାରା ତାଙ୍କୁ ଗାୟକ ବୋଲି ଉପହାସ କରିଥିଲେ । ଜୟସିଂହ ଶାହସୁଜାଙ୍କୁ ପଳାୟନର ସୁଯୋଗ ଦେଇ ଏହି ଅପମାନର ପ୍ରତିଶୋଧ ନେବେ ନାହିଁ କି ? ପିତାଙ୍କ

କରପୃଷ୍ଠରେ ମୋର ଲଲାଟ ସ୍ଥାପନ କଲି; କିନ୍ତୁ ମୋର ମନେ ହେଲା, ଯେପରି ତାଙ୍କ ହସ୍ତରେ ଆଉ ଫଳର ଆଶ୍ଚର୍ଯ୍ୟ ଗନ୍ଧ ନାହିଁ ! ଦୁଃଖ ଭାରାକ୍ରାନ୍ତ ହୋଇ ସେ ସ୍ଥାନ ତ୍ୟାଗ କଲି ।

ପ୍ରାସାଦର ଉଚ୍ଚ ଶୃଙ୍ଗରୁ ବିଶାଳ ସୈନ୍ୟ ବାହିନୀର ଏକାଂଶ ଦେଖି ପାରିଲି । ଏ ସୈନ୍ୟବାହିନୀ ଅତି ଦ୍ରୁତ ସମବେତ ହୋଇଛନ୍ତି । ଅଶ୍ୱାରୋହୀଗଣ ଅସ୍ତ୍ର ଏବଂ ପରିଚ୍ଛଦରେ ସୁସଜ୍ଜିତ ।

ଦଳ ପରେ ଦଳ ସୈନ୍ୟ ଚାଲିଛନ୍ତି । ସେ ମୁହୂର୍ତ୍ତରେ ମୁଁ କଳ୍ପନା କଲି, ଆମର ଜୟ ସୁନିଶ୍ଚିତ । ପରଦିନ ସନ୍ଧ୍ୟାର ପ୍ରାକ୍-କାଳରେ ଚନ୍ଦ୍ର ଉଦୟ ହେଲେ, ମୁଁ ମୋର ରାକ୍ଷୀବନ୍ଧ ଭାଇଙ୍କ ସଙ୍ଗେ ତାଜମହଲ ପାର୍ଶ୍ୱରେ ସାକ୍ଷାତ୍ କରିବାକୁ ଯିବି, କିନ୍ତୁ ସମ୍ବାଦ ପାଇଲି ଯେ, ଆଉରଙ୍ଗଜେବ ଓ ମୁରାଦଙ୍କ ସମ୍ମିଳିତ ସୈନ୍ୟ ଅଗ୍ରସର ହେଉଛନ୍ତି । ସମ୍ରାଟଙ୍କ ନିଷେଧ ସତ୍ତ୍ୱେ ଶାହାଜାଦା ଦାରା, ତାଙ୍କ ପୁତ୍ର ସୁଲେମାନଙ୍କ ଆଗମନ ପାଇଁ ଅପେକ୍ଷା କରି ନାହାନ୍ତି । ସର୍ବନ ଯୁଦ୍ଧପାଇଁ ପ୍ରସ୍ତୁତ ।

ଆମର ସାକ୍ଷାତ୍ ସମୟ ଆଗତ ପ୍ରାୟ । ମୁଁ ଆଦେଶ ଦେଲି, ଯେପରି କେତେ ଜଣ ସଶସ୍ତ୍ର ପ୍ରହରୀ ଉଦ୍ୟାନର ପ୍ରବେଶ ପଥ ରକ୍ଷା କରନ୍ତୁ । ହାଜାରି ଓ କୋଯୂଲ ପ୍ରାସାଦ ସମୀପରେ ପ୍ରହରୀ କାର୍ଯ୍ୟ କରିବେ ।

ତାହାପରେ ମୁଁ ଧୀର ପଦରେ, ସାଇପ୍ରାସ ବୀଥି ମଧ୍ୟଦେଇ ସ୍ୱଳ୍ପ ପରିସର ପରିଖା ପାର୍ଶ୍ୱ ଅତିକ୍ରମ କରି, ସମାଧି ଅଭିମୁଖେ ଅଗ୍ରସର ହେଲି । ଗଳିତ ତାମ୍ରସାରପୂର୍ଣ୍ଣ ଗଭୀରକୂପ ଅଭ୍ୟନ୍ତରରେ ଅସ୍ତାୟମାନ ସୂର୍ଯ୍ୟର ଶେଷ ରଶ୍ମି ଆଗ୍ରାର ଉତ୍ତପ୍ତ ପବନ ମଧ୍ୟ-ଦେଇ, ତାର ଶେଷ ନିଃଶ୍ୱାସ ଗ୍ରହଣ କରୁଥିଲା । ଏଇ ରକ୍ତ ଆଲୋକ କ'ଣ କେଉଁ ଆସନ୍ନ ଖାଣ୍ଡବଦାହର ସୂଚନା ଦେଉଛି ? ସନ୍ଧ୍ୟାର ଆକାଶ ଏକ ନିର୍ବବାୟୁ ପ୍ରବାହରେ ଚଞ୍ଚଳ ହୋଇଉଠୁଛି । ପୃଥିବୀର ଅପର ତୀରରେ ସବୁଜାଭ ଗୋଲାର୍ଦ୍ଧରେ ଚନ୍ଦ୍ର ଉଦିତ ହେଉଛି । ପୂର୍ବରୁ, ସାଇପ୍ରାସ-ବୀଥି ଆଉ କେବେ ଏପରି ଗମ୍ଭୀର ଶ୍ରେଣୀବଦ୍ଧ-

ଭାବ ପ୍ରକାଶ କରିନାହିଁ । ଏହା ପୂର୍ବରୁ କେବେ ଉଜ୍‌ମହଲ, ସାଇପ୍ରାସ-ବୀଥି ଅନ୍ତରାଳରେ ଏପରି ଗମ୍ଭୀର ଶାନ୍ତ ଶୁଭ୍ର ରୂପ ପରିଗ୍ରହ କରିନାହିଁ । ଏ ଯେପରି ସ୍ୱପ୍ନପୁରୀର ପ୍ରାସାଦ ! ପୃଥିବୀର କେଉଁଠି ଏପରି ପବନ ଗୋଲାପ ଓ ଯୂଥିଗନ୍ଧରେ ଭାରାକ୍ରାନ୍ତ ହୋଇ ଉଠିନାହିଁ; କେଉଁଠି ବିହଙ୍ଗମ ଏପରି ସୁମିଷ୍ଟ ସ୍ୱରରେ ସଙ୍ଗୀତ ରଚନା କରିନାହିଁ । ବିହଙ୍ଗକୁଳ ସେମାନଙ୍କ ଜୀବନ-ସଙ୍ଗୀତ ବିଭିନ୍ନ ବୃକ୍ଷ ପତ୍ରରେ ଇତସ୍ତତଃ ବିକ୍ଷୁରିତ କରୁଛନ୍ତି ।

ମୁଁ ନିଶ୍ଚଳ, ନିଷ୍ପଳ ମନେହେଲା, ମୋର ମାଆ ତାଙ୍କର ସକଳ ସୌନ୍ଦର୍ଯ୍ୟ ନେଇ ଅଜ୍ଞାତ ଦିନଠାରୁ ମୋର ଆତ୍ମାର ସନ୍ନିକଟରେ ଉପସ୍ଥିତ । ସବୁଜ ପତ୍ରପଲ୍ଲବରେ ମର୍ମରିତ ହେଲା— ସ୍ରୋତ-ସ୍ୱିନୀରେ ଜଳଗୁଳ୍ମ ଅନ୍ତରାଳରେ କଳନାଦରେ ଧ୍ୱନିତ ହେଲା, "ତୁମେ ସମସ୍ତେ ହିଁ ମୋର ସନ୍ତାନ । ଏ ବିବାଦ କେଉଁଥିପାଇଁ ?"

ଆଗ୍ରା ପ୍ରାସାଦର ପଶ୍ଚାତ୍‌ରେ ଅତି କ୍ଷୀଣ ଜ୍ୟୋତି ବିକୀରଣ କରି ଚନ୍ଦ୍ର ଢୁଳେଇ ପଡ଼ୁଛି । ଜନନୀ ବିଧାତା କ'ଣ ତୁମମାନଙ୍କୁ ଗୃହତାଇ ବଂଶର ରାଜମୁକୁଟ ଗୃହ ପାର୍ଶ୍ୱରେ ତେଜୋସ୍ନାନ ଜ୍ୟୋତିଷ୍କ ରୂପେ ସୃଷ୍ଟି କରିଥିଲେ, ଭାରତବର୍ଷକୁ ଆସି ନିଷ୍ପ୍ରଭ ହୋଇଯିବା ପାଇଁ ? ତୁମେ ଯେଉଁ ଦିନ ଅନ୍ତର୍ହିତ ହୋଇଥିଲ, ତୁମ ପଶ୍ଚାତରେ ଆସିଥିଲା ଶୁଭ୍ର ପାଷାଣ ପରେ ପାଷାଣ, ସ୍ୱର୍ଣ୍ଣଖଣ୍ଡ ମଣିମୁକ୍ତା ଅପୂନଖଣ୍ଡ—ସେ ସବୁ ସଂଯୁକ୍ତ କରି, ଗ୍ରନ୍ଥିବଦ୍ଧ କରି ରଚିତ ହେଲା ତାଜମହଲ । ପୁଣି ସମ୍ରାଟ ତାକୁ ସଂଯୁକ୍ତ କରି ରଚନା କଲେ ନିଜ ସମାଧି । (୧) ତୁମେ ହିଁ କେବଳ ତାଙ୍କ ଶକ୍ତିର ସନ୍ଧାନ ଦେଇଥିଲ ।

(୧) ତାଜମହଲର ବିପରୀତ ଦିଗରେ, ଯମୁନାର ଅପର ତଟରେ, ଶାହଜାହାନ ରକ୍ତପ୍ରସ୍ତରରେ ନିଜର ସମାଧି ନିର୍ମାଣ ଆରମ୍ଭ କରିଥିଲେ । ସେଇ ରକ୍ତବର୍ଣ୍ଣ ସମାଧି ହୋଇଥାନ୍ତା ଶାହଜାହାନଙ୍କ ଶୌର୍ଯ୍ୟ, ବୀର୍ଯ୍ୟ ଓ ଐଶ୍ୱର୍ଯ୍ୟର ପ୍ରତୀକ । ତାଜବିବିଙ୍କ ସମାଧି ଶ୍ୱେତ ଶୁଭ୍ର ମର୍ମରରେ ନିର୍ମିତ— ଶୁଚି ଓ ସୌନ୍ଦର୍ଯ୍ୟର ପ୍ରତୀକ । ଦୁଇଟି ସମାଧିକୁ ସଂଯୁକ୍ତ କରିଥାନ୍ତା ଏକ ଘନକୃଷ୍ଣ ମର୍ମରର ସେତୁ । କୃଷ୍ଣବର୍ଣ୍ଣର ପ୍ରସ୍ତର ମୃତ୍ୟୁର ପ୍ରତୀକ । ଶାହଜାହାନଙ୍କ ସମାଧି ସମ୍ପୂର୍ଣ୍ଣ ହୋଇପାରିଲା ନାହିଁ । କାରଣ, ତାହା ପୂର୍ବରୁ ସେ ହେଲେ ବନ୍ଦୀ । ତେବେ, ମୃତ୍ୟୁ ପରେ ଔରଙ୍ଗଜେବ କୃପା କରି ଶାହଜାହାନଙ୍କ ମୃତଦେହକୁ ତାଜବିବିଙ୍କ ପାର୍ଶ୍ୱରେ ସମାଧିସ୍ଥ କରିବାପାଇଁ ଅନୁମତି ଦେଇଥିଲେ ।

ତାହାପରେ ବହୁନାରୀ ଆସିଥିଲେ, ସେମାନେ କନ୍ତୁ ସମ୍ରାଟଙ୍କ ଅପରିଚିତ କଲେ । (୧) ମୁଁ ଶୁଣି ପାରିଲି, ବିଶିଷ୍ଟ ଅଙ୍ଗନର ଦ୍ୱାର କେବେ ମୁକ୍ତ, କେବେ ଅର୍ଗଳବଦ୍ଧ । ଶୁଣି ପାରିଲି ମୋର ପଶ୍ଚାତରେ ମର୍ମର ପଥ ଉପରେ ମନୁଷ୍ୟର ପଦଧ୍ୱନି । ସେହି ଚଞ୍ଚଳ ପଦକ୍ଷେପର ଭାଷା ମୋର ପରିଚିତ । ମୁଁ ବାସ୍ତବତାର ସମ୍ମୁଖୀନ ହେଲି । ଯେପରି ଏକ ସଙ୍ଗୀତ ମୋତେ ବର୍ତ୍ତମାନକୁ ଟାଣି ଆଣୁଛି । ଆଜିର ସନ୍ଧ୍ୟାରେ ଛନ୍ଦଶାଳ ସଂପୂର୍ଣ୍ଣ ଶ୍ୱେତବସନ ପରିହିତ । ତାଙ୍କ ବାହୁରେ ହୀରକ୍ରାଭ ବାଜୁବନ୍ଧ । ମୋତେ ଅଭିବାଦନ କରିବା ସମୟରେ ଦେଖିପାରିଲି, ତାଙ୍କ ଉଷ୍ଣୀଷରେ ନିବଦ୍ଧ ରହିଛି ଏକ ସଂପୂର୍ଣ୍ଣ ମୁକ୍ତାହାର । ଯେପରି ମେ ତେ ସାକ୍ଷାତ୍ କରିବା ପାଇଁ ଏ ଆୟୋଜନ ।

ଆମେ ଚମ୍ପାଶାଖା ପାର୍ଶ୍ୱରେ କ୍ଷୁଦ୍ର ସରୋବର ନିକଟରେ ଉଚ୍ଚ ଆସନରେ ଉପବେଶନ କଲୁ । ଆସନ୍ନ ଯୁଦ୍ଧ ବ୍ୟାପାରରେ ମନ ଦେବା ମୋ ପକ୍ଷେ ଅତ୍ୟନ୍ତ କଠିନ ଥିଲା । ସେ କେବେ କେଉଁ ହିନ୍ଦୁ ସେନାଧକ୍ଷଙ୍କ ଆଦେଶ ପାଳନ କରି ନାହାନ୍ତି । ସାମ୍ରାଜ୍ୟରେ ସେନାପତି ରୂପେ ସାହାଜାଦା ଦାରାଙ୍କ କ୍ଷମତା ବିଷୟରେ ତାଙ୍କର ଧାରଣା ଅତ୍ୟନ୍ତ ସ୍ପଷ୍ଟ ଥିଲା । ସେ ଜାଣିଥିଲେ, ତିରିଶ ସହସ୍ର ଅଶ୍ୱାରୋହୀ ସୈନ୍ୟ ଶତ୍ରୁ ପ୍ରତି ପ୍ରସନ୍ନ । ଅଥଚ ସୈନ୍ୟ ଦଳରେ ଥିଲେ ପାଚକ,ଭୃତ୍ୟ, ଚଣ୍ଡାଳ ନରସୁନ୍ଦର । (୨) ସେମାନେ କେବେ ଯୁଦ୍ଧାସ୍ତ୍ର ସ୍ପର୍ଶ କରି ନାହାନ୍ତି । ସେମାନେ ମୃତ୍ୟୁବରଣରେ ଅନଭ୍ୟସ୍ତ ; କନ୍ତୁ ଆସନ୍ନାକାଳ ପ୍ରଭାତରେ ଯୁଦ୍ଧଯାତ୍ରା ଅବଧାରିତ । ଏ ସିଦ୍ଧାନ୍ତର ଅଗ୍ରପଶ୍ଚାତ୍ ନାହିଁ ।

---

(୧) ଅନେକଙ୍କ ଧାରଣା, ଶାହଜାହାନଙ୍କ ପତ୍ନୀ ଏକମାତ୍ର ତାଜବିବି । ଏହା ଠିକ୍ ନୁହେଁ। ଅନ୍ୟାନ୍ୟ ମୋଗଲ ସମ୍ରାଟଙ୍କ ପରି ଶାହଜାହାନଙ୍କର ମଧ୍ୟ ବହୁ ପତ୍ନୀ ଥିଲେ ।

(୨) ମୋଗଲ ଯୁଗରେ ସ୍ଥାୟୀ ସୈନ୍ୟ ବ୍ୟବସ୍ଥା ଥିଲେ ସୁଦ୍ଧା ଅଧିକାଂଶ ସୈନ୍ୟ ଯୁଦ୍ଧର ଅବ୍ୟବହିତ ପୂର୍ବରୁ ହିଁ ସଂଗ୍ରହ କରାଯାଉଥିଲା । ମନ୍ସବ୍‌ଦାରଗଣ ଯେ କୌଣସି ଲୋକକୁ ଯୁଦ୍ଧ ଆରମ୍ଭରେ ସୈନ୍ୟ ଦଳରେ ଭର୍ତ୍ତି କରି ଯୁଦ୍ଧ କ୍ଷେତ୍ରକୁ ପଠାଇ ଦେଉଥିଲେ । ଫଳରେ ଯୁଦ୍ଧରେ ଜୟ କରିବା ଅପେକ୍ଷା ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିବାରେ ସେମାନଙ୍କ ଦକ୍ଷତା ପ୍ରଦର୍ଶିତ ହେଉଥିଲା ।

ଚମ୍ବଲ ନଦୀ ଥିଲା ଆମର ଗନ୍ତବ୍ୟ ସ୍ଥଳ । ଏଇଠାରେ ହିଁ ବିରୋଧୀ ସୈନ୍ୟଦଳର ଯୁଦ୍ଧ କ୍ଷେତ୍ର ସ୍ଥିର ହୋଇଛି । ନଦୀର ସମସ୍ତ ସେତୁ ସୁରକ୍ଷିତ । କେବଳ ରାଜା ଚମ୍ପକ ରାଓଙ୍କ ରାଜ୍ୟରେ ଅବସ୍ଥିତ ସେତୁ ଅରକ୍ଷିତ । କାରଣ ରାଜା ପ୍ରତିଶ୍ରୁତି ଦେଇଥିଲେ ଯେ, ତାଙ୍କ ରାଜ୍ୟ ମଧ୍ୟ ଦେଇ ଶତ୍ରୁ ସୈନ୍ୟ ଅତିକ୍ରମ କରିବାକୁ ଅନୁମତି ଦେବେ ନାହିଁ । ଛତ୍ରଶାଳ ମୃଦୁ କଣ୍ଠରେ କହିଥିଲେ, "ଅବଶ୍ୟ ଯଦି ରାଜା ଚମ୍ପକ ରାଓ ତାଙ୍କ ପ୍ରତିଶ୍ରୁତି ରକ୍ଷା କରନ୍ତି ।"

ଖଲିଲୁଲ୍ଲା ଖାନ୍‌ଙ୍କ ଅପେକ୍ଷା ଭୟଙ୍କର ଶତ୍ରୁ ଆଉ ନାହାନ୍ତି । ରାଓଙ୍କର ସ୍ଥିର ବିଶ୍ୱାସ ଥିଲା ଯେ, ଖଲିଲୁଲ୍ଲା ଅତ୍ୟନ୍ତ ଅପକୌଶଳୀ । ଏଇ ଖଲିଲୁଲ୍ଲା ଅଧୀନରେ ତିରିଶ ହଜାର ଅଶ୍ୱାରୋହୀ ନ୍ୟସ୍ତ ଅଛନ୍ତି । ରାଓ ରୁଦ୍ଧ ବିରକ୍ତିର ସ୍ୱରରେ କହିଲେ, "ଯଦି ଶାହାଜାଦା ଆଜି ଖଲିଲୁଲ୍ଲାଙ୍କ ମିଷ୍ଟ କଥାରେ ନ ଭୁଲନ୍ତି, ତେବେ ଆଉରଙ୍ଗଜେବଙ୍କ କମାଣ ବିରୁଦ୍ଧରେ ଅଗ୍ରସର ହେବା କଠିନ ହେବ ନାହିଁ ।" ତାହାପରେ ସେ ମୋତେ ରାତିର ଦ୍ୱିତୀୟ ପ୍ରହରର ଠିକ୍ ପୂର୍ବରୁ ଅନୁରୋଧ କଲେ, "ଶାହାଜାଦୀ ଆପଣଙ୍କ ଭାଇଙ୍କୁ ପୁଣିଥରେ ସତର୍କ କରିଦିଅନ୍ତୁ ।"

ଆମେ କେତେକ ମୁହୂର୍ତ୍ତ ନୀରବ ଚିନ୍ତାରେ ଅତିବାହିତ କଲୁ । ତାହାପରେ କହିଉଠିଲି, "ରାଜପୁତ କ'ଣ କରିବ ? ରାଓ ରାଜା,— ଆପଣଙ୍କ ବିଖ୍ୟାତ ଅଶ୍ୱାରୋହୀ ବାହିନୀ ରାଜା ରାମସିଂହଙ୍କ ସୈନ୍ୟ,— କ'ଣ କରିବେ ସେମାନେ ?" ପ୍ରଥମେ ରାଓ କୌଣସି ଉତ୍ତର ଦେଲେ ନାହିଁ ।

ଅନେକ କ୍ଷଣ ନିସ୍ତବ୍ଧ ହୋଇ ସମ୍ମୁଖକୁ ଦୃଷ୍ଟି ନିକ୍ଷେପ କରି ରହିଲେ ମୋ ରାଖୀବନ୍ଧ ଭାଇ । କହିଲେ, "ଏଇ ଦେଖ, ତାଜମହଲର ଦୀପ ଜଳୁଛି— ଅନିର୍ବାଣ-ପ୍ରେମମୁଗ୍‌ଧ ହୃଦୟର ଶ୍ରଦ୍ଧା ଅର୍ଘ୍ୟ ।" ସେ ମୋ ଆଡ଼େ ଅନାଇଲେ । ଉତ୍ତେଜନାରେ ତାଙ୍କ ମୁଖ ରକ୍ତିମ ଦେଖା ଯାଉଥିଲା । କହିଲେ, "ରାଜକୁମାରୀ ଜାଣନ୍ତି ଯେ, ତାଙ୍କ ପିତାଙ୍କ ସମ୍ମାନାର୍ଥେ ଉଦୟପୁରର ଦେବମନ୍ଦିରରେ ଏକ ଅନିର୍ବାଣ ପ୍ରଦୀପ ପ୍ରଜ୍ୱଳିତ ଥାଏ । ରାଜସ୍ଥାନର ସୈନ୍ୟଦଳ ପୂର୍ଣ୍ଣ ଆଗ୍ରହରେ ସମ୍ରାଟଙ୍କ ପତାକା ତଳେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେବେ ।"

ଆମେ ତାଜମହଲର ଅଭିମୁଖେ ଅଗ୍ରସର ହେଲୁ । ରାଓ ସମାଧି ପରିଦର୍ଶନ କଲେ । ଆଉ ମୁଁ ରାଓଙ୍କୁ ନିରୀକ୍ଷଣ କଲି । ମୃଦୁକଣ୍ଠରେ ସେ

କହିଲେ, "ପୁରୁଷ ଏ ପୃଥିବୀକୁ ଶାସନ କରେ । ପୁରୁଷର ଶକ୍ତି ସୃଷ୍ଟି କରେ, ପୁଣି ଧ୍ୱଂସ ବି କରେ— ନିଜ ସୃଷ୍ଟିକୁ ନିଜେ ହିଁ ଧ୍ୱଂସ କରେ । ପୁରୁଷ ଶକ୍ତିର ଇଙ୍ଗିତ ହିଁ ଆମର ଚିନ୍ତା ଓ କର୍ମ ନିୟନ୍ତ୍ରଣ କରେ । ଆମେ ବୁଝୁନା ଯେ ଏ ଶକ୍ତିର ପଶ୍ଚାତ୍‌ରେ ଆହୁରି ଏକ ଶକ୍ତିମନ୍ତୀ ଶକ୍ତି ଥାଏ । ସେ ଶକ୍ତି ନାରୀର । ଯେତେବେଳେ ନାରୀର ସେ ଶକ୍ତି ଅଙ୍ଗବିହୀନ ଦେବତାର ପଦଧ୍ୱନିର ତାଳ ସଙ୍ଗେ ସଙ୍ଗତି ରଖି ଚାଲେ, ସେତେବେଳେ ମର୍ତ୍ତ୍ୟ ସ୍ୱର୍ଗରେ ରୂପାନ୍ତରିତ ହୋଇଯାଏ ।"

ରାଓ ଜଣ ଚମ୍ପକମାଳା ଦେଖିଥିଲେ ? ହଠାତ୍ ସୁମଧୁର ପୁଷ୍ପଗନ୍ଧର ତୀବ୍ରତାରେ ପବନ ଭରିଗଲା । ଏ ଗନ୍ଧ କି'ଣ ସମାଧି ମନ୍ଦିରର ଶତଦଳ ଉଦ୍ୟାନରୁ ଆସୁଛି ? ଏକ ଅବ୍ୟକ୍ତ କମନୀୟ ଭାବ ଓ ଅଦମ୍ୟ ଚିନ୍ତା ଶକ୍ତି ମୋତେ ମୋର ବହୁ ଊର୍ଦ୍ଧ୍ୱକୁ ଟାଣି ନେଲା । ପ୍ରାସାଦ ପ୍ରାଚୀରର ସୁଗଢ଼ର ଗମ୍ବୁଜ ତାହାର ଆଶ୍ରୟବିହୀନ ପ୍ରେମିକକୁ ଆଶ୍ରୟ ଦିଏ । ରାଓ ତାଙ୍କର ହରିଦ୍ରାଭ ଉଷ୍ଣୀଷ ମର୍ମର ଚଟାଣରେ ବିଛାଇ ଦେଲେ । ମୁଁ ତାଙ୍କ ସଙ୍ଗେ ଆଳାପ କରିବି—ହୁଏତ ଏହି ମୁହୂର୍ତ୍ତରେ— ନ ହେଲେ ଆଉ ଜୀବନରେ ସମ୍ଭବ ହୋଇ ନ ପାରେ । ଭୟ ହେଲା; ମୁଁ ମୋର ସାହସ ହରାଇ ବସିବି । ହଠାତ୍ ଏକ ଆଶ୍ଚର୍ଯ୍ୟ ଘଟଣା ! ଯାହାକୁ ମୁଁ କେବେ ଚିନ୍ତା ବି କରିନାହିଁ । ସେହି ନଜବତ୍ ଖାନ୍ ହଠାତ୍ ମୋ କଳ୍ପନାରେ ଜାଗ୍ରତ ହେଲା—କ୍ରୁଦ୍ଧ ଦୃଷ୍ଟି, ଅଶୁଭ ଇଙ୍ଗିତ । ତା' ନୟନରେ ଫୁଟି ଉଠିଥିଲା । ମୁଁ କିଛି କହିବା ପୂର୍ବରୁ ରାଓ ନଜର ଚିନ୍ତା ଅନୁସରଣରେ ଅବଜ୍ଞାର ହସ ହସି କହିଲେ, "ଆଉରଙ୍ଗଜେବଙ୍କ ସୈନ୍ୟବାହିନୀ ମଧ୍ୟରୁ ମୁଁ ପ୍ରଥମେ ନଜବତ ଖାନ୍‌ଙ୍କ ଅପସାରଣ ଚାହେଁ ।"

ମୁଁ ମୋ ବାହୁରେ ହାତ ଦେଇ କ୍ରୁଦ୍ଧ କଣ୍ଠରେ ପ୍ରଶ୍ନ କଲି, "କାହିଁକି ?"

ରାଓ ସମ୍ମୁଖକୁ ଆଗେଇ ଆସିଲେ, ଚକ୍ଷୁ ନିମୀଳିତ କରି ଶୁଷ୍କ କଣ୍ଠରେ ଉତ୍ତର ଦେଲେ "ମୁଁ ତାହାକୁ ଘୃଣା କରେ" । ମୁଁ ଆଶ୍ଚର୍ଯ୍ୟ ହେଲି ।

ସେ କ'ଣ ଶୁଣୁଥିଲେ ? ତା'ପରେ ମନେ ପଡ଼ିଲା, ମୁଁ ଯେତେବେଳେ ଫତେପୁରରେ ନଜବତ୍ ଖାନ୍‌ଙ୍କ ନାମ ଉଚ୍ଚାରଣ

କରିଥିଲି, ସର୍ତ୍ତ ଚଞ୍ଚଳ ହୋଇ ଉଠିଥିଲେ । ସେ ଯେ ଆଜି କ'ଣ ଶୁଣିଥିଲେ, ମୁଁ ଜାଣେନା । ମୁଁ ସ୍ଥିର କଲି, ଆମ ଦୁଇଜଣଙ୍କ ମଧ୍ୟରେ ନଜବତ୍ ଖାନ୍‌ଙ୍କ ଉପସ୍ଥିତିର ବି ସ୍ଥାନ ନାହିଁ । ମୁଁ ମୋ ଅବଗୁଣ୍ଠନ ଅପସାରଣ କଲି । ସେ ମୋର ସମ୍ପୂର୍ଣ୍ଣ ମୁଖମଣ୍ଡଳ ଦେଖନ୍ତୁ । ସେ ଜାଣନ୍ତୁ ଯେ, ନଜବତ୍ ଖାନ୍‌ଙ୍କ ପରି ବ୍ୟକ୍ତିଙ୍କୁ ମୁଁ ବରଣ କରି ନ ପାରେ ।

ଦୃଢ଼ କଣ୍ଠରେ ମୁଁ ପ୍ରଶ୍ନ କଲି, "ଆପଣଙ୍କର ସେଇ ଚିଠି କଥା ସ୍ମରଣ ଅଛି କି ? ସେ ଚିଠିଟି ସର୍ବଦା ମୁଁ ମୋର ବକ୍ଷଦେଶରେ ବହନ କରୁଛି । ସେଥିରେ ଲେଖାଥିଲା, ଯଦି ମୁଁ ସମ୍ମୁକ୍ତା ହୋଇଥାନ୍ତି...... ।" ଏଇଠାରେ ମୁଁ ଚୁପ୍ ରହିଲି । ଛତ୍ରଶାଲଙ୍କ ମୁଖମଣ୍ଡଳ ଶ୍ୱେତମର୍ମର ପ୍ରଚ୍ଛଦ ପଟରେ କୃଷ୍ଣ ପାଂଶୁବର୍ଣ୍ଣ ଧାରଣ କଲା । ମୁଁ ପୁଣି କହିଲି, 'ସେ ଗୋଲାପ ମନେ ଅଛି ?' କିନ୍ତୁ ମୋର ସମସ୍ତ ଶକ୍ତି ମୁଁ ହରାଇ ବସିଲି । ପ୍ରାଚୀର ଗାତ୍ରରେ ମୁଁ ମୋ ଅବସନ୍ନ ଦେହଟିକୁ ଲେଉଟାଇ ନେଲି ।

ସେ ଯେପରି ବହୁ ଦୂରରୁ ଉତ୍ତର ଦେଲେ, 'ମୋ ମନେ ପଡ଼ୁଛି, ବହୁ ବର୍ଷ ପୂର୍ବେ ମୁଁ ଗୋଟିଏ ସ୍ୱପ୍ନ ଦେଖିଥିଲି ।' ସେ ଚକ୍ଷୁ ଉନ୍ମୀଳନ କଲେ । ତାଙ୍କର ସେ ଦୃଷ୍ଟି ମୁଁ କେବେ ଭୁଲିବି ନାହିଁ । ଯେତେବେଳେ ମଣିଷ ଭିତରେ ଈଶ୍ୱରଙ୍କ ଜ୍ୟୋତି ବିକଶିତ ହୁଏ, ଆଉ କୌଣସି ଆକର୍ଷଣ ଅବଶିଷ୍ଟ ରହେ ନାହିଁ ।

ସେ ଦୃଢ଼ କଣ୍ଠରେ କହିଲେ, "ହଁ, ମୁଁ ଥରେ ସ୍ୱପ୍ନ ଦେଖିଥିଲି । ସେତେବେଳେ ମୁଁ ତରୁଣ ଥିଲି ଏବଂ ସ୍ୱପ୍ନରେ ବିଶ୍ୱାସ କରୁଥିଲି । ଜାହାନାରା ବେଗମ୍ ! ହିନ୍ଦୁସ୍ଥାନର ରାଜକୁମାରୀ; ମୋ ଗୋପନ ରାଜ୍ୟର ରାଣୀ, ଜାହାନାରା ବେଗମ୍ ! ମୋତେ ଆଜି ବୟସ ହୋଇଛି । ମୁଁ ଜାଣିଛି ଦିବସର ତୀବ୍ର ଆଲୋକ ସମ୍ମୁଖରେ ସୁନ୍ଦରତମ ସ୍ୱପ୍ନ ବି ମଳିନ ହୋଇପଡ଼େ । ସ୍ୱପ୍ନ କେବଳ ଚନ୍ଦ୍ରାଲୋକରେ କ୍ଷଣକର ଅତିଥି । ଯୁଦ୍ଧ ମୋ ଲଲାଟରେ ଗଭୀର କ୍ଷତଚିହ୍ନ ଦେଇଯାଇଛି । ସ୍ୱପ୍ନ ବାସ୍ତବ ରାଜ୍ୟରୁ ଯେତେ ଯେତେ ଦୂରେଇ ଯାଏ, ତେତେତେତେ ସୁନ୍ଦର ପ୍ରତିଭାତ ହୁଏ । ସେଠାରେ କୌଣସି ଭର୍ତ୍ସନାର ଆଶଙ୍କା ନାହିଁ... ।"

ମୋ ନିକଟରେ ଜୀବନ ଏକ ପ୍ରହେଳିକା । ଆମେ ଦୁହେଁ ନୀରବରେ ବସିଥିଲୁ । ମୋର ମନେହେଲା, ଅକସ୍ମାତ୍ ଯେପରି ଆକାଶଟା

ଆମ ମଥା ଉପରୁ ଊର୍ଦ୍ଧ୍ୱଲୋକକୁ ଉଠି ଅସ୍ତି ଭ୍ର ହଇଯାଉଛି । ଅନୁଭବ କଲି, ଆତ୍ମୋତ୍ସର୍ଗଙ୍କୁ ସପ୍ତ ସ୍ୱର୍ଗର ପଥ ଖୋଲିଦିଏ । ପୁଣି ଅନୁଭବ କଲି, ଆମ ଭିତରେ ବାହ୍ୟତଃ ପାର୍ଥକ୍ୟ ବୃହତ୍ତର ହୋଇଛି; କିନ୍ତୁ ବାସ୍ତବରେ ଆମର ଆତ୍ମା ନିକଟରୁ ନିକଟତର ହୋଇ ଆସିଛି । ଅତି ଶାନ୍ତ ଭାବରେ ମୁଁ ପ୍ରଶ୍ନ କଲି—'ଆମେ ତାଜମହଲରେ ପ୍ରବେଶ କରିବା କି ?'

ନକ୍ଷତ୍ରର ଗତି କିଏ ପ୍ରତିରୋଧ କରିପାରେ ? ପ୍ରାସାଦର ପ୍ରବେଶ ପଥରେ ମୋଲ୍ଲାଗଣ କୋରାଣ୍ ଆବୃତ୍ତି କରୁଥିଲେ । ହାଜାର୍ ମୁଲ୍ଲାମାନଙ୍କୁ ନିକଟବର୍ତ୍ତୀ ଲାଲ୍ ମସ୍‌ଜିଦ୍‌କୁ ଡାକି ନେଲେ । ସମାଧି ମନ୍ଦିରରେ ସେତେବେଳେ ଆଲୋକ ଜଳୁଥିଲା । ସେଦିନ ଥିଲା ଶୁକ୍ରବାର ।

ପ୍ରତି ଶୁକ୍ରବାର ରାତିରେ ମୋ ମାଆଙ୍କ ସମାଧି ସ୍ତମ୍ଭକୁ ମୂଲ୍ୟବାନ ମୁକ୍ତାଖଚିତ ଏକ ଖଣ୍ଡ ବସ୍ତ୍ରରେ ଆବୃତ୍ତ କରିଦିଆଯାଏ । ମୁଁ ରକ୍ଷୀବନ୍ଧି ଭାଇଙ୍କୁ କହିଲି, "ଆପଣ ଆପଣଙ୍କର ଏକ ପ୍ରିୟ ଶବ୍ଦ ଉଚ୍ଚାରଣ କରନ୍ତୁ, ଯେପରି ତାଜମହଲର ପ୍ରତିଧ୍ୱନି ଆପଣଙ୍କ ଶବ୍ଦର ଉତ୍ତର ଦେବ ।" ଶୁଣିଲି, ମୋର ନାମ ତାଜ୍‌ମହଲର ଅଭ୍ୟନ୍ତରରେ ସହସ୍ର ଦେବଦୂତଙ୍କ କଣ୍ଠରେ ଧ୍ୱନିତ ହୋଇ ଉଠୁଛି । ସେ କହିଲେ, "ଏପରି କଲେ, ସତେ ବା ଜାହାନାରାଙ୍କ ନାମ ପୃଥିବୀର ଅନ୍ୟ ପ୍ରାନ୍ତରେ ଅଭ୍ୟର୍ଥିତ ହୁଏ ।"

ମୋ ଲେଖନୀ ଅଧିକ ଅଗ୍ରସର ହେବାକୁ ଅକ୍ଷମ । ମୁଁ ବହୁ ବିଷୟରେ ବହୁ କଥା ଲେଖିପାରେ; କିନ୍ତୁ ସେହି ଗମ୍ବୁଜ ନିମ୍ନରେ ଆମ କଥା ବିନିମୟ ବିଷୟରେ ଆଉ ଲେଖିପାରୁ ନାହିଁ...... ।

କୌଣସି ବିବାହ ଅନୁଷ୍ଠାନ ଆମ ହୃଦୟକୁ ନିକଟତର କରିପାରି ନ ଥାନ୍ତା......... ।

'ଟୀ'

ଯଦି ଦାରା ଗୃହଯୁଦ୍ଧରେ ଜୟୀ ହୁଅନ୍ତି, ଏବଂ ଲକ୍ଷଶାଳ ଜୀବିତ ରହନ୍ତି, ତେବେ ସେ ହିମାଳୟର ପ୍ରାନ୍ତଦେଶସ୍ଥ ଏକ ପାର୍ବତ୍ୟ ମନ୍ଦିରକୁ ତୀର୍ଥ ଯାତ୍ରା କରିବେ । ସେ ସ୍ଥିର କରିଛନ୍ତି, ଚମ୍ବଲ ନଦୀର ଯୁଦ୍ଧ ହିଁ ତାଙ୍କର ଶେଷ ଯୁଦ୍ଧ ।

ସାଇପ୍ରାସ୍ ପାଥ୍ ମଧ୍ୟ ଦେଇ ଆମେ ସେଇ ସ୍ୱର୍ଗ ପ୍ରବେଶ ତୋରଣ ଅଭିମୁଖେ ଫେରୁଛୁ...... । ମୋର ମନେ ହେଲା, ଆମେ ଏକ ଗହନ ଧର୍ମରାଜ୍ୟର ବହୁ ଉଚ୍ଚତର ସ୍ତରରେ ଉପନୀତ ହୋଇଛୁ... ।

ବିଦାୟ ସମ୍ଭାଷଣ ସମୟରେ ମୁଁ ପଚାରିଲି, "ମୁଁ କ'ଣ ସେଇ ପବିତ୍ର ପର୍ବତକୁ ତୀର୍ଥଯାତ୍ରା କରିପାରିବ ?"

ତାଙ୍କ ନୟନରେ ଅପୂର୍ବ ଜ୍ୟୋତି । ସେ ଉତ୍ତର ଦେଲେ, "ମୁଁ ଆପଣଙ୍କ ପାଇଁ ପର୍ବତର ପାଦଦେଶରେ ଅପେକ୍ଷା କରିବି । ଜାହାନାରା, ଯଦି ସେଠାରେ ନ ପାରେ, ତେବେ ସୂର୍ଯ୍ୟାଲୋକରେ ଆପଣଙ୍କ ପାଇଁ ଅପେକ୍ଷା କରିବି ।"

ମୋ ଉଦ୍ଦେଶ୍ୟରେ ଏହାହିଁ ତାଙ୍କର ଶେଷ କଥା ।



# ନବମ ସ୍ତବକ

........................!

ଅସ୍ତ୍ରର ବର୍ଷାଧାରରେ ହିନ୍ଦୁସ୍ଥାନ୍‌ର ଉଦ୍ୟାନରେ ଫୁଲ ଫୁଟିଥିଲା ।
ସେଠାରେ ମଣିଷର ଅସ୍ଥି ଥିଲା ଶୁଭ୍ର ଯୂଥି, ଆଉ ରକ୍ତ ଥିଲା କମଳ ॥

—ଆନ୍‌ସାରି

........................!

ବାୟୁମଣ୍ଡଳ ଶୁଭ୍ର ତରବାରି ଦ୍ୱାରା ବିଖଣ୍ଡିତ ହୋଇଥିଲା ।
ସେ ତରବାରି ତିଆରି ହୋଇଥିଲା ଘନ ପଦ୍ମରାଗମଣିରେ ॥

—ଚାନ୍ଦ୍ ବ୍ରଦାଇ

........................!

ହସ୍ତୀର ବିକଟ ଚିତ୍କାର, ଅଶ୍ୱର ହ୍ରେଷାରବ, ଏଇ ଶୁଣ ସୈନ୍ୟର ଆର୍ତ୍ତନାଦ···ଏଇ···ଏଇ···ଏଇ···

ମକ୍‌ଫୀ

* * * * * * *

ପରଦିନ ପ୍ରଭାତରେ ଆମେ ପ୍ରାସାଦ ଉପରୁ ଦେଖିଲୁ, ଏକ ବିରାଟ ସେନାବାହିନୀ ପ୍ରାନ୍ତର ଅତିକ୍ରମ କରି ଚାଲିଛି; ଯୁବରାଜ ଦାରାଙ୍କ ରାଜହସ୍ତୀ ରାଜପୁତ୍ର ଅଶ୍ୱବାହିନୀ ମଧ୍ୟରେ ପର୍ବତ ପରି ଉଚ୍ଚଶିର । ସେ ଏକ ଅପୂର୍ବ ଦୃଶ୍ୟ ।

ବୁନ୍ଦୀରାଜଙ୍କ ଅଶ୍ୱାରୋହୀ ଦଳ ଚାଲିଛି—ବାହିନୀ ପରେ ବାହିନୀ—ସୈନ୍ୟଦଳଙ୍କ କୁଙ୍କୁମ ବର୍ଣ୍ଣର ପୋଷାକ ଦେଖି ମନେ ହେଉଥିଲା, ସେମାନେ ଜୟଲାଭ ନ କରି ଫେରିବେ ନାହିଁ । ମୋ ଶରୀରରେ ଏକ ବିଦ୍ୟୁତ୍‌ପ୍ରବାହ ଖେଳିଗଲା ।

ଯେତେ ଦୂର ଯାଏଁ ମୋର ଦୃଷ୍ଟି ଗଲା, ମୁଁ କେବଳ ଛତ୍ରଶାଳଙ୍କ ହସ୍ତୀକୁ ହିଁ ଦେଖିଲି । ଜାଣିଥିଲି, ତାଙ୍କ ପଶ୍ଚାତରେ ଅଛି ତାଙ୍କର

ଅଶ୍ୱ—ନାମ 'ଯବର୍ଦ୍ଧୀପ' । ଚୌହାନ୍ ବଂଶର ପ୍ରତିଷ୍ଠାତା ଗର୍ଗୀଙ୍କ ଅଶ୍ୱର ନାମ ମଧ୍ୟ ଥିଲା, 'ଯବର୍ଦ୍ଧୀପ' । ଅଶ୍ୱର ଲଲାଟରେ ବିଲମ୍ବିତ ଥିଲା ଏକ ବୃହତ୍ ରକ୍ତାଭ ପ୍ରସ୍ତର । ମୁଁ ହିଁ ସେ ପ୍ରସ୍ତରଖଣ୍ଡ ତାଙ୍କ ନିକଟକୁ ମୋର ସ୍ମୃତିସ୍ୱରୂପ ପଠାଇଥିଲି ।

ଦାମାମା ଧ୍ୱନି ନିସ୍ତବ୍ଧ ହୋଇଗଲା, ସଙ୍ଗୀତ ଦୂରରେ ମିଳାଇଗଲା । ଶେଷରେ ଉଷ୍ଟ୍ରମାନେ ଚକ୍ଷୁର ଅନ୍ତରାଳରେ ହଜିଗଲେ । ମୁଁ ମୋ ପିତାଙ୍କ ନିକଟରେ ଉପସ୍ଥିତ ହେଲି । ବର୍ତ୍ତମାନ ତାଙ୍କୁ ଶାନ୍ତ କରିବା ସହଜ ନ ଥିଲା । ସକଳ ଅଶୁଭ ସମ୍ଭାବନା ତାଙ୍କ ଦୂର ଦୃଷ୍ଟିରେ ଧରା ପଡ଼ୁଥିଲା । ତାଙ୍କ ମନରୁ ଦୁଶ୍ଚିନ୍ତା ଦୂର କରିବା ଉଦ୍ଦେଶ୍ୟରେ ମୁଁ ବାବରଙ୍କ ପୁତ୍ର ଚତୁଷ୍ଟୟ—ହୁମାୟୁନ୍, କାମରାନ୍, ଆସ୍‌କାରି ଓ ହିନ୍ଦାଲଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧର ଇତିହାସ ବର୍ଣ୍ଣନା କଲି । କାମରାନ୍ ଆଉରଙ୍ଗଜେବଙ୍କ ପରି ସମସ୍ତଙ୍କୁ ବିଶ୍ୱାସ କରାଇଥିଲେ ଯେ, ସେ ସ୍ୱୟଂ ଦରବେଶ୍ । ସେ ହୁମାୟୁନ୍‌ଙ୍କୁ ସିଂହାସନଚ୍ୟୁତ କରିବାକୁ ଚେଷ୍ଟା କରିଥିଲେ । ଅବଶ୍ୟ ବାବର ହୁମାୟୁନଙ୍କୁ ହିଁ ସିଂହାସନ ପାଇଁ ମନୋନୀତ କରିଥିଲେ । ଶେଷ ପର୍ଯ୍ୟନ୍ତ କାମରାନ୍ ସଫଳ ହୋଇ ନ ଥିଲେ ।

ପିତାଙ୍କ ଚକ୍ଷୁକୋଟରରୁ ଇତସ୍ତତଃ ବିକ୍ଷିପ୍ତ ଦୃଷ୍ଟି ଯେପରି କୌଣସି ବିଶେଷ କେନ୍ଦ୍ରର ସନ୍ଧାନ କରୁଥିଲା । —ଅକସ୍ମାତ୍ ମୋ ପ୍ରତି ସେ ଦୃଷ୍ଟି ନିକ୍ଷେପ କଲେ । ସେ ଦୃଷ୍ଟି ମୋତେ ସ୍ଥିର ପରି ବିଦ୍ଧ କଲା । ସେ ଉତ୍ତର ଦେଲେ,—"ସମ୍ରାଟ ହୁମାୟୁନ କାମରାନ୍‌ଙ୍କ ଚକ୍ଷୁ ଉତ୍ପାଟନ କରିଥିଲେ, କାରଣ କାମ୍‌ରାନ୍ ବାବରାଇ ବଂଶର ସନ୍ତାନର ପ୍ରାଣନାଶ କରିଥିଲେ । ମିର୍ଜା ଆସ୍‌କାରି ଯଦିଓ ଶିଶୁ ଆକ୍‌ବରଙ୍କୁ ଅପହରଣ କରିଥିଲେ, ତଥାପି ସେ ସଜ୍ଜନ ଥିଲେ । ଆକ୍‌ବରଙ୍କ ପ୍ରତି ସୁବ୍ୟବହାର କରିଥିଲେ । ମିର୍ଜା ହିନ୍ଦାଲ—ସମ୍ରାଟ ହୁମାୟୁନଙ୍କ ପାଇଁ ପ୍ରାଣ ବିସର୍ଜନ ଦେଇଥିଲେ । ତୈମୁର ବଂଶ କ'ଣ ଭାବୁଛି ଯେ, ତାହା ନିଃଶେଷ ହୋଇ ଯାଇଛି ?"

* * * * * * *

ମୁଁ ମୋ ଅପରାଧ ବିଷୟ ଚିନ୍ତା କଲି । ମୋ ଅପରାଧ ପାଇଁ ଶାସ୍ତି ମିଳିଛି । ସେଇ ଅପରାଧ ପାଇଁ ସାମ୍ରାଜ୍ୟର ଅସ୍ତିତ୍ୱ ପର୍ଯ୍ୟନ୍ତ ବିପର୍ଯ୍ୟସ୍ତ

ହୋଇପଡ଼ୁଛି । ଲଙ୍କାରେ ମୁଁ ଗୌରବରେ ମଥା ନତ କଲି । ଶାସ୍ତେସ୍ତା ଖାଁଙ୍କ ସ୍ତ୍ରୀଙ୍କୁ ମୁଁ ହିଁ ସମ୍ରାଟଙ୍କ ସମ୍ମୁଖରେ ଉପସ୍ଥିତ ହେବାରେ ସାହାଯ୍ୟ କରିଥିଲି । ଆଜି କିନ୍ତୁ ସେ ନାରୀର ଜୀବନ ପାଇଁ କୌଣସି ମାୟା ନାହିଁ ! ଶାସ୍ତେସ୍ତା ଖାଁଙ୍କ ପ୍ରତିଶୋଧ ସ୍ପୃହା···ଉଃ !

ତା'ପରେ କେତେକ ଦିନ ପର୍ଯ୍ୟନ୍ତ ଦେଖିଲି, ଗୋଟିଏ ନକ୍ଷତ୍ର, ଆମ ମଥା ଉପରେ ଭାଗ୍ୟନିର୍ଦ୍ଦିଷ୍ଟ ପଥରେ ଚାଲିଛି ଏବଂ ପ୍ରତ୍ୟେକଟି ଘଟନା ସେ ନକ୍ଷତ୍ର ଅଭିମୁଖେ ଛୁଟିଛି !

ମୋ ପିତା ଶାହାଜାଦା ଦାରାଙ୍କୁ ସୁଲେମାନ ଶୁକୋଙ୍କ ପାଇଁ ଅପେକ୍ଷା କରିବାକୁ କହିଥିଲେ, କିନ୍ତୁ ସେ ତରୁଣ ସେନାପତି ଶାହସୁଜାଙ୍କ ଅନୁସରଣ କରି କ୍ରମଶଃ ଦୂରକୁ ଦୂରକୁ ଚାଲିଗଲେ । ଅନ୍ୟପକ୍ଷରେ, ଆମର ଶତ୍ରୁ କ୍ରମଶଃ 'ନିକଟତର ହୋଇ ଆସିଲା । ଯଦି ସୁଲେମାନ୍ ଶୁକୋ ଯଥାସମୟରେ ଆସି ଉପସ୍ଥିତ ହୋଇଥାନ୍ତେ, ତେବେ ଖଲିଲୁଲ୍ଲା ଖାଁ ଏବଂ ତାଙ୍କର ଅଶିକ୍ଷିତ ସୈନ୍ୟମାନଙ୍କର ପ୍ରୟୋଜନ ହୋଇ ନ ଥାନ୍ତା । ପ୍ରତିଦିନ ଗ୍ରୀଷ୍ମର ଉତ୍ତାପ ବୃଦ୍ଧି ପାଉଥିଲା······ ।

ଅବଶେଷରେ ବିରାଟ ସୈନ୍ୟଦଳ ଅଭିଯାନ ଆରମ୍ଭ କଲେ । ଅଳ୍ପ ଦିନ ମଧ୍ୟରେ ସମ୍ବାଦବାହକ ଶିବିରକୁ ସମ୍ବାଦ ଆଣିଲା । ବହୁ ପ୍ରକାର ସମ୍ବାଦ ଆସୁଥିଲା, ସତ୍ୟ ମିଥ୍ୟା ନିର୍ଦ୍ଧାରଣ ସହଜ ନ ଥିଲା ।

କିନ୍ତୁ ଆଜ ମୁଁ ବହୁ ଘଟନା କହିପାରେ; କାରଣ ସେ ସବୁ ସମ୍ବାଦ ମୁଁ ପରେ ପାଇଥିଲି ।

ଶାହାଜାଦା ଦାରା ଚମ୍ବଲ ନଦୀ କୂଳରେ ଶିବିର ସଂସ୍ଥାପନ କରିଥିଲେ । ଦୂରରୁ ମନେ ହେଉଥିଲା, ଯେପରି ସ୍ୱପ୍ନଦେଶରେ ଏକ ବିରାଟ ନଗରୀ, ଅଗଣିତ ଶିବିର, ବହୁବର୍ଣ୍ଣରଞ୍ଜିତ ପତାକା, ପ୍ରବହମାନ ଜନସ୍ରୋତ । ଦୁଇଦିନ ପରେ ସୈନ୍ୟ ଦୃଷ୍ଟିଗୋଚର ହେଲେ । ଶତ୍ରୁକୁ ପ୍ରତି ଆକ୍ରମଣ କରିବା ପାଇଁ ଦାରାଙ୍କ ସେନାପତି ଅନୁମତି ପ୍ରାର୍ଥନା କଲେ । କିନ୍ତୁ ଦାରା ତଥାପି ତାଙ୍କ ପୁତ୍ର ସୁଲେମାନଙ୍କ ଅପେକ୍ଷା କରୁଥିଲେ । ସୁଲେମାନ୍ ସେତେବେଳେ ଯାଏଁ ଆସି ନ ଥିଲେ······ ।

ଚମ୍ବଲ ନଦୀ ଉପରେ ସମସ୍ତ ସେତୁବନ୍ଧ ସୁରକ୍ଷିତ ହୋଇଥିଲା । କେବଳ ଚମ୍ପତ୍ ରାଓଙ୍କ ରାଜ୍ୟର ସୀମା ମଧ୍ୟରେ ଅବସ୍ଥିତ ସେତୁ ଅରକ୍ଷିତ ଥିଲା । ରାଜା ଚମ୍ପତ୍ ରାଓ ପ୍ରତିଶ୍ରୁତି ଦେଇଥିଲେ ଯେ ଶତ୍ରୁକୁ ସେତୁ ଅତିକ୍ରମ କରିବା ପାଇଁ ଅନୁମତି ଦିଆ ଯିବନାହିଁ । ଦାରାଙ୍କ ଶିବିରର କେତେ କ୍ରୋଶ ଦୂରରେ ଗୋଟିଏ ସେତୁ ଅରକ୍ଷିତ ଥିବା ଆଉରଙ୍ଗଜେବ ଜାଣି ପାରିଲେ । ସଙ୍ଗେ ସଙ୍ଗେ ଆହୁରି ମଧ୍ୟ ସମ୍ବାଦ ମିଳିଲା ଯେ, ରାଜା ଚମ୍ପତ୍ ରାଓଙ୍କୁ ଉତ୍କୋଚ ଦ୍ୱାରା ବଶୀଭୂତ କରାଯାଇଛି । ଚବିଶ ଘଣ୍ଟା ମଧ୍ୟରେ ଆଉରଙ୍ଗଜେବ୍ ଦ୍ରୁତ ପଦକ୍ଷେପରେ ଆଠ ସହସ୍ର ଅଶ୍ୱାରୋହୀ ସୈନ୍ୟ ସହ ସୁରକ୍ଷିତ ନଦୀର ଅପର ପାର୍ଶ୍ୱରେ ଉପସ୍ଥିତ ହେଲେ ।

ବର୍ତ୍ତମାନ ଦାରାଙ୍କର ଶତ୍ରୁ ଉପରେ ଆକ୍ରମଣ କରିବାର ସୁଯୋଗ ମିଳିଲା । ନଦୀକୂଳରେ ଇତସ୍ତତଃ ବିକ୍ଷିପ୍ତ ଆଉରଙ୍ଗଜେବଙ୍କ ସୈନ୍ୟଦଳ ପରିଶ୍ରାନ୍ତ ପଥଶ୍ରାନ୍ତ ହୋଇ ପଡ଼ିଥିଲେ । ପୁଣି, ତାଙ୍କ ସୈନ୍ୟଦଳର ପ୍ରଧାନ ଅଂଶ ସେଯାଏଁ ଉପସ୍ଥିତ ହୋଇ ନ ଥିଲେ । ଦାରାଙ୍କ ସେନାଧ୍ୟକ୍ଷ ଇବ୍ରାହିମ୍ କହିଲେ,—ଦ୍ୱାଦଶ ସହସ୍ର ଅଶ୍ୱାରୋହୀ ନେଇ ଆକ୍ରମଣ କରାଯାଉ । କିନ୍ତୁ ଖଲିଲୁଲ୍ଲା ଖାଁ କହିଲେ,—"ଯଦି ଦାରା ତାଙ୍କ ସୈନ୍ୟମାନଙ୍କୁ ବର୍ତ୍ତମାନ ପ୍ରେରଣ କରନ୍ତି, ତେବେ ବିଜୟ ଗୌରବ ସେନାପତିମାନଙ୍କର ପ୍ରାପ୍ୟ ହେବ; ତଦ୍ଦ୍ୱାରା ଦାରାଙ୍କର ସମ୍ମାନ ହ୍ରାସ ହେବ । ତେଣୁ ଦାରା ଅପେକ୍ଷା କରିବା ଉଚିତ...... ।"

ମୁଁ କିନ୍ତୁ ସେତେବେଳେ ବୁଝି ପାରି ନ ଥିଲି ଯେ, ସେଇ ମୁହୂର୍ତ୍ତରେ ହିଁ ନିଃଶବ୍ଦରେ, ଅପରିବର୍ତ୍ତନୀୟ ଭାଗ୍ୟଦେବତା ସ୍ୱୀୟ ନିର୍ଦ୍ଦିଷ୍ଟ ପଥରେ ଅପସରି ଗଲେ ।

ସେତେବେଳକୁ ରମଜାନ୍ ମାସର (୧) ପ୍ରାରମ୍ଭ । ପରଦିନ ଦାରା ଶତ୍ରୁ ସୈନ୍ୟମାନଙ୍କ ବିରୁଦ୍ଧରେ ସାମୁଗଡ଼ ଅଭିମୁଖେ ଯାତ୍ରା କଲେ; କିନ୍ତୁ ବହୁ ବିଳମ୍ବ ହୋଇ ଯାଇଥିଲା । ସେଇ ରାତିରେ ଓ ପ୍ରତ୍ୟୁଷରେ

(୧) ମୁସଲମାନମାନଙ୍କ ନିକଟରେ ରମଜାନ୍ ମାସ ପବିତ୍ର । ଏ ମାସରେ ରକ୍ତପାତ ନିଷିଦ୍ଧ । ଏଇ ମାସରେ ମହମ୍ମଦ ଆଲ୍ଲାହ୍‌ଙ୍କ ବାଣୀ ପାଇଥିଲେ ବୋଲି କଥିତ ଅଛି ।

ସୈନ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଆସି ପହଞ୍ଚିଲେ । ଶ୍ୱାସରୋଧକାରୀ ଉଷ୍ଣ ବାୟୁ ଚତୁର୍ଦ୍ଦିଗ ବିଭ୍ରାନ୍ତ କରୁଥିଲା । ବିରାଟ ପ୍ରାନ୍ତରରେ ଜଳାଭାବରେ ସୈନ୍ୟଗଣ ଅସ୍ଥିର । ଦାରାଙ୍କ ଅଭିପ୍ରାୟ ଥିଲା, ଦାମାମା ନିନାଦରେ ଆକ୍ରମଣର ଆଦେଶ ଦେବେ ; କାରଣ ଆଉରଙ୍ଗଜେବ ସେତେବେଳ ଯାଏଁ ତାଙ୍କ ଗୋଲନ୍ଦାଜ ସୈନ୍ୟମାନଙ୍କ ପାଇଁ ଅପେକ୍ଷା କରୁଥିଲେ ଏବଂ ଉପସ୍ଥିତ ଥିବା ବହୁ ସୈନ୍ୟ ପରିଶ୍ରାନ୍ତ ଥିଲେ । କିନ୍ତୁ ଦାରାଙ୍କ ବିଶ୍ୱାସଘାତକ ସେନାପତିମାନେ ଜ୍ୟୋତିଷଶାସ୍ତ୍ରର ଆଶ୍ରୟ ନେଲେ । ସେମାନେ କହିଲେ, "ଆକାଶର ଜ୍ୟୋତିଷ୍କ ମଣ୍ଡଳ ଦାରାଙ୍କ ଭାଗ୍ୟର ପ୍ରତିକୂଳ, ଅପେକ୍ଷା କରିବା ହିଁ କର୍ତ୍ତବ୍ୟ । ଦାରାଙ୍କ ଅପରାଜେୟ ସୈନ୍ୟ ବାହିନୀ ତୁଳନାରେ ଆଉରଙ୍ଗଜେବଙ୍କ ସୈନ୍ୟବାହିନୀ ସମୁଦ୍ରରେ ଗୋଷ୍ପଦ ମାତ୍ର... ।"

ତା'ପର ଦିନ ଦାରା ସମ୍ରାଟଙ୍କ ନିକଟରୁ ପତ୍ର ପାଇଲେ ଯେ, ତାଙ୍କୁ ଆଗ୍ରା ପ୍ରତ୍ୟାବର୍ତ୍ତନ କରି ସୁଲେମାନଙ୍କ ପାଇଁ ଅପେକ୍ଷା କରିବାକୁ ହେବ । ଦାରା ଉତ୍ତର ଦେଲେ—ଆଉରଙ୍ଗଜେବ ଓ ମୁରାଦଙ୍କୁ ତିନି ଦିନ ମଧ୍ୟରେ ସମ୍ରାଟଙ୍କ ନିକଟରେ ଉପସ୍ଥିତ କରାଯିବ ।

ପରଦିନ ଶନିବାର । ଦାରାଙ୍କ ଅଭିପ୍ରାୟ, ଆକ୍ରମଣ କରାହେଉ । ଏଥର ମଧ୍ୟ ବିଶ୍ୱାସଘାତକ ଦଳ କହିଲେ, ଅଶୁଭ ସମୟ, କାରଣ ମେଘ ବର୍ଷଣମୁଖର । ତା'ପରଦିନ ରବିବାର, ଏଇ ଦିନ ଈଶ୍ୱର ଆଲୋକ ସୃଷ୍ଟି କରିଥିଲେ । ଏଇ ଦିନ ପାଇଁ ଅପେକ୍ଷା କରାହେଉ । ଏହା ତୃତୀୟ ଥର । ପରେ ପରେ ତିନୋଟି ସୁଯୋଗ ନଷ୍ଟ ହେଲା ।

ବର୍ତ୍ତମାନ ନକ୍ଷତ୍ର ତାର ଲକ୍ଷସ୍ଥଳରେ ଉପନୀତ । ଶନିବାର ମଧ୍ୟରାତ୍ରି ବେଳକୁ ଆଉରଙ୍ଗଜେବ ତିନିଥର କମାଣ ଧ୍ୱନି କଲେ । ଉଦ୍ଦେଶ୍ୟ ଥିଲା ବିଶ୍ୱାସଘାତକମାନେ ଜାଣନ୍ତୁ ଯେ, ସେ ଆକ୍ରମଣ ପାଇଁ ପ୍ରସ୍ତୁତ । ସୈନ୍ୟଦଳ ଓ ପଶୁଗଣ ବିଶ୍ରାମ ନେଉଥିଲେ । ଦାରା ମଧ୍ୟ ତିନିଥର କମାଣ ଧ୍ୱନି କରି ପ୍ରତ୍ୟୁତ୍ତର ଦେଲେ, କିନ୍ତୁ ପରଦିନ ପ୍ରତ୍ୟୁଷ ପୂର୍ବରୁ ଦୁଇ ସୈନ୍ୟ ଦଳର ସାକ୍ଷାତ୍ ହେଲା ନାହିଁ ।

ଦାରାଙ୍କ କମାଣ ଅବିରାମ ଗୋଳା ବର୍ଷଣ କରିଚାଲିଲା । ବାରୁଦର ଧୂମଜାଲରେ ଆକାଶର ମେଘମଣ୍ଡଳ ଘନ କୃଷ୍ଣବର୍ଣ୍ଣ ଧାରଣ କଲା ; କିନ୍ତୁ

ସକଳ ଚେଷ୍ଟା ବ୍ୟର୍ଥ କରିବା ପାଇଁ ଆଉରଙ୍ଗଜେବ ଆମ ଗୋଳାର ବହୁଦୂରରେ ସୈନ୍ୟ ଶିବିର ସ୍ଥାପନ କରିଥିଲେ ।

ଆଉରଙ୍ଗଜେବ ସାମାନ୍ୟ କେତେଥର ଗୋଳା ନିକ୍ଷେପ କଲେ । ତା'ପରେ ପୁଣି ଥରେ ତିନୋଟି କମାଣ ଧ୍ୱନି ଅର୍ଥାତ୍ ବିଶ୍ୱାସଘାତକମାନଙ୍କ ପାଇଁ ଦ୍ୱିତୀୟ ବାର ସଙ୍କେତ··· ।

ଖଲିଲୁଲ୍ଲା ଖାଁ ଆଉ ଥରେ ଉପଦେଶ ଦେଲେ,—"ଯୁବରାଜ ବର୍ତ୍ତମାନ ଶତ୍ରୁ ସୈନ୍ୟର ବୃହତ୍ ଅଂଶ କମାଣରେ ଧ୍ୱଂସ କରୁଛନ୍ତି । ବର୍ତ୍ତମାନ ସମୟ ଆସିଛି, ଆପଣ ଅଗ୍ରସର ହୁଅନ୍ତୁ । ଆପଣଙ୍କ ବିଜୟ ସମ୍ପୂର୍ଣ୍ଣ କରନ୍ତୁ ।" ଦାରାଙ୍କ ବିଶ୍ୱସ୍ତ ସେନାପତି ରୁସ୍ତମ ଖାଁ କହିଲେ,— "ଶତ୍ରୁକୁ ଆକ୍ରମଣ କରିବାକୁ ସୁଯୋଗ ଦିଆଯାଉ । ତେବେ ଯୁବରାଜଙ୍କ ସୈନ୍ୟମାନେ ସେମାନଙ୍କୁ ଉପଯୁକ୍ତ ଅଭ୍ୟର୍ଥନା କରିବେ । ଆମର ସୈନ୍ୟ ଦଳ ଅଧିକ ଏବଂ ଜୟଲାଭ କରିବାର ସମ୍ଭାବନା ବେଶୀ ।"

କିନ୍ତୁ ଖଲିଲୁଲ୍ଲା ଖାଁଙ୍କ ପରାମର୍ଶ ଗ୍ରହଣ କରା ହେଲା । ରୁସ୍ତମ ଖାଁଙ୍କୁ ଖିରୁ କାପୁରୁଷ ବୋଲି ନିନ୍ଦା କରାଗଲା । ବିଜୟର ସମ୍ମାନ ଯୁବରାଜଙ୍କର ପ୍ରାପ୍ୟ,······ଆଉ ଅପେକ୍ଷା କରିବା ଅସମୀଚୀନ ।

ଦାରା ଗୋଲନ୍ଦାଜ-ବାହିନୀକୁ ଶୃଙ୍ଖଳମୁକ୍ତ କରି ଅଶ୍ୱାରୋହୀ ବାହିନୀ ସହିତ ଶତ୍ରୁକୁ ଆକ୍ରମଣ କରିବା ପାଇଁ ଆଦେଶ ଦେଲେ । ଏଇ ଅକସ୍ମାତ୍ ଅଗ୍ରସର ହେବା ଆଦେଶରେ ଅଶିକ୍ଷିତ ସୈନ୍ୟଦଳ ସନ୍ତ୍ରସ୍ତ ହୋଇ ପଡ଼ିଲେ । ଲୌହକାର, କଂସାରି, ନରସୁନ୍ଦର ପ୍ରଭୃତି ଅଶିକ୍ଷିତ ସୈନ୍ୟଗଣ ଶତ୍ରୁ ପଳାୟନ କରିବା ପରେ, ରସଦ୍ ଶିବିରରେ ସ୍ୱର୍ଣ୍ଣ, ରୌପ୍ୟ ପାଇଁ ସଂଗ୍ରାମ ଆରମ୍ଭ କରିଦେଲେ । ଶତ୍ରୁକୁ ହତ୍ୟା ନ କରି ପରସ୍ପରକୁ ହତ୍ୟା କରିବାରେ ବ୍ୟାପୃତ ହେଲେ ।

ଦାରା କିନ୍ତୁ ବୀର ପରି ସମ୍ମୁଖକୁ ଅଗ୍ରସର ହେଲେ ଏବଂ ହସ୍ତଦ୍ୱାରା ପ୍ରତ୍ୟେକ ସୈନ୍ୟକୁ ଅଗ୍ରସର ହେବା ପାଇଁ ଇଙ୍ଗିତ କଲେ । କମାଣ ଧ୍ୱନି ଶାନ୍ତ ହୋଇଗଲା, ପୁଣି ଦାମାମା ଶବ୍ଦ ଶୁଣାଗଲା । ଶତ୍ରୁ ପକ୍ଷରୁ ଗୋଟିଏ ଦୁଇଟି କମାଣ, ଗୋଳା ଆସି ପଡ଼ିବାକୁ ଲାଗିଲା । ହଠାତ୍ କମାଣ ଗର୍ଜନ ଏବଂ ଗୋଲନ୍ଦାଜ ବାହିନୀର ଆକ୍ରମଣରେ ଦାରାଙ୍କ

ସୈନ୍ୟଗଣ ବିପର୍ଯ୍ୟସ୍ତ ହୋଇ ପଡ଼ିଲେ ; ତଥାପି ଦାରା ହସ୍ତ ଉତ୍ତୋଳନ କରି ଆଦେଶ ଦେବାକୁ ଲାଗିଲେ ।

ଛତ୍ରଶାଲ ଏବଂ ରୁସ୍ତମ୍ ଖାଁ ଦାରାଙ୍କୁ ରକ୍ଷା କରିବା ପାଇଁ ଆଉରଙ୍ଗଜେବଙ୍କ ଗୋଲନ୍ଦାଜ ବାହିନୀ ମଧ୍ୟଦେଇ ଅଗ୍ରସର ହେଲେ ଏବଂ ଶତ୍ରୁର ପଦାତିକ ଓ ଉଷ୍ଟ୍ରବାହିନୀକୁ ପଳାୟନ କରିବାପାଇଁ ବାଧ୍ୟ କଲେ ।

ଆଉରଙ୍ଗଜେବ ଏଇ ଆସନ୍ନ ବିପଦ ଆଶଙ୍କା କରି ନ ଥିଲେ । ସେ ଶେଖ୍ ମୀରଙ୍କ ଅଧୀନରେ ଆହୁରି ସୈନ୍ୟଦଳ ପ୍ରେରଣ କଲେ । ଏଇ ଶେଖ୍ ମୀର ହିଁ ତାଙ୍କୁ ମୁକ୍ତା ଖରିଦ୍ ନ କରି ସୈନ୍ୟ ସଂଗ୍ରହ କରିବାକୁ ଉପଦେଶ ଦେଇଥିଲେ । ଯୁଦ୍ଧ ଲାଗି ରହିଲା । ଶତ୍ରୁଗଣ ପରସ୍ପର ସମ୍ମୁଖ ଯୁଦ୍ଧରେ ବ୍ୟାପୃତ ହେଲେ । ଅସ୍ତ୍ରର ଝଙ୍କାର, ଶିଙ୍ଗାର ନିନାଦ ଏବଂ ଶର ବର୍ଷଣ ସମାଗତ ଲାଗି ରହିଲା । ଯଥୋଚିତ ଗାମ୍ଭୀର୍ଯ୍ୟ ସହିତ ସମସ୍ତ ଶକ୍ତି ନିୟୋଜିତ କରି, ହସ୍ତୀପୃଷ୍ଠରେ ସମାସୀନ ଦାରା ସୈନ୍ୟମାନଙ୍କୁ ବୀରୋଚିତ କାର୍ଯ୍ୟ ପାଇଁ ଉତ୍ସାହିତ କରିବାରେ ଲାଗିଲେ । ଶତ୍ରୁଦଳ ପ୍ରାୟ ବିପର୍ଯ୍ୟସ୍ତ ହୋଇପଡ଼ିଲେ ।

* * * * *

ଆଗ୍ରା ସହରରେ ଉତ୍ତେଜନା ଚରମକୁ ଉଠିଥିଲା । ପ୍ରଭାତ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ବ୍ୟକ୍ତି ଜାଣିଲେ ଯେ, ଯୁଦ୍ଧ ଆରମ୍ଭ ହୋଇଛି । ପ୍ରାତଃକାଳ ଶେଷ ସମୟକୁ ଜଣେ ଫିରଙ୍ଗୀ ଯୁଦ୍ଧକ୍ଷେତ୍ରରୁ ଫେରି ଆସିଲେ । ତାଙ୍କର ଅଶ୍ୱ ତାଙ୍କ ଗୃହ ସମୀପରେ ହିଁ ମୃତ୍ୟୁମୁଖରେ ପତିତ ହୋଇଥିଲା । ଏଇ ଫିରଙ୍ଗୀ ଦାରାଙ୍କ ରସଦ୍ ଶିବିର ଲୁଣ୍ଠନ କରିଥିଲେ । ସେ ଚାରିଆଡ଼େ ପ୍ରଚାର କରିଦେଲେ ଯେ, ସମ୍ରାଟଙ୍କ ସୈନ୍ୟ ଯୁଦ୍ଧକ୍ଷେତ୍ରରେ ପରାଜିତ ହୋଇଛନ୍ତି । ତା'ପରେ ମୋର ମନେହେଲା, ଯେପରି ସବୁକିଛି ମସୀମୟ ହୋଇ ପଡ଼ିଛି । ନକ୍ଷତ୍ରର ଗତି ସ୍ତବ୍ଧ ହୋଇଛି । ଅଳ୍ପ ସମୟ ପରେ ସମ୍ବାଦବାହକ ଆସି ବର୍ଣ୍ଣିତ ଘଟନା ସବୁର ଏକ ଅସଂଲଗ୍ନ ବିବରଣୀ ଦେଇଗଲା । ସାମୁଗଡ଼ ଯୁଦ୍ଧର ଚରମ ମୁହୂର୍ତ୍ତରେ ଏହି ବ୍ୟକ୍ତି ଯୁଦ୍ଧକ୍ଷେତ୍ର ତ୍ୟାଗ କରି ଆସିଥିଲା । ତାର ଆଶା ଥିଲା, ସେ ସ୍ୱୟଂ ସମ୍ରାଟଙ୍କୁ ଶାହବୁଲନ୍ଦ୍ ଏକ୍‌ବାଲଙ୍କ (୧) ବିଜୟ ସମ୍ବାଦ ଦେବ ।

(୧) ବୁଲନ୍ଦ୍ ଏକ୍‌ବାଲ୍ ଅର୍ଥାତ୍ ଭାଗ୍ୟବାନ୍ ଦାରାଙ୍କ ଉପାଧି; କିନ୍ତୁ ଅଦୃଷ୍ଟର ପରିହାସରେ ଦାରାଙ୍କ ପରି ହତଭାଗ୍ୟ ଆଉ କେହି ନ ଥିଲେ ।

ମୁଁ କିନ୍ତୁ କୌଣସି ଜନଶ୍ରୁତିରେ ବିଶ୍ୱାସ କରି ନ ଥିଲି । ଗତ କେତେକ ଦିନ ମଧ୍ୟରେ ପିତାଙ୍କ ବୟସ ଯେପରି କେତେ ବର୍ଷ ବଢ଼ିଯାଇଛି । ମୁଁ ମୋ ପିତାଙ୍କୁ ସାନ୍ତ୍ୱନା ବା ଉତ୍ସାହ ଦେବା ପାଇଁ କୌଣସି ପ୍ରେରଣା ପାଇଲି ନାହିଁ । ପ୍ରାସାଦ ଶିଖରକୁ ଉଠି ଦିନର ଆଲୋକରେ ସମସ୍ତ ପ୍ରାନ୍ତର ନିରୀକ୍ଷଣ କରିବାକୁ ଲାଗିଲି । ସେତେବେଳେ ସୂର୍ଯ୍ୟର ଉତ୍ତାପ ଅତ୍ୟନ୍ତ ପ୍ରଖର ଥିଲା । ଏକ ଅମଙ୍ଗଳର ଗୁପ୍ତଚର, ଗର୍ବିର ଶୀତଳ ପବନ, ନକ୍ଷତ୍ର ଅଭିମୁଖେ ଏକ କୃଷ୍ଣ ନିବିଡ଼ ଧୂଳିମେଘ ଉଡ଼ାଇ ଦେଲା ।

ଅନ୍ଧକାରରେ ମୁଁ ବିଶେଷ କିଛି ଦେଖି ପାରିଲି ନାହିଁ ; କିନ୍ତୁ ସବୁ ଶୁଣି ପାରୁଥିଲି । ଶୁଣିଲି, ଦଳ ପରେ ଦଳ ଅଶ୍ୱଙ୍କର ପଦଧ୍ୱନି କ୍ରମଶଃ କ୍ଷୀଣ ହୋଇଗଲା । ପ୍ରାସାଦ ଆଡ଼େ କୌଣସି ଶବ୍ଦ ଆସୁ ନ ଥିଲା । ଏଆଡ଼େ କୌଣସି ବ୍ୟକ୍ତି ନ ଆସୁଛି କାହିଁକି ?

ରାତ୍ରି ଗଭୀର ହେଉଥିଲା । ଏକ ପ୍ରହର ଅତୀତ ହୋଇଛି । ମୁଁ ଶୁଣି ପାରିଲି, ଝଞ୍ଜା ପୂର୍ବର ପ୍ରଭଞ୍ଜନ ପରି, ଏକ ଅଶ୍ୱବାହିନୀ ଅଗ୍ରସର ହେଉଛି । କ୍ରମେ ଅଶ୍ୱ ନିକଟସ୍ଥ ହେବାରୁ ବୁଝି ପାରିଲି, ଅଶ୍ୱଖୁରର ଶବ୍ଦ କେତେ ଅସଂଲଗ୍ନ । ଏ ସମସ୍ତ ଅଶ୍ୱ କ'ଣ ଆହତ ହୋଇଛନ୍ତି ? ଆଲୋକ ନାହିଁ କାହିଁକି ? କିନ୍ତୁ ଅବଶେଷରେ ମନେହେଲା, ଅନେକ ଅଶ୍ୱାରୋହୀ ଦୁର୍ଗଦ୍ୱାରକୁ ଆସି ସ୍ଥିର ହେଲେ ।

ଦାରା ଆସିଛନ୍ତି, କିନ୍ତୁ ସେ ତୋରଣ ଅତିକ୍ରମ କରି ନାହାନ୍ତି । ପରିଶ୍ରାନ୍ତ ହତଭାଗ୍ୟ ଦାରା ଦୁର୍ଗରେ ପ୍ରବେଶ କରି ନାହାନ୍ତି । ତାଙ୍କର ଭୟ ହେଲା, କାଳେ ଶତ୍ରୁ ଆସି ତାଙ୍କୁ ଦୁର୍ଗରେ ଆବଦ୍ଧ କରି ରଖେ । ଏପରି ଅବସ୍ଥାରେ, ପିତାଙ୍କର କନ୍ୟା ମୋର ସମ୍ମୁଖରେ ଦୁର୍ଗରେ ପ୍ରବେଶ କରିବାର ସାହସ ତାଙ୍କର ନ ଥିଲା ; କିନ୍ତୁ ନିଜ ପ୍ରାସାଦରେ ପ୍ରବେଶ କରିବା ପୂର୍ବରୁ ମୋ ନିକଟକୁ ସେ ଏକ ସମ୍ବାଦ ପଠାଇଥିଲେ ।

ଦାରାଙ୍କ ଦୂତ ଆସିବା ସମୟରେ ମୁଁ ପିତାଙ୍କ ନିକଟରେ ଉପସ୍ଥିତ ଥିଲି । ଶାହାଜାଦା ସମ୍ଭାଷଣ ସଙ୍ଗେ ଜଣାଇଥିଲେ— 'ଭବିଷ୍ୟତ୍‌ବାଣୀ ସଫଳ ହୋଇଛି ।' ସମ୍ରାଟ ସୈନ୍ୟଦଳର ପୁରୋଭାଗରେ

ଉପସ୍ଥିତ ହୋଇ ପାରିଥାନ୍ତେ । ତାଙ୍କର କ କ୍ଷିଣ ଆକ୍ଷେପ ! ସମ୍ରାଟ ଯଦି ଥରେ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହୋଇଥାନ୍ତେ, ସୈନ୍ୟ-ଗଣ ବୁଝି ପାରିଥାନ୍ତେ ଯେ ସମ୍ରାଟ ଜୀବିତ । ତା'ହେଲେ ଯୁଦ୍ଧର ପରିଣତି ଅନ୍ୟ ପ୍ରକାର ହୋଇଥାନ୍ତା ।

ଆମେ ସମ୍ରାଟଙ୍କ ନିକଟକୁ ତାଙ୍କ ବିଶ୍ୱସ୍ତ ଖୋଜା ଭୃତ୍ୟକୁ ପଠାଇଦେଲୁ— ସାନ୍ତ୍ୱନା ପାଇଁ । ମୁଁ ଏଇମାନ ଯୁଦ୍ଧର ପ୍ରକୃତ ପରିସ୍ଥିତି ଜାଣିଲି । ଯେତେବେଳେ ଆଉରଙ୍ଗଜେବଙ୍କ ସୈନ୍ୟଗଣ ପଳାୟମାନ ଏବଂ ଯେତେବେଳେ ସେ ନିଜେ ବନ୍ଦୀ ହେବାର ସମ୍ଭାବନା, ସେତିକବେଳେ ଦାରାଙ୍କ ଅଗ୍ରଗତି ରୁଦ୍ଧ କରିବା ପାଇଁ ସେ ତାଙ୍କର ସର୍ବଶ୍ରେଷ୍ଠ ଅଶ୍ୱାରୋହୀଦଳ ପଠାଇଥିଲେ । ନିଜ ଆତ୍ମରକ୍ଷା ପାଇଁ କ୍ଷୁଦ୍ର ସୈନ୍ୟଦଳଟିଏ ରଖିଥିଲେ । ଆଉରଙ୍ଗଜେବ ତାଙ୍କ ହସ୍ତୀକୁ ଭୂମି ସହିତ ଶୃଙ୍ଖଳାବଦ୍ଧ କରି ରଖିଥିଲେ ଏବଂ ସେଇ ଶୃଙ୍ଖଳାବଦ୍ଧ ହସ୍ତୀ ଉପରେ ବସି ସୈନ୍ୟମାନଙ୍କୁ ଦେଖାଇ ଦେଉଥିଲେ ଯେ, ସେ ମୃତ୍ୟୁଭୟରେ ଭୀତ ନୁହନ୍ତି । ସେ ଯୁଦ୍ଧରେ ଜୟ କରିବାକୁ ଦୃଢ଼ପ୍ରତିଜ୍ଞ । ଯଦି ଶାହଜାଦା ଦାରା ପୂର୍ବ ଭଳି ପଳାୟମାନ ଶତ୍ରୁ ସୈନ୍ୟର ଅନୁସରଣ କରିଥାନ୍ତେ, ତେବେ ସେଦିନ ଆଉରଙ୍ଗଜେବ ଓ ମୁରାଦ ଶୃଙ୍ଖଳାବଦ୍ଧ ଅବସ୍ଥାରେ ଆଗ୍ରାକୁ ଆନୀତ ହୋଇଥାନ୍ତେ ; କିନ୍ତୁ ଅସମତଳ ଭୂମି ଉପରେ ଦାରାଙ୍କ ଅଗ୍ରଗତି ବ୍ୟାହତ ହେଲା । ବିଶ୍ରାମ ପାଇଁ ସେ ସାମାନ୍ୟ ଅପେକ୍ଷା କଲେ ।

ରକ୍ତାକ୍ତ ଧୂଳିଧୂସରିତ ଦୂତ ମୂର୍ତ୍ତିମାନ୍ ପରାଜୟ ପରି ଆମ ସମ୍ମୁଖରେ ଠିଆ ହୋଇଥିଲା । କିଛି କ୍ଷଣ ସେ ତାର ବର୍ଣ୍ଣନା ସ୍ଥଗିତ ରଖିଲା—ଯେପରି ଦୁଃସମ୍ବାଦ ପାଇଁ ପ୍ରସ୍ତୁତ ହେବାକୁ ସେ ଆମକୁ ସମୟ ଦେଉଛି ! ଅବଶ୍ୟ ମୁଁ ସବୁ କିଛି ପାଇଁ ପ୍ରସ୍ତୁତ ଥିଲି । ତାପରେ ସେ କହିବାକୁ ଲାଗିଲା, "ଯେତେବେଳେ ଶାହାଜାଦା ଦାରା ବିଶ୍ରାମ କରୁଥିଲେ, ସୁଲ୍‌ତାନ୍ ମହମ୍ମଦଙ୍କ ସଙ୍ଗେ ଯୁଦ୍ଧ କରି ରୁସ୍ତମ୍ ଖାଁ ନିହତ ହେଲେ । ପୁଣି, ରାଓ ଛତ୍ରଶାଳ ନଜବତ୍ ଖାଁଙ୍କ ସଙ୍ଗେ ଯୁଦ୍ଧ ସମୟରେ ଗୁଳିବିଦ୍ଧ ହୋଇଛନ୍ତି ।"

ନିଃସନ୍ଦେହ ଯେ, ଆମେ ସେଇ କକ୍ଷରେ ବସିଥିଲୁ ଏବଂ ଦାରାଙ୍କ ଦୂତ ଆମ ସମ୍ମୁଖରେ କଥା କହୁଥିଲା ; କିନ୍ତୁ ଏସବୁ ଯେପରି ମୋ'ଠାରୁ ବହୁ ଦୂରରେ । ଆଉ କ'ଣ ହେବ ? ସବୁ କିଛି ଶେଷ ହୋଇ ଯାଇଛି । ଆମେ ତ ମୃତ୍ୟୁର ରାଜ୍ୟ ପାର ହୋଇଆସିଛୁ । ମୋ ପିତା କେତୋଟି ପ୍ରଶ୍ନ ପଚାରିଲେ । ତା'ପରେ ମୁଁ ଶୁଣିଲି, ସେ ଦୂତ ଉତ୍ତର ଦେଉଛି, "ଯଦି ରୁସ୍ତମ ଖାଁ ଏବଂ ଛତ୍ରଶାଲଙ୍କ ମୃତ୍ୟୁ ସମ୍ବାଦ ଶୁଣି ଖଲିଲୁଲ୍ଲା ଖାଁ ଶାହାଜାଦା ଦାରାଙ୍କ ଉଦ୍ଧାର ପାଇଁ ଅଗ୍ରସର ହୋଇ ଆସିଥାନ୍ତେ, ତେବେ ଏଇ ଯୁଦ୍ଧର ପରିଣାମ ଅନ୍ୟ ପ୍ରକାର ହୋଇଥାନ୍ତା ।"

ନା, ଆମେ ସମସ୍ତେ ତ ତଥାପି ମରି ନାହୁଁ । ପ୍ରତିଶୋଧ ପାଇଁ ନୂଆ ହୋଇ ବଞ୍ଚିବାକୁ ହେବ ।

*   *   *   *   *   *   *

ପୁଣି ଶୁଣିବାକୁ ପାଇଲି—ରାମସିଂ (୧) ତାଙ୍କ ରାଜପୁତ୍ର ଯୋଦ୍ଧାମାନଙ୍କ ସଙ୍ଗେ ସସମ୍ମାନେ ମୃତ୍ୟୁବରଣ କରିଛନ୍ତି । ଏହାପରେ ଦାରା ମୁରାଦ୍ ବକ୍ସଙ୍କ ବିରୁଦ୍ଧରେ ସ୍ୱୟଂ ସୈନ୍ୟ ପରିଚାଳନା କରିଥିଲେ । କିନ୍ତୁ, ହଠାତ୍ ଏକ ଅଭୂତପୂର୍ବ ଘଟନା ଘଟିଲା । ଦାରା ତାଙ୍କ ହସ୍ତୀପୃଷ୍ଠରୁ ଅବତରଣ କଲେ । ଭୟାନକ ବିଭ୍ରାଟ ସୃଷ୍ଟି ହେଲା । ସୈନ୍ୟ ଏବଂ ଅଧିନାୟକଗଣ ମନେକଲେ ଯେ, ଦାରା ମୃତ । ତେଣୁ ସେମାନେ ପ୍ରାଣପଣେ ଯୁଦ୍ଧ ଜୟ ପାଇଁ ଅଗ୍ରସର ନ ହୋଇ, ବାତ୍ୟା ସମ୍ମୁଖସ୍ଥ ମେଘ ପରି ବିକ୍ଷିପ୍ତ ହୋଇପଡ଼ିଲେ.......... ।

ହାୟ, ଯେ ଏଇ ସମ୍ବାଦ ବହନ କରି ଆଣିଥିଲା, ଯୁଦ୍ଧକ୍ଷେତ୍ରରେ ଯଦି ତାର ମୃତ୍ୟୁ ହୋଇଥାନ୍ତା ! ସେ ପୁଣି ଦେଖି ଆସିଥିଲା ଖଲିଲୁଲ୍ଲା ଖାଁ ପାଞ୍ଚ ସହସ୍ର ସୈନ୍ୟ ନେଇ ଶତ୍ରୁର ଶିବିର ଅଭିମୁଖେ ଅଗ୍ରସର ହେଉଥିଲେ, କିନ୍ତୁ ଯୁଦ୍ଧ କରିବା ପାଇଁ ନୁହେଁ । ଆଉରଙ୍ଗଜେବ ତଥାପି ହସ୍ତୀପୃଷ୍ଠରେ ସମାସୀନ ଥିଲେ, ଯେପରି ପୃଥିବୀରେ ତାହା ହିଁ ଏକମାତ୍ର ସ୍ଥାନ ଯେଉଁଠାରୁ ବିଜୟଲାଭ ସୁନିଶ୍ଚିତ !

ମୁଁ ଆଉ ଶୁଣି ପାରିଲି ନାହିଁ । ପିତାଙ୍କୁ ପରିତ୍ୟାଗ କରି ମୁଁ ମୋ ପ୍ରାସାଦକୁ ଚାଲିଆସିଲି ।

---

(୧) ରାମସିଂ ଜୟସିଂଙ୍କ ପୁତ୍ର ।

ଏକ ନୃଶଂସ ହସ୍ତ ମୋ ହୃତ୍‌ପିଣ୍ଡକୁ ଏପରି କଠିନ ଭାବରେ ପେଷଣ କରୁଥିଲା ଯେ, ମୁଁ ନିଃଶ୍ୱାସ ମଧ୍ୟ ନେଇ ପାରୁ ନ ଥିଲି । ମୁଁ ଯମୁନା ସମ୍ମୁଖରେ, ସ୍ତମ୍ଭପାର୍ଶ୍ୱରେ, ଦରଜାକୁ ଆଉଜି ଠିଆ ହୋଇଥିଲି । ହଠାତ୍ କୋୟେଲ୍ ଉପସ୍ଥିତ ହେଲା । ଅଶ୍ରୁରୁଦ୍ଧ କଣ୍ଠରେ ସେ କହିଲା, ବୁନ୍ଦୀ-ରାଜ୍ୟର ଜଣେ ଅଶ୍ୱାରୋହୀ ସୈନ୍ୟ ବେଗମ୍‌ସାହେବାଙ୍କ ସଙ୍ଗେ ସାକ୍ଷାତ୍ ପ୍ରାର୍ଥନା କରୁଛି । ସେ ତାର ବାର୍ତ୍ତା ଅନ୍ୟ କାହାରିକୁ ଜଣାଇବ ନାହିଁ ।

କୋୟେଲ୍ ଥରେ ଏହି ଅଶ୍ୱାରୋହୀକୁ ଫତେପୁରରେ ଦେଖିଥିଲା ।

ମୁଁ ମୋ କକ୍ଷର ସକଳ ପ୍ରଦୀପ ଜଳାଇ ଦେବାକୁ କହିଲି; ଆନନ୍ଦର ଉଚ୍ଛ୍ୱାସରେ ମୋ ହୃଦୟ ସ୍ପନ୍ଦିତ ହୋଇଉଠିଲା ।

ଅଶ୍ୱାରୋହୀ ସୈନ୍ୟ ଅନ୍ଧକାରରେ ଅଗ୍ରସର ହେଉଥିଲା । ତାର ଘନ ଉଷ୍ଣ ନିଃଶ୍ୱାସ ଅନୁଭବ କରି ପାରୁଥିଲି । କ୍ଷତ ସ୍ଥାନସବୁ ରକ୍ତ ଉତ୍ସାରିତ । ନତଜାନୁ ହୋଇ ସେ ଉପବେଶନ କଲା । ମୁଁ ତାର କ୍ଷତସ୍ଥାନ ପରିଷ୍କାର କରିଦେଲି, ସତେ ବା ସେ ମୋର ପ୍ରିୟ ବନ୍ଧୁ । ତା'ପରେ ଦେଖିଲି, ତା ହସ୍ତରେ ଅଛି ଏକ ମୁକ୍ତାହାର, ଶୁଭ୍ର, ସ୍ୱଳ୍ପ ରକ୍ତାଭ । ଅନେକ କ୍ଷଣ ପରେ ସେ କଥା କହିଲା । କି ଭାଷାରେ ମୁଁ ଶବ୍ଦର ପ୍ରତିଧ୍ୱନି କରିବି ? ସେ ଯେପରି ମୂର୍ଚ୍ଛାବେଗରେ ଅସଂଲଗ୍ନ କଥା କହୁଥିଲା । ସେ ଶବ୍ଦସବୁର ସାରାଂଶ ହିଁ ମୁଁ ଲେଖୁଛି—

ଯେତେବେଳେ ଦାରାଙ୍କର ସହସ୍ର ସହସ୍ର ଉତ୍ସାହୀ ସୈନ୍ୟ ଶତ୍ରୁର ଅଗ୍ନିବର୍ଷଣ ସମ୍ମୁଖରେ ପଳାୟମାନ, ବୁନ୍ଦୀରାଜ ତାଙ୍କ ଉତ୍କୃଷ୍ଟ ସୈନ୍ୟଦଳ ନେଇ ନଜବତ୍ ଖାଁଙ୍କ ଅଶ୍ୱାରୋହୀଙ୍କୁ ଆକ୍ରମଣ କରି ମୁରାଦଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ତା'ପରେ ନିଜ ଅନୁଚରଗଣଙ୍କ ନିକଟକୁ ଫେରି ଉଚ୍ଚସ୍ୱରରେ କହିଲେ, "ପଳାତକର ଜୀବନ ଅଭିଶପ୍ତ । ମୋର କ୍ଷାତ୍ରଧର୍ମ ଶାସନ ଅନୁସାରେ ମୁଁ ଯୁଦ୍ଧକ୍ଷେତ୍ରରେ ଶୃଙ୍ଖଳିତ । ଜୟଲାଭ ନ କରି ମୁଁ ଏ ଯୁଦ୍ଧକ୍ଷେତ୍ର ତ୍ୟାଗ କରି ନ ପାରେ ।" ସୈନ୍ୟମାନଙ୍କୁ ଉତ୍ସାହିତ କରି, ମୃତ୍ୟୁକୁ ଉପେକ୍ଷା କରି, ସେ ଅଗ୍ରସର ହେଲେ । କମାଣ ଗୋଳା ତାଙ୍କ ହସ୍ତୀକୁ ଆହତ କଲା, ହସ୍ତୀ ପଳାୟନ କଲା । ଛତ୍ରଶାଳ ହସ୍ତୀ ପୃଷ୍ଠରୁ ଅବତରଣ କରି ଅଶ୍ୱ ପାଇଁ ଆହ୍ୱାନ ଜଣାଇ କହିଲେ, "ମୋର ହସ୍ତୀ ଶତ୍ରୁର ପଶ୍ଚାତ୍‌ମୁଖ ; କିନ୍ତୁ ହସ୍ତୀର ଅଧୀଶ୍ୱର କେବେ ପଶ୍ଚାତ୍‌ପଦ ହେବ

ନାହିଁ ।" ସୈନ୍ୟଗଣଙ୍କ ବ୍ୟୂହ ଭେଦ କରି ସେ ମୁରାଦଙ୍କୁ ଲକ୍ଷ୍ୟ କରି ବର୍ଚ୍ଛା ଉତ୍ତୋଳନ କଲେ । ଏପରି ସମୟରେ ଗୋଟିଏ ଗୁଳି ତାଙ୍କ ଲଲାଟ ବିଦ୍ଧ କଲା । * * *

ମୁଁ ବସିଥିଲି ନୀରବ ନିସ୍ପନ୍ଦ । ସମ୍ବାଦ ବାହକର ଗୋଟିଏ ଶବ୍ଦ ବି ଛାଡ଼ିଦେବାକୁ ମୁଁ ପ୍ରସ୍ତୁତ ନ ଥିଲି । ଭୟ ହେଲା, ଯଦି ଉତ୍କଣ୍ଠାରୁ ହେତୁ ଏଇ ଲୋକଟିର କଥା ବନ୍ଦ ହୋଇଯାଏ । ତେବେ ତ ଛତ୍ରଶାଳଙ୍କ କାହାଣୀ ଆଉ ଶୁଣିବାକୁ ପାଇବି ନାହିଁ ! ତାର ଶୀର୍ଣ୍ଣ ମୁଖମଣ୍ଡଳରୁ ଚକ୍ଷୁର ଉଜ୍ଜ୍ୱଳ ଦୀପ୍ତି ତଥାପି ନିଷ୍ପ୍ରଭ ହୋଇ ନ ଥିଲା । ମୁଁ ପୁଣି ଶୁଣିଲି, "ବୁନ୍ଦୀରାଜ୍ୟର କନିଷ୍ଠ ପୁତ୍ର ପିତାଙ୍କ ମୃତ୍ୟୁ ପରେ ଶତ୍ରୁକୁ ଭୀଷଣ ଆକ୍ରମଣ କରି ମୃତ୍ୟୁବରଣ କରିଥିଲେ ! ଉଜ୍ଜୟିନୀ ଓ ଢୋଲପୁରର ବାଉଜଣ ରାଜକୁମାର ଏହିପରି ସମ୍ରାଟଙ୍କ ପାଇଁ ପ୍ରାଣ ବିସର୍ଜନ ଦେଇଥିଲେ......... ।

ବର୍ତ୍ତମାନ ଆଉରଙ୍ଗଜେବ ଶାହଜାଦା ଦାରାଙ୍କ ପରିତ୍ୟକ୍ତ କୁଙ୍କୁମ ବର୍ଣ୍ଣ ଶିବିର ପରିତ୍ୟାଗ କରି ପାରିଲେ । କୁଙ୍କୁମ ରାଗ—କୁଙ୍କୁମ—କୁଙ୍କୁମ —ରକ୍ତ, ରକ୍ତ, ରକ୍ତ, * * *

ସେ ଲୋକଟି ମୁକ୍ତାହାରଟିରୁ ତାର ଉଷ୍ଣୀଷର ଅଞ୍ଚଳରେ ରକ୍ତ-କଣିକା ପୋଛିଦେଲା । ତା'ପରେ କହିଲା, "ଏକ ବନ୍ଧୁକର ପଶ୍ଚାତ୍ ଭାଗରେ ମୋତେ କେହି ଯେପରି ଆଘାତ କଲା । ମୁଁ ମୃତ ପରି ଯୁଦ୍ଧ କ୍ଷେତ୍ରରେ ପଡ଼ିଥିଲି । ଶତ୍ରୁ ଗଲାପରେ ମୁଁ ମୋ ପ୍ରଭୁଙ୍କ ନିକଟକୁ ଅଗ୍ରସର ହେଲି ।

"ମୋ ପ୍ରଭୁଙ୍କୁ ସେତେବେଳଯାଏଁ ସେମାନେ ଦେଖି ନ ଥିଲେ । ତାଙ୍କ ପବିତ୍ର ଦେହ ଢୋଲପୁର ନଗରକୁ ଦାହ କରିବା ପାଇଁ ନିଆଯାଇଛି । ମୁଁ ତାଙ୍କ ମୁକ୍ତାହାର ଦେଖି ଭାବିଲି, ବୋଧହୁଏ, ସମ୍ରାଟ ନନ୍ଦିନୀ ତାଙ୍କ ପିତାଙ୍କ ସର୍ବଶ୍ରେଷ୍ଠ ଓ ବିଶ୍ୱାସୀ ସାମନ୍ତଙ୍କ ସ୍ମୃତି ଚିହ୍ନ ସ୍ୱରୂପ ଏଇ ମୁକ୍ତା-ହାର ଗ୍ରହଣ କରିବେ ।"

ମୁଁ ମୋର ଉଭୟ ହସ୍ତ ପ୍ରସାରିତ କରି ସେଇ ପବିତ୍ର ଅର୍ଘ୍ୟ ଗ୍ରହଣ କଲି । ମୋ ଅବଗୁଣ୍ଠନ ଅନ୍ତରାଳରେ ସେ ଦାନ ମୋ ବକ୍ଷପାର୍ଶ୍ୱରେ ଲୁଚିଇ ରଖିଲି । ତା'ପରେ ପଚାରିଲି, "କାହାର

ଆଘାତରେ ତୁମ ପ୍ରଭୁଙ୍କ ମୃତ୍ୟୁ ହୋଇଛି ?" ସେ ଚାରିଆଡ଼କୁ ଅନାଇଲା, ଆଉ କୌଣସି ବ୍ୟକ୍ତି ସେ କକ୍ଷରେ ଅଛି କି ନାହିଁ— ତାପରେ ମୃଦୁ କଣ୍ଠରେ କହିଲା— "ହୁଏତ ନିଶ୍ଚିତ ଭାବେ ଏ ଉତ୍ତର ଦେବା ସମ୍ଭବ ନୁହେଁ । ଅନେକଙ୍କ ଧାରଣା, ମୁରାଦଙ୍କ ଗୁଳିରେ ତାଙ୍କର ମୃତ୍ୟୁ ହୋଇଛି । ମୋ'ର ନିକଟ ଦେଇ ଗୁଳି ବାହାରିଗଲା । ମୋର ବିଶ୍ୱାସ, ନଜବତ୍ ଖାଁଙ୍କ ଗୁଳିରେ ତାଙ୍କ ମୃତ୍ୟୁ ହୋଇଛି ।"

ସେ ମୋର ଖୁବ୍ ନିକଟକୁ ଆସି କହିଲା, "ବାଦ୍‌ଶାହ ବେଗମ୍, ମନେହୁଏ, ଆସନ୍ତାକାଲି ମୁଁ ଆଉ ଏ ପୃଥିବୀରେ ନ ଥିବି । ଆପଣଙ୍କୁ ଗୋଟିଏ ଗୋପନ କଥା କହିଯିବି । ଯେତେବେଳେ ଆଉରଙ୍ଗଜେବଙ୍କ ସହିତ ଯୁଦ୍ଧ କରୁଥିଲି, ପ୍ରଭୁ ଦିନେ ମୋତେ ଗୋଟିଏ ସମ୍ବାଦ ନେଇ ଆଉରଙ୍ଗଜେବଙ୍କ ଶିବିରକୁ ପ୍ରେରଣ କରିଥିଲେ । ପ୍ରହରୀ ମୋତେ ଅପେକ୍ଷା କରିବା ପାଇଁ କହିଲା— ମୁଁ ଭିତରକୁ ପ୍ରବେଶ କରି ଦେଖିଲି, ଆଉରଙ୍ଗଜେବ ଏବଂ ନଜବତ୍ ଖାଁ ଆଲୋଚନା କରୁଛନ୍ତି ··· ।

"ନଜବତ୍ ଖାଁଙ୍କ କଥାର ଅର୍ଥ ମୁଁ ବୁଝିପାରି ନାହିଁ । ନଜବତ୍ ଖାଁ କହୁଥିଲେ, ବାଦ୍‌ଶାହଙ୍କ ଅଭିପ୍ରାୟ ନୁହେଁ, ସେ ତାଙ୍କ କନ୍ୟା ଜାହାନାରାଙ୍କୁ ବଲ୍‌କ୍ ରାଜବଂଶ ସଙ୍ଗେ ବିବାହ ଦେବେ । ସେ ବୁନ୍ଦୀରାଜ୍ୟର, ପୌତ୍ତଳିକ ମନ୍ଦିରର ପୂଜାରିଣୀ ରୂପେ ସ୍ୱୀକୃତ ହେବେ କି ? ଆଉରଙ୍ଗଜେବ ଉତ୍ତର ଦେଲେ, ଏଇ କାର୍ଯ୍ୟ କରିବାକୁ ହେଲେ ଧର୍ମଦ୍ରୋହୀ ଇସ୍‌ଲାମ୍ ବିରୁଦ୍ଧାଚାରୀଙ୍କୁ ଦିଲ୍ଲୀ ସିଂହାସନରେ ଆରୋହଣ କରିବାକୁ ହେବ । ଅବଶ୍ୟ ଆଲ୍ଲାହ୍ ଏଇ ଅନାଚାରର ନିବାରଣ କରିବେ ।' ମୁଁ ମୋ ପ୍ରଭୁଙ୍କୁ ଏଇ ଆଲୋଚନା ବିଷୟ କହିଥିଲି । ଏହାପରେ ମୁଁ ଲକ୍ଷ୍ୟ କରିଥିଲି, ନଜବତ୍ ଖାଁଙ୍କ ସଙ୍ଗେ ମହାରାଜାଙ୍କ ସାକ୍ଷାତ୍ ହେଲେ ସେମାନେ ପରସ୍ପର ସହିତ ସାଦରରେ ସମ୍ଭାଷଣ ବିନିମୟ କରୁନାହାନ୍ତି ।"

ଆଜି ନୂତନ ଭାବରେ ଛତ୍ରଶାଲଙ୍କୁ ଅତି ଆପଣାର ମନେ ହେଲା, ଯେପରି ମନେ ହୋଇଥିଲା ସେଦିନ ସନ୍ଧ୍ୟା ସମୟରେ,

ତାଜମହଲ ପାର୍ଶ୍ୱରେ । ଅନୁଭବ କଲି, ସୁଣା ଛତ୍ରଶାଳ ମୋତେ କେବେ ତ୍ୟାଗ କରିବେ ନାହିଁ, କରିପାରିବେ ନାହିଁ ।

ସେ ଆହତ ସୈନ୍ୟକୁ ସେହିଦନ ଦୁର୍ଗରେ ଅବସ୍ଥାନ କରିବା ପାଇଁ ଅନୁରୋଧ କଲି ଏବଂ ତାକୁ ପ୍ରତିଶ୍ରୁତି ଦେଲି ଯେ, ତାର କ୍ଷତସ୍ଥାନ ସୁଚିକିତ୍ସିତ ହେବ । ପ୍ରଭୁଭକ୍ତ ସୈନିକ ଉତ୍ତର ଦେଲା, "ବର୍ତ୍ତମାନ ମୁଁ ମୋ ପ୍ରଭୁଙ୍କୁ ଅନୁସରଣ କରିବି ।"

ତା'ପରେ ସେ ଫେରିଗଲା । ତା ଓଠରେ ପ୍ରସନ୍ନତାର ହାସ୍ୟରେଖା । ଫେରିଯିବା ସମୟରେ ଆକାଶ ଅଭିମୁଖେ ଦୃଷ୍ଟିକ୍ଷେପ କରି ସେ ଆବେଗ ଜଡ଼ିତ କଣ୍ଠରେ କହି ଉଠିଲା,— "ବେଗମ ସାହେବ, ମୁଁ ଆଜି ଭବିଷ୍ୟତ୍‌ବାଣୀ କରି ଯାଉଛି, ଏଇ ଶେଷଥର; ଆଉ କେବେ ରାଜସ୍ଥାନର ସନ୍ତାନ ମୋଗଲ ପତାକାତଳେ ସମବେତ-ହୋଇ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେବେ ନାହିଁ ।"

ସୈନ୍ୟଟି ଅନ୍ତର୍ଦ୍ଧାନ ହେବା ସଙ୍ଗେ ସଙ୍ଗେ କୋଯେଲ୍ ମୋତେ ସମ୍ବାଦ ଦେଲା, "ଅଲଲ୍ଲା ଖାଁଙ୍କ ପତ୍ନୀ ଦ୍ୱାରଦେଶରେ ପାଲିଙ୍କିରେ ଅପେକ୍ଷା କରିଛନ୍ତି ।" ଭଗବାନ୍ ଜାଣନ୍ତି, ଏଇ ନାରୀକୁ କିଏ ଶାନ୍ତି ଦେବ । ଏଇ ନାରୀର ଉପସ୍ଥିତି ମୋଗଲ ସମ୍ରାଟଙ୍କର ଏବଂ ସାମ୍ରାଜ୍ୟର କି କ୍ଷତି ନ କରିଛି ? ତଥାପି ତାହାକୁ ସାଦର ସମ୍ଭାଷଣ ଜଣାଇଲି । ସେ ଅନେକ କ୍ଷଣ ବିଳାପ କଲା । ତାର ସ୍ୱାମୀ ଶୀଘ୍ର ବିଜେତା ଆଉରଙ୍ଗଜେବଙ୍କ ଶିବିରରୁ ପ୍ରତ୍ୟାବର୍ତ୍ତନ କରିବେ । କିନ୍ତୁ ସେ ସମ୍ରାଟ୍ ଏବଂ ସମ୍ରାଟ୍-ଦୁହିତାଙ୍କ ପରି ଶୋକ ଅନୁଭବ କରୁଛି । ତା'ପରେ ସେ ମୃଦୁକଣ୍ଠରେ କହିଲା, "ମନେହୁଏ, ଅଲଲ୍ଲା ଖାଁଙ୍କ ପରାମର୍ଶରେ ହିଁ ଶାହାଜାଦା ଦାରା ହସ୍ତୀପୃଷ୍ଠରୁ ଅବତରଣ କରିଥିଲେ ଏବଂ ସେହି କାରଣରୁ ସୈନ୍ୟଦଳ ମଧ୍ୟରେ ବିଭ୍ରାନ୍ତି ସୃଷ୍ଟି ହୋଇଥିଲା । ଅଲଲ୍ଲା ଖାଁ କହିଥିଲେ, ଆଉରଙ୍ଗ-ଜେବଙ୍କୁ ନଜବତ୍ ଖାଁଙ୍କ ସୈନ୍ୟ ସହ ବନ୍ଦୀ କରିବା ସହଜ ହେବ । ଏଇ ଧାରଣା ଦେଇ ତାର ସ୍ୱାମୀ ଶାହଜାଦା ଦାରାଙ୍କୁ ପ୍ରତାରିତ କରିଥିଲେ । ଦାରା ତାଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରିବା ପୂର୍ବରୁ ଅଲଲ୍ଲା ଖାଁ ଶତ୍ରୁ ଶିବିରରେ ଯୋଗ ଦେଇ ସାରିଥିଲେ ।"

ମୁଁ ଏକାକନୀ ଯମୁନା ନିକଟସ୍ଥ ବାରନ୍ଦାକୁ ଆସିଲି । ଏକ ସ୍ତମ୍ଭ ଉପରେ ଭରା ଦେଇ ଠିଆ ହେଲି । ମନେ ହେଲା, ହୁଏତ ଏଇ ସ୍ତମ୍ଭ ହିଁ ଜୀବନର ଶେଷ ଅବଲମ୍ବନ । ସେଇ ଅଦୃଶ୍ୟ କଠିନ ହସ୍ତ ତଥାପି ମୋର ହୃତ୍‌ପିଣ୍ଡ ପେଷଣ କରୁଥିଲା । ଅବଶ୍ୟ ଏଠାରେ ଟିକଏ ସହଜରେ ନିଃଶ୍ୱାସ ନେଇପାରିଲି ।

ଦୁଃଖରେ, ଘୃଣାରେ, ପ୍ରତିଶୋଧର ଇଚ୍ଛାରେ ମୋ ରକ୍ତ ଘନୀଭୂତ ହୋଇ ଯାଉଥିଲା । ମୋର ବ୍ୟଥାର ଭାର ଅସହ୍ୟ ମନେ ହେଲା । ହଠାତ୍ ମୁଁ ଏକ ଇନ୍ଦ୍ରିୟାତୀତ ଅଭିଜ୍ଞତା ଲାଭ କଲି । ମୋର ଏଇ ସ୍ଥୂଳ ଦେହ ଯେପରି ସୂକ୍ଷ୍ମ ଦେହରେ ପରିଣତ ହେଲା ! ଅନୁଭବ କଲି, ମୁଁ ଯେପରି ପଞ୍ଚଭୂତ ସଙ୍ଗେ ମିଶି ଯାଉଛି ! ମୋ ଦେହ ଯେପରି ବାୟୁ, ଜଳ, ଅଗ୍ନିରେ ପରିଣତ ହେଲା, ମୁଁ ଯେପରି ରକ୍ତ ମାଂସର ଶରୀରରୁ ବିମୁକ୍ତ ହୋଇଗଲି ! ମୋ ପାଦତଳେ ନଦୀର ଜଳଧାରା ବହି ଚାଲିଛି । ଯମୁନାର କଳଧ୍ୱନି ଅତି ଶାନ୍ତ, ମୃଦୁ ଗତିରେ ମୋ କର୍ଣ୍ଣରନ୍ଧ୍ରରେ ପ୍ରବେଶ କରୁଛି—ମୋ ଶିରାରେ ଶିରାରେ ପ୍ରବେଶ କରୁଛି ସେଇ କଳଧ୍ୱନି । କ୍ରମଶଃ ସେଇ କଳତାନ ଏକ ଅପୂର୍ବ ସଂଗୀତରେ ପରିଣତ ହେଲା, ଯେପରି ମୁଁ ଦିଲ୍ଲୀର ନହବତ୍ ଖାନାରେ ଶୁଣିଥିଲି— ଗୋଟିଏ ମାତ୍ର ମଣିଷର ବାକ୍ୟଧ୍ୱନି ଓ ବହୁ ମଣିଷଙ୍କ କ୍ରନ୍ଦନ । ଯମୁନା ମୋତେ ବହନ କରି ଦୂରକୁ ଦୂରକୁ ଚାଲିଛି—ବହୁ ଦୂରକୁ, ଏଇ ଜୀବନ ନଦୀର ତୀରରୁ ଆହୁରି ଦୂରକୁ । ସେଇ ଯମୁନାର ଜଳଧାରା ପୃଥିବୀର ସମସ୍ତ ପାପ ଓ ଲଜ୍ଜା ନିର୍ମଳ କରି ଦେଉଛି । ଅନ୍ତର୍ଦୃଷ୍ଟିରେ ଦେଖିଲି, ସମସ୍ତ ଜଗତ୍ ଆଲୋକମୟ । ମୁଁ ଆଉ ଇହଜଗତ୍‌ରେ ନାହିଁ । ମୁଁ ଆଜି ବହୁ ଦୂରରେ ପହଞ୍ଚିଛି, ମୋର ସ୍ୱପ୍ନମୟ ସତ୍ତା ଆହୂତ ହୋଇଛି ।

ମୁଁ ମୋ ଜୀବନ-କାହାଣୀ ମୋତେ ହିଁ କହିବାକୁ ଚାହିଁଥିଲି । ସେ କାହାଣୀ ଶେଷ ହୋଇଛି ; କିନ୍ତୁ ମୋ ଦୁଃଖ ନିଃଶେଷ ହୋଇ ନାହିଁ । ମୋତେ ଯେପରି କିଏ ବାଧ୍ୟ କରି ଲେଖାଉଛି । ମୁଁ ଯେପରି ମୋ ଛଡ଼ା ଆଉ କାହା ସମ୍ମୁଖରେ ଏଇ କାହାଣୀ କହିଚାଲିଛି ।

ବିସ୍ମୃତିକୁ ହିଁ ଉତ୍ସର୍ଗ କରିଯିବି ଏଇ କାହାଣୀ । ସେଇ ବିସ୍ମୃତି ହିଁ ସ୍ମୃତିର ବାହନ ହେବ । ସାମୁଗଢ଼ ଯୁଦ୍ଧର ପରଦିନ ରାତିରେ

କୋଷ୍ଟେଲ୍ ମୋତେ ଦେଖିବାକୁ ଯାଇଥିଲା, ବାରନ୍ଦାର ଗୋଟିଏ ସ୍ତମ୍ଭ ପାର୍ଶ୍ୱରେ ବାହୁ ନିବଦ୍ଧ ଶରୀର ସୁପ୍ତିମଗ୍ନ ଅବସ୍ଥାରେ । ସେ ମୋତେ ଜାଗ୍ରତ ନ କରି ମୋ ଚାରିପାର୍ଶ୍ୱରେ ଗୋଟିଏ ଆସ୍ତରଣ ବେଢ଼ାଇ ଦେଇଥିଲା । ପ୍ରତ୍ୟୁଷରେ ନିଦ୍ରାଭଙ୍ଗ ପରେ ମୁଁ ଅନୁଭବ କଲି, ଯେପରି ମୋର ସମସ୍ତ ଶରୀର ରୂପାନ୍ତରିତ ହୋଇଯାଇଛି ! ରାତ୍ରିର ତୃତୀୟ ଯାମରେ ମୋର ଏକ ଅପୂର୍ବ ଅନୁଭୂତି ହୋଇଥିଲା । ସେଇ ଅନୁଭୂତି ଆଜି ମୋତେ ସକଳ ଦୁଃଖ ସହ୍ୟ କରିବା ପାଇଁ ସାମର୍ଥ୍ୟ ଦେଇଛି ।

ଆଜି ମୋର ମନେ ହେଉଛି, ଯେପରି ଭାରତର ଗୃହ୍‌ତାଇ ବଂଶ ପ୍ରେତମାନଙ୍କ ସମଷ୍ଟି ମାତ୍ର—ସେମାନେ ପୃଥିବୀକୁ ଆସିଛନ୍ତି ପ୍ରତିହିଂସା ଗ୍ରହଣ ଉଦ୍ଦେଶ୍ୟରେ । ସେଇ ଫକୀର ହିଁ ତ କହିଥିଲେ, ଆଉରଙ୍ଗଜେବ ତୈମୁରବଂଶ ଧ୍ୱଂସ କରିବାପାଇଁ ଉଦ୍ଦିଷ୍ଟ ହୋଇଛନ୍ତି ଏବଂ ଏଇ ଯୁଦ୍ଧ ପରେ ସେଇ ଭବିଷ୍ୟତ୍‌ବାଣୀ ସଫଳ ହୋଇଛି ।

ଦାରାଙ୍କ ସୈନ୍ୟଦଳ ପଳାୟନ କରିଛନ୍ତି । ଅଲଲ୍ଲା ଖାଁ ମହିଷ ଓ ପଶୁଙ୍କର ମୃତ ଦେହ ଉପର ଦେଇ ପଥ ଅତିକ୍ରମ କରି ଆଉରଙ୍ଗଜେବଙ୍କ ଶିବିର ଅଭିମୁଖେ ଆଗେଇ ଚାଲିଛନ୍ତି । ବିଜୟ ଘୋଷଣା କରି ଧାମାମା ଧ୍ୱନିଦ୍ୱାରା ତାଙ୍କୁ ଅଭ୍ୟର୍ଥନା କରାଗଲା । ଅଲଲ୍ଲା ଖାଁ ଓ ମୁରାଦଙ୍କ ଯୌଥବାହିନୀ ଆଉରଙ୍ଗଜେବଙ୍କୁ ବେଷ୍ଟନ କରି ଅଭିବାଦନ ଜଣାଇଲେ । ଆଉରଙ୍ଗଜେବ ମୁରାଦଙ୍କୁ ଅଭ୍ୟର୍ଥନା କଲେ—ସତେ ଯେପରି ମୁରାଦ ଭାରତର ଅଧୀଶ୍ୱର ! ତା'ପରେ ଦୁଇ ରାଜଭ୍ରାତା ଦା'ରା ଶୁକୋଙ୍କ ପରିତ୍ୟକ୍ତ ଶିବିରରେ ଉପସ୍ଥିତ ହେଲେ । ଆଉରଙ୍ଗଜେବ ବଶ୍ୟତା ସ୍ୱୀକାରର ସମସ୍ତ ଆନୁସଙ୍ଗିକ ରାଜକୀୟ ପ୍ରଥା ଅନୁଯାୟୀ ମୁରାଦଙ୍କୁ ଅଭ୍ୟର୍ଥନା କଲେ ଓ କହିଲେ, "ଆଜି ତୁମ ରାଜତ୍ୱର ପ୍ରଥମ ଦିନ ।" ମୁରାଦ୍ ଏ ସମସ୍ତ ବିଶ୍ୱାସ କରୁଥିଲେ । ଆଉରଙ୍ଗଜେବ କ'ଣ କୋରାଣ ସ୍ପର୍ଶ କରି ଶପଥ କରି ନ ଥିଲେ ଯେ, ସେ ମୁରାଦଙ୍କୁ ସିଂହାସନରେ ଅଧିଷ୍ଠିତ କରିବେ ? କିନ୍ତୁ ପ୍ରତ୍ୟେକ ବୁଦ୍ଧିମାନ୍ ବ୍ୟକ୍ତି ଜାଣନ୍ତି ଯେ; ଆଉରଙ୍ଗଜେବ ଯଥା ସମୟରେ ଦରବେଶର ଆବରଣ ପରିତ୍ୟାଗ କରି ସମ୍ରାଟର ପରିଚ୍ଛଦ ଗ୍ରହଣ କରନ୍ତି । ନିଜ ଉଦ୍ଦେଶ୍ୟ ସାଧନ ପାଇଁ ଆଉରଙ୍ଗଜେବ ଦିବାରାତ୍ର ପରିଶ୍ରମ କରିପାରନ୍ତି ।

ଏହି କାର୍ଯ୍ୟରେ ଆଉରେଙ୍ଗଜେବ ଶାୟେସ୍ତା ଖାଁଙ୍କଠାରୁ ଯଥେଷ୍ଟ ସାହାଯ୍ୟ ପାଇଥିଲେ । ସେ ସମ୍ରାଟଙ୍କୁ ଯଥେଷ୍ଟ ଘୃଣା କରନ୍ତି, ଅଥଚ ସେ ହିଁ ସମ୍ରାଟଙ୍କ ପ୍ରଧାନ ଅମୀର । ଆଉରଙ୍ଗଜେବ ଏବଂ ଶାୟେସ୍ତା ଖାଁ ରାଜପ୍ରତିନିଧି ତଥା ଶାସନକର୍ତ୍ତାମାନଙ୍କୁ କେତେବେଳେ ଭୟ, କେତେବେଳେ ବା ପୁରସ୍କାରର ଲୋଭ ଦେଖାଇ ଦାରାଙ୍କୁ ଅନୁସରଣ କରିବା ପାଇଁ ଆଦେଶ ଦେଇଥିଲେ । ଦାରା ଯୁଦ୍ଧକ୍ଷେତ୍ରରୁ ଦିଲ୍ଲୀ ଅଭିମୁଖେ ପଳାୟନ କରିଥିଲେ । ସୁଲେମାନ ଶୁକୋଙ୍କ ସେନାଧ୍ୟକ୍ଷଙ୍କୁ ପତ୍ର ଲେଖା ହୋଇଥିଲା, ଯେପରି ସେ ସୁଲେମାନ ଶୁକୋଙ୍କୁ ଆଉରଙ୍ଗଜେବଙ୍କ ହସ୍ତରେ ସମର୍ପଣ କରନ୍ତି ।

ଯୁଦ୍ଧର କେତେକ ଦିନ ପରେ ସମ୍ରାଟଙ୍କ ବିଶ୍ୱାସଘାତକ ସୈନ୍ୟଗଣ ଆଗ୍ରାର ଅଦୂରସ୍ଥ ଏକ ବିଖ୍ୟାତ ଉଦ୍ୟାନରେ ସମବେତ ହେଲେ । ସେଇଠାରୁ ଆଉରଙ୍ଗଜେବ ସମ୍ରାଟଙ୍କ ନିକଟକୁ ଦୂତ ପ୍ରେରଣ କଲେ । ଆଉରଙ୍ଗଜେବ ଛଳନା କରି ଲେଖିଥିଲେ, "ମୁଁ ଆପଣଙ୍କର ଆଜ୍ଞାଧୀନ ପୁତ୍ର । ମୋର ଏକମାତ୍ର ଉଦ୍ଦେଶ୍ୟ, ଦାରା ଶୁକୋଙ୍କ ଷଡ଼ଯନ୍ତ୍ରରୁ ମୋ ପିତାଙ୍କୁ ମୁକ୍ତ କରିବା ।" ସମ୍ରାଟ ମଧ୍ୟ ସେହିପରି ଉତ୍ତର ଦେଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ଆଉରଙ୍ଗଜେବଙ୍କୁ ପ୍ରତାରଣା କରିବେ । ଆମେ ଯେଉଁ ସାଂଘାତିକ ପରିସ୍ଥିତିରେ ପଡିଛୁ, ସେଥିରୁ କ'ଣ ଉଦ୍ଧାର ପାଇବା ସମ୍ଭବ ? ମିଷ୍ଟବାକ୍ୟରେ ଆଉରେଙ୍ଗଜେବ ସମସ୍ତ ସେନାନାୟକ ଓ ଅମୀରଙ୍କୁ ନିଜ ଦଳଭୁକ୍ତ କରିଥିଲେ ; କିନ୍ତୁ ନେତୃତ୍ୱ ବିନା ପ୍ରଜାଗଣ ଆମକୁ କିପରି ସାହାଯ୍ୟ କରିବେ ? ମୁଁ କେବଳ ଚିନ୍ତା କରିବାକୁ ଲାଗିଲି । କେବଳ ଚିନ୍ତା······

ତା'ପରେ ମୋ ପିତା ଆଉରଙ୍ଗଜେବଙ୍କୁ ସାକ୍ଷାତ୍ କରିବା ପାଇଁ ଏକ ପତ୍ର ଲେଖିଲେ । କାରଣ, ଆଉରଙ୍ଗଜେବଙ୍କ ଚିଠିରେ ଥିଲା ଯେ ସେ ସମ୍ରାଟଙ୍କୁ ସାକ୍ଷାତ୍ କରିବାକୁ ଚାହାନ୍ତି । ସମ୍ରାଟ କ'ଣ ଚାହାନ୍ତି, କିଏ ଜାଣେ ? ଆଉରଙ୍ଗଜେବ ଜାଣନ୍ତି, ସମ୍ରାଟ ଦେହରକ୍ଷୀ ରୂପେ ତାତାର ନାରୀବାହିନୀ ନିଯୁକ୍ତ କରିଥିଲେ । ହୁଏତ ସେଇ ବାହିନୀକୁ ହସ୍ତଗତ କରିବା ଆଉରଙ୍ଗଜେବଙ୍କ ଉଦ୍ଦେଶ୍ୟ ଥିଲା । ସୁତରାଂ, ସେ ପିତାଙ୍କ ସଙ୍ଗେ ସାକ୍ଷାତ୍ କରିବାପାଇଁ ଆସିଲେ ନାହିଁ । ପ୍ରତିଦିନ ସେ ପ୍ରଚାର କଲେ ଯେ,

ସେ ସାକ୍ଷାତ୍ ପାଇଁ ଆସୁଛନ୍ତି ; କିନ୍ତୁ ପ୍ରତିଦ୍ୱନ୍ଦ୍ୱୀ ସେ ସମ୍ପୂର୍ଣ୍ଣ ଭିନ୍ନ କାର୍ଯ୍ୟପାଇଁ ପ୍ରସ୍ତୁତ ହେଉଥିଲେ । ହଠାତ୍ ଦିନେ ଆଉରଙ୍ଗଜେବ ତାଙ୍କର ସମସ୍ତ ସୈନ୍ୟସହ ତାଜମହଲର ଅପର ପାର୍ଶ୍ୱରେ ଶିବିର ସ୍ଥାପନ କଲେ । ନଗରର ସମସ୍ତ ବିଶ୍ୱାସଘାତକ ଆମୀନ୍ ଖାଁଙ୍କ ନେତୃତ୍ୱରେ ଆଉରଙ୍ଗଜେବଙ୍କୁ ସାଦର ସମ୍ଭାଷଣ କରିବା ପାଇଁ ଉପସ୍ଥିତ ହେଲେ । ମୁଖରେ ସୁମିଷ୍ଟ ଅଭିନନ୍ଦନ, ହସ୍ତରେ ମୂଲ୍ୟବାନ୍ ଉପଢୌକନ ।

ଏକମାତ୍ର ବିଶ୍ୱାସୀ ଅମୀରଙ୍କୁ ସଙ୍ଗରେ ନେଇ ମୋର ପିତା ସମସ୍ତ ଦୁର୍ଗ ପରୀକ୍ଷା କରି କମାଣରେ ଅଗ୍ନିସଂଯୋଗର ଆଦେଶ ଦେଲେ । କାରଣ ଆଉରଙ୍ଗଜେବଙ୍କ ସୈନ୍ୟ ନଗର ଅଭିମୁଖେ ଅଗ୍ରସର ହେଉଥିଲେ । ଏହା ମଧ୍ୟରେ ଆଉରଙ୍ଗଜେବ ସମସ୍ତ ସହର ଅଧିକାର କରି, ଦାରା ଶୁକୋଙ୍କ ଶୂନ୍ୟ ଆବାସରେ ପ୍ରବେଶ କରିଥିଲେ । ସମସ୍ତ ଗୋଲନ୍ଦାଜ ବାହିନୀକୁ ଉତ୍କୋଚ ଦ୍ୱାରା ବଶୀଭୂତ କରାଗଲା । ତୀରର ଫଳକରେ ସଂଯୁକ୍ତ ଗୋଟିଏ ପତ୍ର ପ୍ରାସାଦ ଅଭ୍ୟନ୍ତରକୁ ନିକ୍ଷିପ୍ତ କରାଗଲା । ପରିଣାମରେ ସୈନ୍ୟ ରଜ୍ଜୁ ସାହାଯ୍ୟରେ ପ୍ରାଚୀର ଅତିକ୍ରମ କରି ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ସମସ୍ତ ଦୁର୍ଗ ଆଉରଙ୍ଗଜେବଙ୍କ ଅଧୀନତା ସ୍ୱୀକାର କଲା । ଆମେ ଦୁର୍ଗଠାରୁ ବିଚ୍ଛିନ୍ନ ହୋଇପଡ଼ିଲୁ । ଆଉରଙ୍ଗଜେବଙ୍କ ପୁତ୍ର ସୁଲ୍‌ତାନ ମହମ୍ମଦଙ୍କ ବିନାନୁମତିରେ କୌଣସି ଖାଦ୍ୟଦ୍ରବ୍ୟ ଆମ ନିକଟରେ ପହଞ୍ଚି ପାରୁ ନ ଥିଲା । କ୍ଷୁଧାତୃଷାପୀଡ଼ିତ ପ୍ରହରୀ ଆମ ପ୍ରତି କର୍ତ୍ତବ୍ୟ ସମ୍ପାଦନରେ ଅକ୍ଷମ ହୋଇପଡ଼ିଲା । ପରିଶେଷରେ ସମ୍ରାଟ ଆତ୍ମସମର୍ପଣ କରିବାକୁ ବାଧ୍ୟହେଲେ । ସୁଲତାନ ମହମ୍ମଦଙ୍କ ହସ୍ତରେ ଥିଲା ସମସ୍ତ ଦୁର୍ଗର ଚାବି । ମୁଁ ଆଜି ବି ଦେଖିପାରୁଛି, ଖୋଜା ଭୃତ୍ୟଗଣ ବିରାଟ ଚାବିର ପେନ୍ଥା ନେଇ ଦିଲ୍ଲୀ ତୋରଣ ଅଭିମୁଖେ ଚାଲିଛନ୍ତି । ବର୍ତ୍ତମାନ ମଧ୍ୟ ମୁଁ ଶୁଣି ପାରୁଛି, ବଡ଼ ବଡ଼ ଚାବି ପେନ୍ଥାଗୁଡ଼ିକର ପରସ୍ପର ଆଘାତ ଦ୍ୱାରା ଝନ୍ ଝନ୍ ଶବ୍ଦ । ସେହି ଶବ୍ଦ ବହୁ ଦୂରରୁ ଆଗତ ଘଣ୍ଟାଧ୍ୱନି ପରି, ମଣିଷକୁ ବିଚାର ପାଇଁ ଆହ୍ୱାନ କରୁଥିଲା...... ।

ପୁଣି ଥରେ ମୋ ପିତା ଆଉରଙ୍ଗଜେବଙ୍କୁ ସାକ୍ଷାତ୍ ପାଇଁ ଡକାଇଲେ । ଆଉରଙ୍ଗଜେବ ପିତାଙ୍କୁ ଅନ୍ତଃପୁରରେ ଆବଦ୍ଧ କରି ସେ ପ୍ରଶ୍ନର ଉତ୍ତର ଦେଲେ । ପିତାଙ୍କ କାରାଗାର ପରିତ୍ୟାଗ କରି ନିଜ

ଅନ୍ତଃପୁରରେ ପ୍ରବେଶ ପାଇଁ ଅନୁମତି ସହ ମୋତେ ଓ ରୋଶନ୍‌ଆରାଙ୍କୁ ଆଉରଙ୍ଗଜେବ ପତ୍ର ଲେଖିଲେ । ମୁଁ ଉତ୍ତରରେ ଲେଖିଥିଲି, "ମୁଁ ସମ୍ରାଟଙ୍କ ଖିଦମତରେ ପ୍ରାଣ ବିସର୍ଜନ ଦେବି, ତଥାପି ସମ୍ରାଟଙ୍କ ରାଜ୍ୟର ଦୁଷ୍ଟଗ୍ରହ ପ୍ରତାରକଙ୍କ ଗୌରବର ଅଂଶଭାଗିନୀ ହେବ ନାହିଁ ।" କିନ୍ତୁ ମୋ ଭଉଣୀ ଦୁର୍ଗରୁ ଆଡମ୍ବର ସହକାରେ ଆଉରଙ୍ଗଜେବଙ୍କ ଅନ୍ତଃପୁରରେ ପ୍ରବେଶ କଲେ । ଆଜି ରୋଶନ୍‌ଆରାଙ୍କ ବିଜୟର ଦିନ । ଆଜି ମୋର ମନେ ପଡୁଛି, ଦିନେ ସେ ଶାୟେସ୍ତା ଖାଁ ଏବଂ ଆମିନ୍ ଖାଁଙ୍କୁ ମୁକ୍ତ କରିବା ପାଇଁ ଦାରା ଶୁକୋଙ୍କୁ ଅନୁରୋଧ କରିଥିଲେ ।

ଆଉରଙ୍ଗଜେବଙ୍କ ଶକ୍ତି ଅପରିସୀମ ହେଲେ ମଧ୍ୟ ନିଜ ଶକ୍ତି ଆହୁରି ବଢ଼ାଇବା ପାଇଁ ସେ ଚେଷ୍ଟିତ ଥିଲେ । ରାଜ୍ୟର ଅଭିଜାତବର୍ଗଙ୍କ ଆନୁଗତ୍ୟ ଲାଭ କରିବା ପାଇଁ ସେ ଅମାତ୍ୟମାନଙ୍କ ଦ୍ୱାରା ସମ୍ରାଟଙ୍କ ଲିଖିତ ଜାଲପତ୍ର ରାଜଦରବାରରେ ପାଠ କରାଇବାକୁ ଲାଗିଲେ । ଏହି ପ୍ରତାରଣା ଖୁବ୍ ସଫଳ ହେଲା । ତାଙ୍କର ସକଳ କାର୍ଯ୍ୟର ଗୋଟିଏ ମୂଳ ଉଦ୍ଦେଶ୍ୟ ଥିଲା—ସେ ସମସ୍ତଙ୍କୁ କହୁଥିଲେ, ତାଙ୍କର ପ୍ରଧାନ ଲକ୍ଷ୍ୟ, ସମ୍ରାଟଙ୍କୁ ଧର୍ମଦ୍ରୋହୀ ଦାରାଙ୍କ କବଳରୁ ମୁକ୍ତ କରିବା ।

ଯାହା ଦିନେ ଭୀତ ଓ ଆଶ୍ଚର୍ଯ୍ୟାନ୍ୱିତ କରୁଥିଲା, ଆଜି ତାହା ଅଦୃଷ୍ଟର ବିଧାନ ମନେ ହେଉଛି । ମୁଁ କଣ ଜାଣି ନ ଥିଲି, ଆଉରଙ୍ଗଜେବ ବ୍ୟାଘ୍ର ପରି ତାଙ୍କ ଶିକାର ପାଇଁ ସର୍ବଦା ପ୍ରସ୍ତୁତ ? ଆଜି ବ୍ୟାଘ୍ର ଶିକାରକୁ ତାର କବଳରେ ପାଇଛି । ଭାଗ୍ୟ ତାରକା ତାର ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଉପନୀତ ହୋଇ ସ୍ତବ୍ଧ ହୋଇଯାଇଛି । ଦିନେ ଯାହା ଥିଲା, ଆଜି ଆଉ ନାହିଁ । ଧ୍ୱଂସସ୍ତୂପ ମଧ୍ୟରେ ବି ଆଜି ଶାନ୍ତି ବିରାଜମାନ । ଯୀଶୁଖ୍ରୀଷ୍ଟ କହିଥିଲେ, "ରାଜାମାନଙ୍କ ମସ୍ତକର ମୁକୁଟ ଖସି ପଡ଼ୁଛି । ଆମେ ହତଭାଗ୍ୟ ଯେ ଆମେ ଏପରି ପାପ କରୁଛୁ । ପ୍ରଭୁ ! ଆମକୁ ତୁମର ନିକଟକୁ ନେଇଯାଅ । ପ୍ରଭୁ; ତୁମ ନିକଟକୁ ଆମକୁ ପ୍ରତ୍ୟାବର୍ତ୍ତନ କରିବାକୁ ଦିଅ । ଆମର ଦିନଗୁଡ଼ିକୁ ନୂତନ କରିଦିଅ, ଯେପରି ଆମେ ଅତୀତ ପରି ନିଷ୍ପାପ ହୋଇପାରୁ ।"

ଆମେ କ'ଣ ଆଉ ପୂର୍ବ ପରି ନିଷ୍ପାପ ହୋଇ ପାରିବୁ ? ମୋର ସତ୍ତା ବହୁଦୂରକୁ ଚାଲିଯାଇଛି । ଯଦି ମୋ ଭିତରେ କେଉଁ ଅଗ୍ନି ବିଦ୍ୟମାନ

ଥାଏ, ତେବେ ତାହା ମୋର ବୃଦ୍ଧ ପିତା ଓ ଭାଗ୍ୟହୀନ ଦାରାଙ୍କ ପାଇଁ ନିୟୋଜିତ ହେଉ । ସେଇମାନଙ୍କ ପାଇଁ ମୁଁ ଜୀବନ ଧାରଣ କରିବ । ମୁଁ କୁରାମ ଦେବୀଙ୍କୁ ସ୍ମରଣ କଲି । ସେ ଅନ୍ତରର ତୀବ୍ର ବେଦନାରି ପ୍ରଲେପ ସ୍ୱରୂପ ଚନ୍ଦ୍ରାଗ୍ନି ଶିଖାକୁ ଅଭିନନ୍ଦନ କଲେ ......।

ଆଗ୍ରାର ସମସ୍ତ ବ୍ୟବସ୍ଥା ଯଥାଭିଳାଷ ଶେଷ କରି ଆଉରଙ୍ଗଜେବ ଶାୟେସ୍ତା ଖାଁଙ୍କୁ ଆଗ୍ରାର ଶାସନକର୍ତ୍ତା ନିଯୁକ୍ତ କଲେ । ତା'ପରେ ରାଜ-କୋଷରୁ ପ୍ରୟୋଜନ ଅନୁସାରେ ଅର୍ଥ ସଂଗ୍ରହ କରି ମୁରାଦଙ୍କ ସଙ୍ଗେ ଦାରାଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଦିଲ୍ଲୀ ଅଭିମୁଖେ ଅଗ୍ରସର ହେଲେ । ଦାରା ସେତେବେଳେ ଲାହୋରରେ ଦଳେ ସୈନ୍ୟ ସଂଗ୍ରହ କରୁଥିଲେ ।

* * * * *

କିନ୍ତୁ ବାଟରେ ଆଉରଙ୍ଗଜେବଙ୍କର ଗୋଟିଏ କାମ ବାକି ଥିଲା । ସେ ଯାଏଁ ମୁରାଦଙ୍କ ରାଜ୍ୟାଭିଷେକ ହୋଇ ନ ଥିଲା । ମୁରାଦଙ୍କୁ ଅନେକେ ପରାମର୍ଶ ଦେଇଥିଲେ, ଆଉରଙ୍ଗଜେବ ଏକାକୀ ଦାରାଙ୍କୁ ଅନୁସରଣ କରନ୍ତୁ । ସେ ନିଜେ ତାଙ୍କର ବିଶାଳ ବାହିନୀ ସହ ଦିଲ୍ଲୀ ଓ ଆଗ୍ରା ଅବରୋଧ କରି ଥା'ନ୍ତୁ । ମୁରାଦ ସର୍ବଦା ନିଜର ଦୁର୍ବାର ସାହସର ଗର୍ବରେ ସ୍ଫୀତ ହେଉଥିଲେ । ସେ ଖୁସି ହେଲେ ନାହିଁ । ଆଉରଙ୍ଗଜେବ ତାଙ୍କ ସମ୍ମୁଖରେ କୋରାଣ୍ ସ୍ପର୍ଶ କରି ଶପଥ କରି ନାହାନ୍ତି କି ?

* * * * *

ସୈନ୍ୟଦଳ ମଥୁରା ପାର୍ଶ୍ୱରେ ବିଶ୍ରାମ କଲେ । ସେଇ ଅଭିଯାନର ପରବର୍ତ୍ତୀ ଦିନଗୁଡ଼ିକ ମୁରାଦଙ୍କ ପକ୍ଷରେ ଖୁବ୍ ଆନନ୍ଦଦାୟକ ହୋଇ ଉଠିଥିଲା । ମିଷ୍ଟତମ ଫଳ, ସୁନ୍ଦରତମ ଫୁଲ୍, ତୀବ୍ରତମ ସୁରା ନିରନ୍ତର ମୁରାଦଙ୍କ ତୃପ୍ତି ସାଧନ କରୁଥିଲା । ମୁରାଦ ସମ୍ବାଦ ପାଇଥିଲେ ଯେ, ଆଉରଙ୍ଗଜେବଙ୍କ ଶିବିରରେ ରାଜ୍ୟାଭିଷେକ ଭିନ୍ନ ଆଉ କୌଣସି ଆଲୋଚନା ହିଁ ହୁଏ ନା । ପ୍ରତ୍ୟେକଟି ହସ୍ତୀ ଓ ଅଶ୍ୱ ପାଇଁ ନୂତନ ଝାଲର ପ୍ରସ୍ତୁତ ହେଉଛି, ନୂତନ ଶିବିର ନିର୍ମାଣ କରାଯାଉଛି । ଉତ୍ସବର ନୂତନ ପରିଚ୍ଛଦ, ନୂତନ ଅଳଙ୍କାର—ଆହୁରି କେତେ କ'ଣ । ରନ୍ଧନ-ଶାଳାରେ ଖୁବ୍ ବ୍ୟସ୍ତତା, ସୁମିଷ୍ଟ ଖାଦ୍ୟ ପ୍ରସ୍ତୁତ ହେଉଛି । ସୁଗନ୍ଧି ଫୁଲ

ସଂଗ୍ରହ ଚାଲିଛି । ନର୍ତ୍ତକୀ ଓ ଗାୟିକାମାନେ ସେମାନଙ୍କ ଶିବିରରେ ବିବାଗହି ନୂତନ ନୃତ୍ୟଗୀତର ପୂର୍ବାଭିନୟ କରୁଛନ୍ତି ।

ମୁରାଦଙ୍କ ଶିବିରରେ ଚାଲିଥିଲା ମଦ୍ୟପାନ, ଆଉ ଉଚ୍ଛୃଙ୍ଖଳତା । ମୁରାଦଙ୍କ ବିଶ୍ୱସ୍ତ ବନ୍ଧୁ ଥିଲେ ଖୋଜା ଶାହବାଦ୍ । ସେ ତାଙ୍କ ପ୍ରଭୁଙ୍କ ଜ୍ଞାନ-ଚକ୍ଷୁର ଉନ୍ମୀଳନ ପାଇଁ ଯଥାସାଧ୍ୟ ଚେଷ୍ଟା କରିଥିଲେ । କିନ୍ତୁ ସକଳ ଚେଷ୍ଟା ବ୍ୟର୍ଥ ହେଲା । ଆଉରଙ୍ଗଜେବ ନଗାଖାରରେ ଏକ ଅଭିନବ ମନୋହର ପାରିପାର୍ଶ୍ୱିକ ଆବେଷ୍ଟନ ମଧ୍ୟରେ ଉତ୍ସବର ଆୟୋଜନ କରିଥିଲେ । ଅବଶେଷରେ ଜ୍ୟୋତିଷନିର୍ଦ୍ଦିଷ୍ଟ ଅଭିଷେକର ଶୁଭଦିନ ଉପସ୍ଥିତ ହେଲା । ମୁରାଦ ଅଶ୍ୱ ଆରୋହଣ କରି ଆଉରଙ୍ଗଜେବଙ୍କ ଶିବିରରେ ଉପସ୍ଥିତ ହେଲେ । ଇବ୍ରାହିମ୍ ଖାଁ ଏକଦା ସାମୁଗଡ଼ରେ ଶାହଜାଦା ଦାରାଙ୍କୁ ସଦୁପଦେଶ ଦେଇଥିଲେ । ଆଜ ପୁଣି ସେ ମୁରାଦଙ୍କ ଅଶ୍ୱବଲ୍‌ଗା ଧରି ମୁହଁ ବୁଲାଇ ନେଲେ । ଭାବିଥିଲେ, ମୁରାଦ ସେ ଇଙ୍ଗିତ ବୁଝି ପାରିବେ । କିନ୍ତୁ ଦାମ୍ଭିକ ମୁରାଦ ଅଗ୍ରସର ହେଲେ ।

ଇବ୍ରାହିମ୍ କହିଥିଲେ, ସମ୍ରାଟଙ୍କ ପଥ କାରାଗାର ଅଭିମୁଖେ ଚାଲିଛି । ଶାହବାଜ ଆଲ୍ଲାହଙ୍କ ନାମରେ ମୁରାଦଙ୍କୁ ପ୍ରତ୍ୟାବର୍ତ୍ତନ ପାଇଁ ଅନୁରୋଧ କରିଥିଲେ । ଶିବିର ଦରଜା ପର୍ଯ୍ୟନ୍ତ ଅନେକେ ତାଙ୍କୁ ସତର୍କ କରି ଦେଇଥିଲେ । ସକଳ ବାଧା ସତ୍ତ୍ୱେ ମୁରାଦ ଶିବିରରେ ପ୍ରବେଶ କଲେ ।

ଶେଖ୍ ମୀର୍ ଆମିନ୍ ଖାଁ ଏବଂ ଆଉରଙ୍ଗଜେବଙ୍କର କେତେ ଜଣ ବିଶ୍ୱାସୀ ଅନୁଚର ଉତ୍ସବ ପରିଚ୍ଛଦରେ ଭୂଷିତ ହୋଇ ସହାସ୍ୟ ମୁଖରେ ମୁରାଦଙ୍କୁ ଅଭିନନ୍ଦିତ କଲେ । ଆଉରଙ୍ଗଜେବ ମୁରାଦଙ୍କୁ ଅଭିନନ୍ଦନ ଜଣାଇଲେ ଏବଂ ଭ୍ରାତୃସ୍ନେହ, ଭ୍ରାତୃ ପ୍ରେମର କଥା କହିଲେ । ତା'ପରେ ମୁରାଦଙ୍କୁ ସିଂହାସନକୁ ନେଇଗଲେ । ସଙ୍ଗୀତ ଆରମ୍ଭ ହେଲା— ନର୍ତ୍ତକୀକୁଳ ସମାଗତା, ବିକୀର୍ଣ୍ଣ ପୁଷ୍ପଦାମ, ବିଚ୍ଛୁରିତ ଗନ୍ଧବାରି, ପ୍ରଜ୍ୱଳିତ ଧୂପ ଗୁଗ୍‌ଗୁଳ ସମସ୍ତ ବାୟୁମଣ୍ଡଳ ତୀବ୍ର ମଦ୍ୟଗନ୍ଧରେ ଆମୋଦିତ ।

ମୁରାଦଙ୍କ ସେନାଧ୍ୟକ୍ଷଗଣ ଆଉରଙ୍ଗଜେବଙ୍କ ସେନାପତିଙ୍କ କର୍ତ୍ତୃକ ନିମନ୍ତ୍ରିତ ହେଲେ । ମୁରାଦଙ୍କ ସୈନ୍ୟଗଣ ଆମୋଦ ପ୍ରମୋଦ ପାଇଁ ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଲେ ।

ଉତ୍ସବର ଭୋଜି ଆରମ୍ଭ ହେଲା, ସୁସ୍ୱାଦୁ ଖାଦ୍ୟ ଓ ସୁପେୟ ସୁରା । ଆଉରଙ୍ଗଜେବଙ୍କ ଶିବିରରେ କୌଣସି ସମ୍ମାନିତ ଅତିଥିଙ୍କ ପାନପାତ୍ର କେବେ ଶୂନ୍ୟ ହୁଏ ନାହିଁ । ଦୁଇଘଣ୍ଟା ପରେ ଆଉରଙ୍ଗଜେବ୍ ମୁରାଦଙ୍କୁ କହିଲେ, "ଭ୍ରାତା, ତୁମେ ବିଶ୍ରାମ କର । ମୁଁ ଅଭିଷେକର ସମସ୍ତ ଆୟୋଜନ ଓ ବ୍ୟବସ୍ଥା କରିବି । ମୁଁ ତୁମକୁ ଯଥାସମୟରେ ଅଭିଷିକ୍ତ କରିବି ।"

ବିଶ୍ୱସ୍ତ ଶାହବାଜଙ୍କ ସଙ୍ଗେ ମୁରାଦ ଅନ୍ୟ କକ୍ଷକୁ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ଏକ ଅପରୂପ ସୁନ୍ଦରୀ ନାରୀ ଅପେକ୍ଷା କରିଥିଲା— ଖୋଜା ଭୃତ୍ୟ ତାହାକୁ ସେଠାରୁ ଅନ୍ତର କରିଦେଲା । ଅତିରିକ୍ତ ମଦ୍ୟପାନ ପରେ ମୁରାଦ ଖୁବ୍ ଶୀଘ୍ର ନିଦ୍ରାମଗ୍ନ ହୋଇ ପଡ଼ିଲେ ।

ଏଇ ସମସ୍ତ ଓ ପରର ଘଟଣା ସବୁ ଜଣେ ବିଶ୍ୱସ୍ତ ଲୋକ ମୋତେ କହିଥିଲା । ମୁଁ ତାହା ଶୁଣି ଶୋକରେ ନିଷ୍ପେଷିତ ହୋଇ ପଡ଼ିଥିଲି, ସାରା ରାତି ଶୋଇ ନ ଥିଲି । କେବଳ ପ୍ରାର୍ଥନା କରୁଥିଲି । ଇୟା ଆଲ୍ଲାହ ! ! !

* * * * *

ଶାହବାଜ ମୁରାଦଙ୍କ ପାଦତଳେ ବସି ଅତି ମୃଦୁଭାବରେ ତାଙ୍କର ପାଦସେବା କରୁଥିଲେ । ହଠାତ୍ ଆଉରଙ୍ଗଜେବ ଉନ୍ମୁକ୍ତ ଦରଜା ପ୍ରାନ୍ତରେ ଉପସ୍ଥିତ ହେଲେ । ତାଙ୍କର ପରିଧାନ ଥିଲା ଶ୍ୱେତ ପରିଚ୍ଛଦ; ମସ୍ତକ ଶିରପା-ବିହୀନ । ଅଭିଷେକର ଅନୁରୂପ କୌଣସି ଭୂଷଣ ତାଙ୍କ ଅଙ୍ଗରେ ନ ଥିଲା । ଧୀରେ ଧୀରେ ସେ ଆଗେଇ ଆସିଲେ ।

ତା'ପରେ ମସ୍ତକ ଉତ୍ତୋଳନ କରି ଖୋଜାଙ୍କୁ ଉଠି ଆସିବାକୁ ଇଙ୍ଗିତ ଦେଲେ । ଖୋଜା ଆଦେଶ ପ୍ରତିପାଳନ କଲେ । ତତ୍କ୍ଷଣାତ୍ ଚାରିଜଣ ଲୋକ ସେଇ ଖୋଜାଙ୍କ ନିଃଶ୍ୱାସ ବନ୍ଦ କରି ତାଙ୍କୁ ହତ୍ୟା କଲେ ଏବଂ ସେଇଠାରେ ହିଁ ଭୂମିତଳେ ତାଙ୍କୁ ପ୍ରୋଥିତ କଲାଗଲା ।

ଏହାପରେ ଆଉରଙ୍ଗଜେବଙ୍କର ରାଜଭୂମିକା ଆରମ୍ଭ ହେଲା । ସେ ତାଙ୍କର ଚାରି ବର୍ଷର କନିଷ୍ଠ ପୁତ୍ର ଆଜାମ୍‌କୁ ଡାକି, ଏକ ଉଜ୍ଜ୍ୱଳ ମୁକ୍ତା ଦେଖାଇ କହିଲେ, "ଯଦି ତୁମର ଘୁମାଉଥିବା ଦାଦାଙ୍କ ନିକଟରୁ, ତାଙ୍କୁ ନ ଜଣାଇ, ତାଙ୍କ ତରବାରି ନେଇ ଆସିପାର, ତେବେ ତୁମକୁ ଏଇ ମୁକ୍ତାଖଣ୍ଡ ଉପହାର ଦେବି ।" ଏଥିରେ ଯଦି ମୁରାଦ ଜାଗ୍ରତ

ହୋଇଥାନ୍ତେ, ତେବେ ଦେଖିଥାନ୍ତେ, ଗୋଟିଏ ନିର୍ଦ୍ଦୋଷ ଶିଶୁ ତରବାରି ସଙ୍ଗେ ଖେଳୁଛି । ଶିଶୁ ଆଜାମ୍ ଉଲ୍ଲସିତ ହୋଇ ମୁରାଦଙ୍କ ତରବାରି ନେଇ ଆସିଲା । ସେତେବେଳେ ସ୍ୱପ୍ନ ଆବେଶରେ ମୁରାଦଙ୍କ ମୁଖରେ ଅପୂର୍ବ ପ୍ରଶାନ୍ତି । ଆଉ ଗୋଟିଏ ମୁକ୍ତା ଶିଶୁକୁ ଦେଖାଇ ଆଉରଙ୍ଗଜେବ କହିଲେ, "ତୁମେ ଦାଦାଙ୍କର ଏଇ କ୍ଷୁଦ୍ର ଛୁରୀକା ନେଇ ଆସି ପାରିବ ?" ଶିଶୁ ଉଲ୍ଲାସରେ ମୁରାଦ୍‌ଙ୍କ ପ୍ରତିରକ୍ଷାର ଛୁରୀକା ନେଇ ଆସିଲା । ଆଉରଙ୍ଗଜେବ ଏଥର ସ୍ୱସ୍ତିର ନିଃଶ୍ୱାସ ମାରିଲେ ।

ମୁରାଦ ଜାଗ୍ରତ ହୋଇ ଦେଖିଲେ, ତାଙ୍କର ଦୁଇ ପାଦ ଗୁରୁଭାର ଶୃଙ୍ଖଳାବଦ୍ଧ । ହସ୍ତ ପ୍ରସାରଣ କରି ସେ ତାଙ୍କର ଅସ୍ତ୍ରର ସନ୍ଧାନ କଲେ । ସେ ପ୍ରତିଶୋଧର କୌଣସି ଚେଷ୍ଟା ମଧ୍ୟ କଲେ ନାହିଁ । ଅବନତ ମସ୍ତକରେ ଶାନ୍ତ ଭାବରେ କହିଲେ, "କୋରାଣ ସ୍ପର୍ଶ କରି ମୋ ନିକଟରେ ଏଇ ଶପଥ ହିଁ କରା ହୋଇଥିଲା ! ଆଲ୍ଲା ହ ! ! !"

ସଙ୍ଗୀତ ନୂତନ ସ୍ୱରରେ ବାଜିଉଠିଲା । ମୁରାଦଙ୍କ ଅନୁଚର ବର୍ଗ ମନେକଲେ; ଅଭିଷେକ ଉତ୍ସବ ତଥାପି ଚାଲିଛି ! ସନ୍ଧ୍ୟା ସମାଗମରେ ଦେଖାଗଲା, ଦୁଇଟି ହସ୍ତୀ ଚାଲିଛନ୍ତି – ଗୋଟିଏ ଆଗ୍ରା ଅଭିମୁଖେ, ଅନ୍ୟଟି ଦିଲ୍ଲୀର ପଥରେ । ଦୁଇଟି ହସ୍ତୀ ପ୍ରହରୀବେଷ୍ଟିତ । ଦିଲ୍ଲୀ ପଥରେ ହସ୍ତୀ ପୃଷ୍ଠରେ ଚାଲିଛନ୍ତି ହତଭାଗ୍ୟ ମୁରାଦ୍ ।

କ୍ରମଶଃ ମୁରାଦଙ୍କ ଅନୁଚରଗଣ ଚଞ୍ଚଳ ହୋଇଉଠିଲେ; କିନ୍ତୁ ଆଉରଙ୍ଗଜେବଙ୍କ ସେନାଧ୍ୟକ୍ଷଙ୍କ ଆଦେଶ ଥିଲା, ଯେପରି ମୁରାଦଙ୍କ ସେନାପତିଗଣ ଶିବିର ତ୍ୟାଗ କରି ନ ପାରନ୍ତି । ସେ ଆଉରଙ୍ଗଜେବଙ୍କ କୌଶଳ ଜାଣିଥିଲେ ।

*       *       *       *       *

ରାତିରେ ହଠାତ୍ ଆଉରଙ୍ଗଜେବଙ୍କ ସୈନ୍ୟଦଳ ଆନନ୍ଦଧ୍ୱନି କରି ଉଠିଲେ—ଜାଲ୍ ଜାଲାଲୁଲ୍ଲାହ୍ ( ସମ୍ରାଟ୍ ଆଉରଙ୍ଗଜେବ ଦୀର୍ଘଜୀବୀ ହୁଅନ୍ତୁ ) । ସଙ୍ଗେ ସଙ୍ଗେ ଘୋଷଣା କରା ହେଲା, ଶାହାଜାହାନ ଏବଂ ମୁରାଦଙ୍କ ଅଧୀନସ୍ଥ ସୈନ୍ୟଗଣ ଦ୍ୱିଗୁଣ ବେତନ ପାଇବେ ।

ମୁରାଦଙ୍କ ସେନାଧ୍ୟକ୍ଷଗଣ ପ୍ରଥମେ ପଳାୟନର ଚେଷ୍ଟା କରିଥିଲେ ଏବଂ ସୈନ୍ୟଗଣ ଭୀତ ହୋଇ ପଡ଼ିଥିଲେ; କିନ୍ତୁ ପରଦିନ ଦେଖାଗଲା, ମୁରାଦଙ୍କ ସମସ୍ତ ସୈନ୍ୟ ଆଉରଙ୍ଗଜେବଙ୍କ ଦଳରେ ଯୋଗ ଦେଇଛନ୍ତି ।

ଆଉରଙ୍ଗଜେବଙ୍କ ଫକୀରର ପୋଷାକ ତଳେ ତାଙ୍କ ଶିରାରେ ଶିରାରେ ଚେଙ୍ଗିଜ୍‌ଙ୍କ ରକ୍ତଧାରା ପ୍ରବାହିତ ହେଉଥିଲା । ଚେଙ୍ଗିଜ୍ ସମସ୍ତ ପୃଥିବୀକୁ ଭୀତ ଓ ସନ୍ତ୍ରସ୍ତ କରିଥିଲେ । ଶକ୍ତିସଂଗ୍ରହର ଆକୁଳତାରେ ଯେତେବେଳେ ଆଉରଙ୍ଗଜେବଙ୍କ ରକ୍ତ ଉଷ୍ମ ହୋଇ ଉଠୁଥିଲା, ରକ୍ତଧାରାରେ କୋରାଣର ଅକ୍ଷର ସବୁ ଲିଭି ଯାଉଥିଲା ।

ମୁରାଦ ଯାଉଛନ୍ତି ଦିଲ୍ଲୀର ରାଜପଥରେ, ଏକାନ୍ତ ଅବନମିତ ଭାବରେ । ତାଙ୍କ ପଶ୍ଚାତ୍‌ରେ ହସ୍ତୀପୃଷ୍ଠରେ ଅନୁସରଣ କରୁଛି ଘାତକ । ପଳାୟନର ଚେଷ୍ଟା କଲେ ମୁରାଦଙ୍କ ଶିରଚ୍ଛେଦ କରିବ । ବନ୍ଦୀ ଅବସ୍ଥାରେ ତାଙ୍କୁ କାରାଗାରକୁ ନିଆଗଲା । ସେଠାରେ ତାଙ୍କୁ ପିଇବାକୁ ଦିଆଗଲା 'ପାର୍ଷୀର୍ ସରବତ୍' ।

ଏହାପରେ ଆଉରଙ୍ଗଜେବ ସିଂହାସନ ଆରୋହଣ କଲେ ।

× × × ×

(କେତେଗୁଡ଼ିଏ ପତ୍ର ଛିନ୍ନ, ଅସଂଲଗ୍ନ । ପୃଷ୍ଠା ପାଠୋଦ୍ଧାର ହୋଇ ନାହିଁ ।)

ମୁଁ ଦାରାଙ୍କ ଇତିହାସ ଲେଖୁଛି । ପତ୍ର ଉପରେ ମୁଁ ମୋର କପାଳ ନ୍ୟସ୍ତ କଲି; ମୋର ଅଶ୍ରୁଧାରା କାଳିର ଅକ୍ଷର ସଙ୍ଗେ ମିଶିଯାଉ ।

ବେଳେବେଳେ ଦାରାଙ୍କ ଇଚ୍ଛା ଶକ୍ତି ପ୍ରବଳ ହୋଇଉଠେ । ସେଇ ଶକ୍ତି ଆବେଗରେ ଦାରା ଲାହୋରରେ ପ୍ରାୟ ତିରିଶି ସହସ୍ର ସୈନ୍ୟ ସମାବେଶ କଲେ । ଲାହୋର ପାର୍ଶ୍ୱବର୍ତ୍ତୀ ଜଣେ ରାଜା ଦାରାଙ୍କୁ ସୈନ୍ୟ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଦାରା ତାଙ୍କ କଥା ଉପରେ ଖୁବ୍ ବେଶୀ ନିର୍ଭର କଲେ । ମୋ ସହୋଦରମାନଙ୍କ ମଧ୍ୟରେ ଦାରାଙ୍କ ପରି ହୃଦୟକୁ ଜୟର କ୍ଷମତା ଅନ୍ୟ କାହାରି ନ ଥିଲା । ତାଙ୍କ ମୁଖରେ ଥିଲା ସରଳ ହସ, କଣ୍ଠରେ ସଙ୍ଗୀତର ସ୍ୱର । ଦାରା ଏଇ ହିନ୍ଦୁରାଜାଙ୍କ ହୃଦୟ ଜୟର ବାସନା କରିଥିଲେ । ତାଙ୍କୁ ରାଜାନୁଗ୍ରହର

ବହୁ ନିଦର୍ଶନ ଏବଂ ଯଥେଷ୍ଟ ଅର୍ଥ ଉପହାର ଦିଆଗଲା; କିନ୍ତୁ ଆଉରଙ୍ଗଜେବଙ୍କ ଗୁପ୍ତ ପତ୍ରାବଳୀ ରାଜ୍ୟର ପ୍ରତ୍ୟେକକୋଣରେ ବିକ୍ଷିପ୍ତ ହୋଇ ପଡ଼ିଥିଲା ।

ହିନ୍ଦୁ ରାଜା ଦାରାଙ୍କୁ ପରିତ୍ୟାଗ କଲେ; କିନ୍ତୁ ଆଉରଙ୍ଗଜେବଙ୍କ ପ୍ରେରିତ ଅର୍ଥର ମୋହ ତ୍ୟାଗ କରିପାରିଲେ ନାହିଁ ।

ଆଉରଙ୍ଗଜେବ ସୈନ୍ୟମାନଙ୍କ ପୁରୋଭାଗରେ ଅଗ୍ରସର ହେବାକୁ ଲାଗିଲେ । ସେ ଜାଣିଥିଲେ ଯେ, ବହୁ ବିଖ୍ୟାତ ସେନାଧ୍ୟକ୍ଷ ଦାରାଙ୍କ ପକ୍ଷପାତି । ସେମାନଙ୍କ ମଧ୍ୟରୁ ଅନେକ ଦାରାଙ୍କ ସଙ୍ଗେ ପ୍ରୀତିବନ୍ଧନରେ ଆବଦ୍ଧ । ଦାୟୁଦ୍ ଖାଁ ସେମାନଙ୍କ ଭିତରେ ଅନ୍ୟତମ । ଆଉରଙ୍ଗଜେବ ଅନେକଗୁଡ଼ିଏ ଜାଲ୍‌ପତ୍ର ପ୍ରସ୍ତୁତ କଲେ । ପତ୍ରର ମୂଳକଥା, ଆଉରଙ୍ଗଜେବ ଓ ଦାୟୁଦ ଖାଁଙ୍କ ମଧ୍ୟରେ ପତ୍ରବିନିମୟ । ସେହି ପତ୍ରଗୁଡ଼ିକ ଦାରାଙ୍କ ଚିତ୍ତକୁ ସନ୍ଦିଗ୍ଧ କରିଦେଲା । ହତଭାଗ୍ୟ ଦାରା ତାଙ୍କର ବିଶ୍ୱାସୀ ସେନାଧ୍ୟକ୍ଷଙ୍କୁ ସନ୍ଦେହ କରିବାକୁ ଲାଗିଲେ । ଦାରା ଦାୟୁଦ୍ ଖାଁଙ୍କୁ ଆଦେଶ ଦେଲେ, ମୋତେ ତ୍ୟାଗ କର । ମୋର ସୈନ୍ୟ ତ୍ୟାଗ କରି ଚାଲିଯାଅ । ଦାୟୁଦ ଖାଁ ଶିଶୁପରି କ୍ରନ୍ଦନ କରିବାକୁ ଲାଗିଲେ । ତା'ପରେ ଉତ୍ତର ଦେଲେ, "ଦୁର୍ଭାଗ୍ୟ ଦାରାଙ୍କୁ ମୃତ୍ୟୁପଥରେ ନେଇ ଯାଉଛି ।" ଦାୟୁଦ୍ ଖାଁ ଦାରାଙ୍କୁ ପରିତ୍ୟାଗ କରି ଚାଲିଗଲେ ।

ଅତି ଦ୍ରୁତଗତିରେ ଦାରା ଲାହୋର ତ୍ୟାଗ କରି ସ୍ଥାନାନ୍ତରରେ ଆଶ୍ରୟ ଅନ୍ୱେଷଣ କଲେ । ଭକ୍କାର (୧) ଦୁର୍ଗରେ ତାଙ୍କର ବହୁ ସୁଶିକ୍ଷିତ ସୈନ୍ୟଙ୍କୁ ପଶ୍ଚାଦ୍‌ରେ ରଖିଗଲେ । ଅବଶ୍ୟ ତାଙ୍କର ବହୁ ସୈନ୍ୟ ତାଙ୍କୁ ପରିତ୍ୟାଗ କରି ଚାଲିଯାଇଥିଲେ । ପରିଶେଷରେ ଦାରା ଗୁଜୁରାଟରେ ଉପସ୍ଥିତ ହେଲେ । ସେଠାରେ ସେ ସୈନ୍ୟସଂଗ୍ରହ କରିବାକୁ ଲାଗିଲେ ।

ଏହାମଧ୍ୟରେ ଆଉରଙ୍ଗଜେବ ସମ୍ବାଦ ପାଇଲେ ଯେ, ଶାହ ସୁଜା ବଙ୍ଗଦେଶ ପରିତ୍ୟାଗ କରି ବହୁ ସୈନ୍ୟ ନେଇ ଅଭିଯାନ ଆରମ୍ଭ କରିଛନ୍ତି । ସୁଜା ଦାରାଙ୍କୁ ଅନୁସରଣ ନ କରି, ତାଙ୍କର ସମସ୍ତ ସୈନ୍ୟ ସହ ଦାକ୍ଷିଣାତ୍ୟ

(୧) ଭକ୍କାର୍—ପଞ୍ଜାବର ଏକ କ୍ଷୁଦ୍ର ରାଜ୍ୟ ।

ଅଭିମୁଖେ ଅଗ୍ରସର ହେଲେ । ଲକ୍ଷ୍ୟସ୍ଥଳରେ ଉପସ୍ଥିତ ହେବା ପାଇଁ ଆଉରଙ୍ଗଜେବ ଦ୍ରୁତ ଅଶ୍ୱଚାଳନା କରି ବହୁବାର ସୈନ୍ୟମାନଙ୍କୁ ଅତିକ୍ରମ କରି, ଏକାକୀ ବହୁଦୂର ଚାଲି ଯାଇପାରୁଥିଲେ । କେବେ କେବେ ଏକାକୀ ବୃକ୍ଷତଳେ ବିଶ୍ରାମ କରୁଥିଲେ । କେବେ କେବେ ନିଜ ଢାଲ ଉପରେ ମସ୍ତକ ନ୍ୟସ୍ତ କରି ନିଦ୍ରା ଯାଉଥିଲେ ।

ଅତର୍କିତରେ ଦିନେ ଆଉରଙ୍ଗଜେବ ଅରଣ୍ୟପଥରେ ରାଜା ଜୟସିଂହଙ୍କ ସମ୍ମୁଖୀନ ହୋଇପଡ଼ିଲେ । ଜୟସିଂହ ସୁଲେମାନ ଶୁକୋଙ୍କ ସୈନ୍ୟ ପରିଚାଳକ । ସେ ଦାରାଙ୍କୁ ଘୃଣା କରୁଥିଲେ; କାରଣ, ଦାରା ଦିନେ ତାଙ୍କୁ 'ଗାୟକ' ବୋଲି ଉପହାସ କରିଥିଲେ; କିନ୍ତୁ ଜୟସିଂହ ଶାହାଜାହାନଙ୍କ ପ୍ରିୟପାତ୍ର ଥିଲେ । ଜୟସିଂହଙ୍କ ସୈନ୍ୟଗଣ ଆଉରଙ୍ଗଜେବଙ୍କୁ ହତ୍ୟାକରି ସମ୍ରାଟ ଶାହାଜାହାନଙ୍କୁ ମୁକ୍ତ କରିବା ପାଇଁ ଚାହୁଁଥିଲେ । ଯଦି ତାହା ହୋଇଥାନ୍ତା, ଜୟସିଂହଙ୍କ ପ୍ରଶଂସାରେ ପୃଥିବୀ ମୁଖରିତ ହୋଇ ଉଠିଥାନ୍ତା ।

ଆଉରଙ୍ଗଜେବ ବିପଦର ଗମ୍ଭୀରତା ଅନୁଭବ କଲେ । ସେ ଏକାକୀ ଜୟସିଂହଙ୍କ ସଙ୍ଗେ ସାକ୍ଷାତ୍ କରିବା ପାଇଁ ଉପସ୍ଥିତ ହେଲେ । ଯେପରି ସେ ଜୟସିଂହଙ୍କ ପ୍ରତ୍ୟାଶା ହିଁ କରୁଥିଲେ ! ତୈମୁରଙ୍କ ଭାଷାରେ ଜୟସିଂହଙ୍କୁ ସେ ପ୍ରଶଂସା କଲେ । ତା'ପରେ ନିଜ କଣ୍ଠରୁ ବହୁମୂଲ୍ୟ ମୁକ୍ତାହାର ଖୋଲି ରାଜାଙ୍କ କଣ୍ଠରେ ପକାଇ ଦେଇ କହିଲେ, "ମୁଁ ଆପଣଙ୍କୁ ଦିଲ୍ଲୀର ଶାସନକର୍ତ୍ତା ନିଯୁକ୍ତ କଲି । ସାମ୍ରାଜ୍ୟ ପ୍ରୟୋଜନ, ଆପଣ ଏହି ମୁହୂର୍ତ୍ତରେ ଦିଲ୍ଲୀ ଅଭିମୁଖେ ଯାତ୍ରା କରନ୍ତୁ ।"

ଭାଗ୍ୟ ଆପଣାର ପଥ ରଚନା କରିବା ପାଇଁ କେତେଗୁଡ଼ିଏ ଅସ୍ତ୍ର ବ୍ୟବହାର କରେ । ସେ ଅସ୍ତ୍ର ସତ୍ ହେଉ ବା ଅସତ୍ ହେଉ; କିନ୍ତୁ ଭାଗ୍ୟ ଆମ ପଥର ଗତି କେଉଁ ଦିଗକୁ ନିୟନ୍ତ୍ରିତ କରୁଥିଲା ? ରାଜା ଜୟସିଂହ ଅବିଳମ୍ବେ ଦିଲ୍ଲୀ ଯାତ୍ରା କଲେ ।

ଆଗ୍ରାର ତୀବ୍ର ଉତ୍ତାପ କଣ୍ଠରୋଧ କରିଦିଏ । ମୁଁ ପ୍ରାୟ ବିନିଦ୍ର ରଜନୀ ଯାପନ କରୁଛି । ମନେହେଉଛି, ଯେପରି ମୋ'ର ସୁବର୍ଣ୍ଣ ଶଯ୍ୟାର ଉପରେ କଙ୍କର ଚୂର୍ଣ୍ଣ ଶବାଧାରର ଆବରଣରେ ପରିଣତ ହୋଇଛି । ମୋର ପିତା ଓ ମୁଁ ଯେପରି ସମୁଦ୍ରରେ ଜଳମଗ୍ନ ତରୀ । ଏକ ନିର୍ଜନ ଦ୍ୱୀପରେ ଉପସ୍ଥିତ ହୋଇଛୁ । ଆମ ନିକଟକୁ ଆଗତ ସମ୍ବାଦ ସବୁ

ଯେପରି ଏକ ବିରାଟ ନୌବାହିନୀର ବାତ୍ୟାବିକ୍ଷୁବ୍ଧ ଧ୍ୱଂସୀଭୂତ ଯାନର ଭଗ୍ନ ଅଂଶ ! କିନ୍ତୁ ଆଉରଙ୍ଗଜେବଙ୍କ ଘୃଣା ଯେପରି ପିତାଙ୍କ ଶରୀରରେ ନୂତନ ଜୀବନୀଶକ୍ତି ସଞ୍ଚାର କରି ଦେଇଥିଲା ।

ଅଦୂରରେ ଖାଜୁଆର୍ ପ୍ରାନ୍ତରରେ ନୂତନ ସମ୍ରାଟ ଓ ଶାହ ସୁଜାଙ୍କ ଯୁଦ୍ଧ ଆରମ୍ଭ ହେଲା । କି ଭୀଷଣ ସଂଗ୍ରାମ ! ଆଉରଙ୍ଗଜେବଙ୍କ ହସ୍ତୀର ଚତୁଃପାର୍ଶ୍ୱରେ ଶରବୃଷ୍ଟି ଚାଲିଛି । ସାମୁଗଡ଼ର ପ୍ରାନ୍ତର ପରି ଏଠାରେ ମଧ୍ୟ ମୃତ୍ୟୁର ସମ୍ମୁଖୀନ ହେବାକୁ ପଡ଼ିଲା । ବିଜୟୀ ଶତ୍ରୁଦଳରେ ବିଶ୍ୱାସଘାତକଙ୍କ ଅଭାବ ନ ଥିଲା । ଯେତେବେଳେ ଆଉରଙ୍ଗଜେବ ହସ୍ତୀପୃଷ୍ଠରୁ ଅବତରଣ କଲେ, ମୀରଜୁମ୍ଲା ଚିତ୍କାର କରି ଉଠିଲେ— "ହସ୍ତୀପୃଷ୍ଠରେ ଅପେକ୍ଷା କରନ୍ତୁ ।" ଆଉରଙ୍ଗଜେବ ହସ୍ତୀପୃଷ୍ଠରୁ ଅବତରଣ କଲେ ନାହିଁ । ସିଂହାସନ ଅଭିମୁଖେ ଅଗ୍ରସର ହେବା ପାଇଁ ସାମୁଗଡ଼ ହିଁ ଆଉରଙ୍ଗଜେବଙ୍କୁ ଶିକ୍ଷା ଦେଇଥିଲା । ସେହି ପୁଣି ବିଶ୍ୱାସଘାତକ ସୁଜାଙ୍କୁ ପରାମର୍ଶ ଦେଲା—ହସ୍ତୀପୃଷ୍ଠରୁ ଅବତରଣ କରନ୍ତୁ ! ଯଦିଓ ଦାରାଙ୍କ ଦୁର୍ଭାଗ୍ୟର ଇତିହାସ ସୁଜାଙ୍କୁ ଅଜ୍ଞାତ ନ ଥିଲା, ଭାଗ୍ୟହୀନ ସୁଜା ହସ୍ତୀପୃଷ୍ଠରୁ ଅବତରଣ କଲେ । ତତ୍‌କ୍ଷଣାତ୍ ତାଙ୍କ ସୈନ୍ୟଦଳରେ ବିଭ୍ରାନ୍ତି ସୃଷ୍ଟି ହେଲା । ସୈନ୍ୟଗଣ ପଳାୟନ କରିବାକୁ ଲାଗିଲେ । ବିଜୟର ଚରମ ମୁହୂର୍ତ୍ତରେ ସୁଜା ଆଉରଙ୍ଗଜେବଙ୍କ ନିକଟରେ ପରାଜିତ ହେଲେ ।

ମୋର ଲେଖନୀ ଶ୍ରାନ୍ତ ହୋଇ ଆସୁଛି । ଏହି କେତୋଟି ଘଟଣା ଶାହାଜାହାନଙ୍କ ସାମ୍ରାଜ୍ୟର ଭିତ୍ତି ଚିରଦିନ ପାଇଁ ଶିଥିଳ କରିଦେଲା । ପିତା ଶାହାଜାହାନ ପୁତ୍ରମାନଙ୍କୁ ବିଶ୍ୱାସ କରୁଥିଲେ । ସେହି ପିତା ପୁତ୍ରଙ୍କ ସଂଗ୍ରାମର ଧ୍ୱନି ହେଲା, ଇୟାତାକ୍‌ତ, ଇୟାତବୁତ୍ ( ହେଉ ସିଂହାସନ, ନ ହେଲେ ସମାଧି ।) ଶାହ ସୁଜାଙ୍କ ଭାଗ୍ୟରେ ସମାଧି ଲାଭ ମଧ୍ୟ ହେଲନାହିଁ । ଆଶ୍ରୟ ପାଇଁ ସେ ବ୍ରହ୍ମଦେଶ ପଳାୟନ କରିଥିଲେ । ସେଠାର ରାଜା ତାଙ୍କ ପଶ୍ଚାଦ୍‌ଧାବନ କରି ତାଙ୍କୁ ବନ ମଧ୍ୟକୁ ନେଇଗଲେ । ରାଜାଙ୍କ ଅନୁଚରଙ୍କ ଛୁରିକାଘାତରେ ତାଙ୍କୁ ହତ୍ୟା କରାଗଲା । ତାଙ୍କ ମୃତ ଦେହ ବନ୍ୟଜନ୍ତୁଙ୍କ ଆହାରରେ ପରିଣତ ହେଲା । ରାଜପୁତ୍ର ସୁଜା ହିଁ ପ୍ରଥମେ ସାମ୍ରାଜ୍ୟର ଶାନ୍ତି ଭଙ୍ଗ କରିଥିଲେ । କର୍ମଫଳ ନା ଅଦୃଷ୍ଟ ?

●

## ଦ୍ୱାଦଶ ସ୍ତବକ

ଖଜୁହାରେ ଶୁଜାଙ୍କ ପତନ ପରେ ଦାରାଙ୍କ କାହାଣୀ ଆରମ୍ଭ ହେଲା । ଏଇଠାରେ ମୋ କାହାଣୀର ଆରମ୍ଭ ।

× × × ×

ସେଦିନ ଥିଲା ଏକ ହଜାର ଅଣସ୍ତରି ହିଜରୀ ଜମାଦିଉଲ୍-ଆଓୱାଲ (ଖ୍ରୀ: ୧୬୫୯ ) । ପୂର୍ବ ବ୍ୟବସ୍ଥା ଅନୁସାରେ, ଦାରା, ଯଶୋବନ୍ତ ସିଂହଙ୍କ ସୈନ୍ୟଦଳ ସଙ୍ଗେ ଆଗ୍ରା ପଥରେ ମିଳିତ ହେବା ପାଇଁ ତାଙ୍କ ନୂତନ ସୈନ୍ୟବାହିନୀ ସହ ଗୁଜୁରାଟରୁ ଅଭିଯାନ ଆରମ୍ଭ କଲେ । ରାଜା ଯଶୋବନ୍ତ ସିଂହଙ୍କ ସାହାଯ୍ୟ ବ୍ୟତୀତ ଦାରାଙ୍କ ପକ୍ଷରେ ଆଉରଙ୍ଗଜେବଙ୍କୁ ପ୍ରତିହତ କରିବା କିମ୍ବା ସିଂହାସନ ଉଦ୍ଧାର କରିବାର କୌଣସି ସମ୍ଭାବନା ନ ଥିଲା । କିନ୍ତୁ ମୋ ପିତାଙ୍କ ବିଶ୍ୱସ୍ତ ସାମନ୍ତ ଯଶୋବନ୍ତ ସିଂହ ମଧ୍ୟ ପ୍ରତିଶ୍ରୁତିର ମର୍ଯ୍ୟାଦା ରକ୍ଷା କଲେ ନାହିଁ । ଆଉରଙ୍ଗଜେବଙ୍କ ଇନ୍ଦ୍ରଜାଲରେ, ଚକ୍ରଜାଲରେ ବା ଅର୍ଥଜାଲରେ ଧରା ନ ପଡ଼ିବେ, ଏପରି କେହି ନ ଥିଲେ ।

ଦାରା ଏକ କ୍ଷୁଦ୍ର ପାର୍ବତ୍ୟ ଉପତ୍ୟକାରେ ଆଜ୍‌ମୀର ସମୀପରେ ଶିବିର ସ୍ଥାପନ କଲେ ଏବଂ ଆତ୍ମରକ୍ଷା ଉଦ୍ଦେଶ୍ୟରେ ସେଠାରେ କେତୋଟି ପରିଖା ଖନନ କରାଇଲେ । ଆଉରଙ୍ଗଜେବ ଉପସ୍ଥିତ ହୋଇ ଦେଖିଲେ, ଆକ୍ରମଣ ଅସମ୍ଭବ । ଆଉରଙ୍ଗଜେବ ନୂତନ ପନ୍ଥା ଅବଲମ୍ବନ କଲେ । ଅତ୍ୟନ୍ତ ବିଶ୍ୱାସୀ ସମ୍ଭ୍ରାନ୍ତ ଦିଲ୍‌ଓୟାର୍ ଖାଁ ପୂର୍ବରୁ ଧର୍ମ ନାମରେ ଆଉରଙ୍ଗଜେବଙ୍କ ପକ୍ଷରେ ଯୋଗ ଦେଇଥିଲେ । ଆଉରଙ୍ଗଜେବ ଦିଲ୍‌ଓୟାର୍ ଖାଁଙ୍କୁ ଦାରାଙ୍କ ନିକଟକୁ ପତ୍ର ଲେଖିବାକୁ କହିଲେ । ସେ ପତ୍ରରେ ଲିଖିତ ହେଲା, "ମୁଁ କୋରାଣ ସ୍ପର୍ଶ କରି କହୁଛି ଯେ, ଯୁଦ୍ଧ ସମୟରେ ଆଉରଙ୍ଗଜେବଙ୍କ ପକ୍ଷ ତ୍ୟାଗ କରି ଶାହାଜାଦାଙ୍କ ସଙ୍ଗେ

ଯୋଗ ଦେବ ।" ଦାରା ସେହି ପତ୍ରରେ ବିଶ୍ୱାସ କରି ତାଙ୍କ ସୈନ୍ୟମାନଙ୍କୁ ଆଦେଶ ଦେଲେ, ସେମାନେ ଯେପରି ଦିଲ୍‌ଓୟାର୍ ଖାଁଙ୍କ ସୈନ୍ୟଦଳ ଉପରେ ଆକ୍ରମଣ ନ କରନ୍ତି !

ଯୁଦ୍ଧର ପୂର୍ବଦିନ ଆଉରଙ୍ଗଜେବଙ୍କ ଜ୍ୟୋତିଷ ଭବିଷ୍ୟତବାଣୀ କଲେ ଯେ, ଆକାଶର ଜ୍ୟୋତିଷ୍କମଣ୍ଡଳୀ ସମ୍ରାଟଙ୍କ ସେନାଧ୍ୟକ୍ଷମାନଙ୍କ ଦୁର୍ଭାଗ୍ୟ ସୂଚିତ କରୁଛି । ଆଉରଙ୍ଗଜେବଙ୍କ ସେନାଧ୍ୟକ୍ଷଗଣ ସେମାନଙ୍କ ଗୋପନ ମନ୍ତ୍ରଣା ସଭରେ ଏହି ସମ୍ବାଦ ଶୁଣି ଶେଖ ମୀର୍ ସମ୍ରାଟଙ୍କ ହସ୍ତୀ ଆରୋହଣ କରି ସମ୍ରାଟଙ୍କ ପାଇଁ ଜୀବନ ଉତ୍ସର୍ଗ କରିବାର ଅନୁମତି ପ୍ରାର୍ଥନା କଲେ । ପ୍ରତ୍ୟୁଷର ପ୍ରଥମ ପ୍ରହରରେ ସୈନ୍ୟଗଣ ଯୁଦ୍ଧଯାତ୍ରା କଲେ । ଶେଖ୍ ମୀର୍ ଆଉରଙ୍ଗଜେବଙ୍କ ହସ୍ତୀପୃଷ୍ଠରେ ସମାସୀନ, ଆଉରଙ୍ଗଜେବଙ୍କ ଭୂଷଣ ପରିହିତ । ପ୍ରଭାତର ଅସ୍ପଷ୍ଟ ଆଲୋକରେ ସୈନ୍ୟଗଣ ନିଶ୍ଚିତ ଥିଲେ ଯେ, ସେମାନଙ୍କ ଅଧିନାୟକ ସ୍ୱୟଂ ପୁରୋଭାଗରେ ଅଛନ୍ତି । ଯୁଦ୍ଧ ଆରମ୍ଭ ହେଲା । ଦାରାଙ୍କ ଗୋଲନ୍ଦାଜ ବାହିନୀ ଶତ୍ରୁଙ୍କୁ ବିଧ୍ୱସ୍ତ କରିବାକୁ ଲାଗିଲେ । ଶେଖ୍ ମୀର ଗୁଳି ଆଘାତରେ ମୃତ୍ୟୁମୁଖରେ ପତିତ ହେଲେ । କିନ୍ତୁ ତାଙ୍କ ଶରୀରରକ୍ଷୀ ମୃତଦେହକୁ ଯଥାସ୍ଥାନରେ ନିବଦ୍ଧକରି ସୈନ୍ୟମାନଙ୍କୁ ଉତ୍ସାହିତ କରିବାକୁ ଲାଗିଲେ । ଆଉରଙ୍ଗଜେବଙ୍କ ସୈନ୍ୟଗଣ ଅଧିନାୟକଙ୍କୁ ଜୀବିତ ମନେକରି ପ୍ରାଣପଣେ ଯୁଦ୍ଧ କରିବାକୁ ଲାଗିଲେ ।

ଆଉରଙ୍ଗଜେବ ଏଥର ମଧ୍ୟ ହସ୍ତୀପୃଷ୍ଠ ତ୍ୟାଗ କଲେ ନାହିଁ··· ।

ବର୍ତ୍ତମାନ ଦିଲ୍‌ଓୟାର୍ ଖାଁଙ୍କ ସୁଯୋଗ ଉପସ୍ଥିତ । ସେ ଦାରାଙ୍କୁ ଇଙ୍ଗିତ ଦେଲେ, ତାଙ୍କ ସୈନ୍ୟମାନଙ୍କୁ ଅତିକ୍ରମ କରି ବିଆଯାଉ । ତା'ପରେ ସେ ଦ୍ୱାଦଶ ସହସ୍ର ସୈନ୍ୟ ନେଇ ଆକ୍ରମଣ ଆରମ୍ଭ କଲେ; କିନ୍ତୁ ଦାରାଙ୍କ ପକ୍ଷରେ ଯୋଗ ନ ଦେଇ ସେ ଦାରାଙ୍କ ସୈନ୍ୟମାନଙ୍କୁ କ୍ଷତବିକ୍ଷତ କରି ପକାଇଲେ । ଦାରାଙ୍କ ସମସ୍ତ ସୈନ୍ୟ ପଳାୟନ କଲେ । ସୁତରାଂ ଦାରା ଦ୍ୱିତୀୟ ବାର ପରାଜିତ ହେଲେ ।

ହତଭାଗ୍ୟ ଦାରାଙ୍କ ଦୁର୍ଭାଗ୍ୟ ଆହୁରି ଘନୀଭୂତ ହୋଇ ଆସିଲା । ଗୁଜୁରାଟର ଯେଉଁ ନଗରରୁ ଦାରା ଶୁଜୋ ଅଭିଯାନ ଆରମ୍ଭ କରିଥିଲେ, ସେଇ ନଗରୀକୁ ନିଜ ଗୃହ ମନେକରି ପ୍ରତ୍ୟାବର୍ତ୍ତନ କଲେ; କିନ୍ତୁ ତୃଷାର୍ତ୍ତ,

ଧୂଳିଧୂସରିତ ଦାରାଙ୍କ ପାଇଁ ସେ ନଗରୀ ନିଷିଦ୍ଧ ହେଲା । ସଙ୍ଗେ ସଙ୍ଗେ ଦାରାଙ୍କ ସମସ୍ତ ଆଶା ନିର୍ମୂଳ ହୋଇ ଆସିଲା । ଶିବିରରୁ ଉତ୍‌ଥିତ ନାରୀକଣ୍ଠର ଆର୍ତ୍ତନାଦ ଆକାଶ ବିଦୀର୍ଣ୍ଣ କଲା । ସେ କଣ୍ଠସ୍ୱରରେ ବିଧାତାଙ୍କ କରୁଣା ପାଇଁ କି ଆକୁଳତା ଥିଲା !

କାହିଁକି ? କାହିଁକି ଭଗବାନ୍ ମନୁଷ୍ୟର ସତ୍ତ୍ୱକୁ ଅବନମିତ କରନ୍ତି ? ଅମର ସେଇ ଆତ୍ମାକୁ ଭଗବାନ୍ ନିଜ ପାଖକୁ ନିଅନ୍ତି । ଶାହାଜାଦା ଦାରାଙ୍କ ପୁରାତନ ବନ୍ଧୁମାନେ ତାଙ୍କୁ ତ୍ୟାଗ କରିଗଲେ । ତାଙ୍କ ପରାଜୟ ପରେ ଅଧିକାଂଶ ସୈନ୍ୟ ତାଙ୍କୁ ପରିତ୍ୟାଗ କଲେ । ଆଜି ଦାରା ତାଙ୍କର ହୀନତମ ଅନୁଚର ସଙ୍ଗେ ଆଳାପ କରିବାରୁ ମଧ୍ୟ ବଞ୍ଚିତ—ସେ ଆଜି ପୃଥିବୀରେ ରିକ୍ତତମ !

ଆଉରଙ୍ଗଜେବଙ୍କ ଅନୁଚରମାନଙ୍କ ଦ୍ୱାରା ଅନୁଧାବିତ ହୋଇ ଦାରା ପାରସ୍ୟ ଅଭିମୁଖେ ଅଗ୍ରସର ହେଲେ । ତାଙ୍କ ସଙ୍ଗେ ଥିଲେ ତାଙ୍କର ତିନି ସ୍ତ୍ରୀ ନାଦିରା ବେଗମ୍, ଉଦୀପୁରି ବେଗମ୍, ରାଣାଦିଲ୍—କନ୍ୟା ଜାନିବେଗମ୍ ଏବଂ କନିଷ୍ଠ ପୁତ୍ର ଶିପାର୍ ଶୁକୋ । ତଥାପି ଦୁଇ ସହସ୍ର ଅନୁଚର ତାଙ୍କ ସଙ୍ଗ ତ୍ୟାଗ କରି ନ ଥିଲେ ।

କେଉଁଥିପାଇଁ ଦାରା ବିଶ୍ରାମ ନ କରି କ୍ରୋଶ ପରେ କ୍ରୋଶ ଅତିକ୍ରମ କରି ଯାଉଥିଲେ ? ଏଥର ଅଦୃଷ୍ଟ ତାଙ୍କ ସମ୍ମୁଖରେ ସର୍ବଶେଷ ବାଧା ସୃଷ୍ଟି କଲା । ତାଙ୍କୁ ଦୁଃଖର ଗଭୀରତମ ଗହ୍ୱରକୁ ଟାଣିନେଲା । ପାରସ୍ୟ ସୀମାନ୍ତର ଅନତିଦୂରରେ ଅତି କ୍ଷୁଦ୍ର ଧୂନ୍‌ରାଜ୍ୟ ଅବସ୍ଥିତ । ସେ ରାଜ୍ୟର ଆଫଗାନ୍ ରାଜାଙ୍କୁ ଦାରା ଅତୀତରେ ତିନିଥର ମୃତ୍ୟୁମୁଖରୁ ଉଦ୍ଧାର କରିଥିଲେ । ତାଙ୍କ ନିକଟରୁ ସାହାଯ୍ୟ ପ୍ରତ୍ୟାଶା କରି ଦାରା ଧୂନ୍‌ରାଜ୍ୟ ପରିଦର୍ଶନ କରିବାକୁ ଇଚ୍ଛା କଲେ । ଆଫଗାନ୍ ରାଜା ତାଙ୍କୁ ସାହାଯ୍ୟ ନ କରି ସପରିବାରେ କାରାଗାରରେ ଆବଦ୍ଧ କଲେ ଏବଂ ସୈନ୍ୟଦଳଠାରୁ ବିଚ୍ଛିନ୍ନ କରିଦେଲେ । ଦାରାଙ୍କ ଖୋଜାଭୃତ୍ୟ ଆଫଗାନ୍ ସୁଲତାନଙ୍କୁ ହତ୍ୟା କରି ତାଁ ପ୍ରଭୁଙ୍କୁ ଉଦ୍ଧାର କରିବା ପାଇଁ ସଂକଳ୍ପ କଲା । କିନ୍ତୁ ତା ବନ୍ଧୁକର ଗୁଳି ଲକ୍ଷ୍ୟଭ୍ରଷ୍ଟ ହେଲା । ଦାରାଙ୍କ ସମସ୍ତ ସୈନ୍ୟ କାରାରୁଦ୍ଧ ହେଲେ । ସମ୍ବାଦ ପ୍ରଚାରିତ ହେଲା ଯେ, ଆଉରଙ୍ଗଜେବଙ୍କ ସୈନ୍ୟ ଧୂନ୍‌ରାଜ୍ୟଠାରୁ ବେଶୀ ଦୂରରେ ନାହାନ୍ତି ।

ଦାରାଙ୍କ ପ୍ରଥମ ସ୍ତ୍ରୀ ନାଦିରା ବେଗମ୍, ଉଦ୍‌ଭ୍ରାନ୍ତ, କମ୍ପିତ ଏବଂ ହତାଶ ହୋଇ ପଡ଼ିଲେ । ସେ ତାଙ୍କ ସ୍ୱାମୀଙ୍କୁ ଖୁବ୍ ଭଲ ପାଉଥିଲେ । ତେଣୁ ସ୍ୱାମୀଙ୍କ ବିନା ଜୀବନଧାରଣର ଇଚ୍ଛା ସେ ତ୍ୟାଗ କଲେ । ଆଉରଙ୍ଗଜେବଙ୍କ ପାର୍ଶ୍ୱଚାରିଣୀ ରୂପେ ନିଜକୁ କଳ୍ପନା କରି ସେ ଶିହରି ଉଠିଲେ । ସେ ଚିତ୍କାର କରି ଉଠିଲେ, "ପ୍ରତିହିଂସାପିପାସୁ ଆଉରଙ୍ଗଜେବ ମୋ ସ୍ୱାମୀ ଓ ପୁତ୍ରଙ୍କ ରକ୍ତରେ ତାର ରକ୍ତପିପାସା ନିବାରଣ କରିବ ! ସେଇ ଅତ୍ୟାଚାରୀର ଜୟଯାତ୍ରା ପଥରେ ମୋର ମୃତ୍ୟୁ ତାରି ଜୟ ଚିହ୍ନ ହେବ !" ସେ ତାଙ୍କ ଅଙ୍ଗୁରୀର ବିଷ ଲେହନ କଲେ । ମୁହୂର୍ତ୍ତକ ମଧ୍ୟରେ ତାଙ୍କ ମୃତଦେହ ଭୂଲୁଣ୍ଠିତ ହେଲା । ଏପରି ଦୁର୍ଭାଗ୍ୟ, ଆଉ ଦାରାଙ୍କ ଜୀବନରେ କେବେ ଆସି ନ ଥିଲା । ନାଦିରା ବେଗମ୍ ଥିଲେ ନାରୀ କୁଳର ରତ୍ନ ।

ମୃତ୍ୟୁ-ଶିବିରରେ ତଥାପି କ୍ରନ୍ଦନ ଲିପି ଶେଷ ହୋଇ ନ ଥିଲା । ଦୁର୍ଗଦ୍ୱାରରେ ଅସ୍ତ୍ରର ଝନ୍ ଝନ୍ ଶବ୍ଦ ବାଜିଉଠିଲା । ଆଉରଙ୍ଗଜେବଙ୍କ ଅନୁଚର ଦୁର୍ଗଦ୍ୱାରରେ ଠିଆ ହୋଇ ଚିତ୍କାର କଲା "ବନ୍ଦୀ କର ।" ସେଇ ସ୍ୱର ଧ୍ୱନିର ପ୍ରତି ଦୁର୍ଗରେ ପ୍ରତିଧ୍ୱନିତ ହେଲା । ଦାରା ତରବାରି ଉତ୍ତୋଳନ କଲେ,—ତାଙ୍କର ଶେଷ ଇଚ୍ଛା, ପତ୍ନୀ ପାର୍ଶ୍ୱରେ ସଂଗ୍ରାମ କରି ନିହତ ହେବେ । କିନ୍ତୁ ଶତ୍ରୁଗଣ ତାଙ୍କୁ ବନ୍ଦୀ କଲେ, ତାଙ୍କ ହସ୍ତପଦ ଶୃଙ୍ଖଳିତ କଲେ । ତାଙ୍କର ଅନ୍ୟ ଦୁଇ ସ୍ତ୍ରୀ, ସନ୍ତାନଗଣ ଏବଂ କ୍ରୀତଦାସୀ-ମାନଙ୍କୁ ନେବା ପାଇଁ ଗୃହଟି ହସ୍ତୀ ଦୁର୍ଗଦ୍ୱାରକୁ ଆଣିତ ହେଲେ । ଦାରା ଏକାକୀ ଯେଉଁ ହସ୍ତୀରେ ଆରୋହଣ କଲେ, ତାହାର ସନ୍ଧାନ ଗୋପନ ରଖାଗଲା । ପ୍ରତ୍ୟେକ ହସ୍ତୀପୃଷ୍ଠରେ ଉନ୍ମୁକ୍ତ ବର୍ଚ୍ଛା ଓ ତରବାରି ସହ ଘାତକ ଉପବିଷ୍ଟ ରହିଲା । ବନ୍ଦୀମାନଙ୍କ ଶୋଭାଯାତ୍ରା ଭକ୍କାର ଦୁର୍ଗ ଅଭିମୁଖେ ଅଗ୍ରସର ହେଲା । ଭକ୍କାର ଦୁର୍ଗରକ୍ଷୀଗଣ ବୀରଭର ସହିତ ସଂଗ୍ରାମ କରୁଥିଲେ । ଉତ୍କୋଚ ଗ୍ରହଣ କରି ସେମାନେ ବଶ୍ୟତା ସ୍ୱୀକାର କରି ନ ଥିଲେ । ଆକ୍ରମଣରେ ପରାଭୂତ ହୋଇ ନ ଥିଲେ । ଦାରାଙ୍କ ଆଦେଶ ଭିନ୍ନ ଅନ୍ୟ କାହାରି ଆଦେଶ ସେମାନେ ପାଳନ କରିବେ ନାହିଁ । ଦାରାଙ୍କ ପ୍ରତି ଏଇ ଦୁର୍ଗବାସୀଙ୍କ ବିଶ୍ୱାସ ଏତେ ଗଭୀର ଥିଲା ଯେ, ବନ୍ଦୀ ଦାରାଙ୍କୁ ମଧ୍ୟ ବାଧ୍ୟ ହୋଇ, ସେମାନଙ୍କ ପ୍ରାଣରକ୍ଷା ନିମିତ୍ତ ଶତ୍ରୁ

ଯାଇ ଦୁର୍ଗଦ୍ୱାର ଉନ୍ମୁକ୍ତ କରିଦେବାକୁ ଅନୁରୋଧପତ୍ର ପ୍ରେରଣ କରିବାକୁ ହେଲା ।

ଗୁଳଣ ଦିନ ପରେ ବନ୍ଦୀଗଣ ଉପସ୍ଥିତ ହେଲେ । ସମଗ୍ର ପଥ ସେମାନେ ବହୁ ଅଶ୍ୱାରୋହୀ ସୈନ୍ୟ ପରିବୃତ ହୋଇ ଆସିଥିଲେ । ଦାରାଙ୍କ ଦକ୍ଷିଣ, ବାମ ଓ ପଶ୍ଚାତରେ ଉଜ୍ଜ୍ୱଳ ବର୍ମପରିହିତ ଅଶ୍ୱାରୋହୀ ବାହିନୀ ପ୍ରହରୀ ନିଯୁକ୍ତ ହୋଇଥିଲେ ।

× × × ×

ହସ୍ତୀପୃଷ୍ଠରେ ଏକ ଉନ୍ମୁକ୍ତ ହାଉଦା ଉପରେ ଶାହାଜାଦା ବୁଲନ୍ଦ ଏକବାଲ୍ ଦାରା ଶୁକୋ । ମଣିଷର କରୁଣ ଦୃଷ୍ଟି ସମ୍ମୁଖରେ ଦିଲ୍ଲୀ ରାଜପଥରେ ଏକଦା ବିଶ୍ରୁତ ଶକ୍ତିମାନ୍ ଦାରା ଶୁକୋ ଏଇ ଅପମାନାହତ ଅବସ୍ଥାରେ ଗୁଲିଛନ୍ତି । ଜଣେ ଫକୀର ଚିତ୍କାର କରି ଉଠିଲେ— "ଶାହଜାଦା ଦାରା, ତୁମେ ଯେତେବେଳେ ସ୍ୱାଧୀନ ଥିଲ; ତୁମେ ପ୍ରତ୍ୟହ ମୋତେ ଭିକ୍ଷା ଦେଉଥିଲ । ଆଜ ତୁମର ଦେବା ପାଇଁ କିଛି ନାହିଁ, ଏହା ମୁଁ ଜାଣେ ।" ତଥାପି ସମ୍ରାଟ ପୁତ୍ର ତାଙ୍କ ଛିନ୍ନ ଅଙ୍ଗାଭରଣ ଶାଲ୍ ଫକୀରଙ୍କୁ ଦାନ କଲେ । ଇହଲୋକରେ ତାଙ୍କର ସର୍ବଶେଷ ଦାନ ଅର୍ପଣ କରିବାର ଲୋଭ ସେ ସମ୍ବରଣ କରିପାରିଲେ ନାହିଁ; କିନ୍ତୁ ଅଉରଙ୍ଗଜେବ ଦାନ କରିବାକୁ ଅନୁମତି ଦେଲେ ନାହିଁ, କାରଣ ବନ୍ଦୀର ଦାନ ଦେବାର ଅଧିକାର ନିଷିଦ୍ଧ ।

ଦାରାଙ୍କ ବିଚାର ଶେଷ ହେଲା । "ମୂର୍ତ୍ତିପୂଜକ ଇସ୍‌ଲାମ୍‌ର ଶତ୍ରୁ" ଏଇ ଅପରାଧରେ ତାଙ୍କର ଶିରଚ୍ଛେଦ କରା ହେବ । ଆଉରଙ୍ଗଜେବଙ୍କ ଧର୍ମବିଶ୍ୱାସ ତାଙ୍କୁ ଖୁନ କରିଥିଲା । ଘାତକର ଆଘାତ ପୂର୍ବରୁ ଦାରା ଚିତ୍କାର କରି କହିଲେ,—"ମହମ୍ମଦ ମୋର ପ୍ରାଣ ହରଣ କରୁଛନ୍ତି— ଈଶ୍ୱରପୁତ୍ର ମୋତେ ଜୀବନ ଦାନ କରୁଛନ୍ତି ।" (୧)

ମଣିଷ ଯେତେ, ଈଶ୍ୱରଙ୍କ ପଥ ସେତିକି । ଦାରା ବହୁ ପଥରେ ଈଶ୍ୱରଙ୍କୁ ଲାଭ କରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ପାରିଲେ କି ? ମୃତ୍ୟୁ

---

(୧) ମହମ୍ମଦ୍ ମରା କାନ୍ ମି କୁଶାଦ୍,
ଇବନ୍ ଆଲ୍ଲାହ୍ ମରା ଜାନ୍ ମି ବକ୍ ଶାଦ୍ ।

ସମସ୍ତଙ୍କରେ ତାଙ୍କ ନିକଟରେ ପ୍ରତିଭାତ ହେଲା—କୌଣସି ମଣିଷ ଜଗତର ସନାତନ ନିୟମ ଅତିକ୍ରମ କରି ଯାଇ ନ ପାରେ । ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ଏପରି ଏକ ବନ୍ଧନ ଅଛି, ଯାହା ଭାଷାରେ ପୂର୍ଣ୍ଣ ରୂପେ ପ୍ରକାଶିତ ହୋଇ ନ ପାରେ ।

ଦାରା ! ପୃଥିବୀର ଶେଷ ଦିନ ପର୍ଯ୍ୟନ୍ତ ଆଲ୍ଲାହ୍ ତୁମ ଉପରେ କରୁଣା ବର୍ଷଣ କରନ୍ତୁ ।

ଦାରାଙ୍କ ଶିରଚ୍ଛେଦ କରାହୋଇଛି; କିନ୍ତୁ ତାଙ୍କ ସ୍ତ୍ରୀ ଓ ପୁତ୍ରଗଣ ତଥାପି ଜୀବିତ ଅଛନ୍ତି । ଆଉରଙ୍ଗଜେବ ସ୍ୱୟଂ ସେଇ ମୁଣ୍ଡ ପରୀକ୍ଷା କରି ଦେଖିଛନ୍ତି ! ତା'ପରେ ଶାହାଜାହାନଙ୍କ ନିକଟକୁ କାରାଗାରକୁ ସେଇ ମୁଣ୍ଡ ପ୍ରେରିତ ହୋଇଛି ।

× × × ×

ଆଉରଙ୍ଗଜେବ ଉଦିପୁରୀ ବେଗମଙ୍କୁ ସାକ୍ଷାତ୍ ପାଇଁ ଆମନ୍ତ୍ରଣ କଲେ । ସେ ଥିଲେ ଜର୍ଜିୟା ଦେଶର ଖ୍ରୀଷ୍ଟିୟାନ୍ କନ୍ୟା । ଉଦିପୁରୀ ଆଉରଙ୍ଗଜେବଙ୍କ ଆଦେଶ ପାଳନ କଲେ । ଆଉରଙ୍ଗଜେବ ତାଙ୍କୁ ବିବାହ କଲେ । କିନ୍ତୁ ରାଣାଦିଲ୍ ମାତଜାଗ୍ଣାୟୀ ନର୍ତ୍ତକୀ । ପତ୍ରର ଉତ୍ତରରେ ସେ ଆଉରଙ୍ଗଜେବଙ୍କୁ ଜିଜ୍ଞାସା କଲେ, "ଜାହାଁପନା, କେଉଁଥିପାଇଁ ମୋତେ ଡକାଇଛନ୍ତି ?" ସମ୍ରାଟ ଉତ୍ତର ଦେଲେ, ସେ ରାଣାଦିଲ୍‌ଙ୍କୁ ବିବାହ କରିବା ପାଇଁ ଚାହାନ୍ତି । ରାଣାଦିଲ୍ ଲେଖିଲେ—"ମୋ ମଧ୍ୟରେ ଏପରି କ'ଣ ଅଛି, ଯାହା ସମ୍ରାଟଙ୍କୁ ସନ୍ତୁଷ୍ଟ କରିପାରେ ।" ସମ୍ରାଟ ଉତ୍ତର ଦେଲେ, "ତୁମର ଘନକୃଷ୍ଣ କେଶରାଶି ମୋତେ ମୁଗ୍ଧ କରିଛି ।" ତତ୍‌କ୍ଷଣାତ୍ ରାଣାଦିଲ୍ ତାଙ୍କ କେଶରାଶି କର୍ତ୍ତନ କରି ଆଉରଙ୍ଗଜେବଙ୍କ ନିକଟକୁ ପ୍ରେରଣ କରି ପତ୍ର ଲେଖିଲେ-"ଜାହାଁପନା, ଏଇ ସେଇ ସୁନ୍ଦର କେଶରାଶି । ଏହାକୁ ପାଇବା ପାଇଁ ଆପଣ ଚାହୁଁଥିଲେ । ମୋତେ ଶାନ୍ତିରେ ଜୀବନଯାପନ କରିବାକୁ ଦିଅନ୍ତୁ ।"

ପୁଣି ଆଉରଙ୍ଗଜେବ ଲେଖିଲେ, "ମୁଁ ତୁମକୁ ବିବାହ କରିବାକୁ ଚାହେଁ । ତୁମର ରୂପ ଅତୁଳନୀୟ । ମୁଁ ତୁମକୁ ମୋର ଅନ୍ୟତମ ସାମ୍ରାଜ୍ଞୀ ବୋଲି ମୁଁ ମନେ କରିବି । ତୁମେ ମୋତେ ଶାହାଜାଦା ଦାରା ବୋଲି କଳ୍ପନା କର ।"

ରଣାଦିଲ ଏକ ଛୁରିକା ଆଘାତରେ ତାଙ୍କ ସୁନ୍ଦର ମୁଖ କ୍ଷତବିକ୍ଷତ କରିଦେଲେ । ତା'ପରେ ଏକ ରକ୍ତାକ୍ତ ବସ୍ତ୍ର ଆଉରଙ୍ଗଜେବଙ୍କ ନିକଟକୁ ପଠାଇଦେଲେ । ସେଥି ସଙ୍ଗେ ସଙ୍ଗେ ଏକ ପତ୍ର ଲେଖିଲେ, "ସମ୍ରାଟ ମୋର ଯେଉଁ ସୌନ୍ଦର୍ଯ୍ୟ ଲୁବ୍ଧାନ୍ତ, ସେ ସୌନ୍ଦର୍ଯ୍ୟ ଆଜି ନାହିଁ । ଯଦି ସମ୍ରାଟ ମୋର ରକ୍ତ ଲୁବ୍ଧାନ୍ତ, ତେବେ ରକ୍ତାକ୍ତ ଏଇ ବସ୍ତ୍ରରେ ମୋ ରକ୍ତଚିହ୍ନ ଦେଖି ପାରନ୍ତି । ଆପଣଙ୍କ ତୃପ୍ତି ପାଇଁ ମୁଁ ମୋର ସମସ୍ତ ରକ୍ତପାତ କରିବାକୁ ପ୍ରସ୍ତୁତ ।"

ଆଉରଙ୍ଗଜେବ ରଣାଦିଲ୍‌ଙ୍କ ଦୃଢ଼ଚରିତ୍ରତା ସମ୍ମୁଖରେ ପରାଜୟ ସ୍ୱୀକାର କରିଥିଲେ । କେତେକ ଦିନ ଶୋକାବଦ୍ଧ ଜୀବନଯାପନ କରି ରଣାଦିଲ୍ ମୃତ୍ୟୁର ଅନ୍ୟ ପାର୍ଶ୍ୱରେ ତାଙ୍କ ସ୍ୱାମୀଙ୍କ ସଙ୍ଗେ ମିଳିତ ହେଲେ । ସେ ଯଥାର୍ଥରେ ଥିଲେ ଭାରତବର୍ଷର ଦୁହିତା, ହିନ୍ଦୁକନ୍ୟା ।

ଦାରାଙ୍କ କନ୍ୟା ସୁନ୍ଦରୀ ଜାନି ବେଗମ୍‌ଙ୍କୁ ମୋ ଭଉଣୀ ରୋଶେନାରାଙ୍କ ନିକଟକୁ ପ୍ରେରଣ କରା ହୋଇଥିଲା । ଦାରାଙ୍କ ମୃତ୍ୟୁ ପରେ, ରୋସେନାରା ବିଜୟିନୀର ଗୌରବରେ ଏକ ବିରାଟ ଭୋଜିର ବ୍ୟବସ୍ଥା କରିଥିଲେ । ରୋଶେନାରା ଏଇ ପିତୃମାତୃହୀନ ବାଳିକା ପ୍ରତି ଅତ୍ୟନ୍ତ ନୃଶଂସ ବ୍ୟବହାର କରିଥିଲେ । ଜାନିବେଗମ୍ ପ୍ରତିଦିନ ଶୀର୍ଣ୍ଣତର ହୋଇ ଆସିଲା । ତା'ପରେ ଦିନେ ସମ୍ରାଟ ଆଉରଙ୍ଗଜେବ ତାକୁ ଆଗ୍ରା ଦୁର୍ଗକୁ ମୋ ନିକଟକୁ ପଠାଇଦେଲେ । ସେଦିନଟି ଥିଲା ମୋ ପାଇଁ ଆନନ୍ଦର ଦିନ । ସେଦିନ ଅଙ୍ଗୁରିବାଗର ଉଚ୍ଛ୍ୱସିତ ଝରଣା ମୋତେ ଅତୀତ ଆନନ୍ଦ ସ୍ମରଣ କରାଇଦେଲା । ବିହଙ୍ଗମାନେ ବହୁ ଦିନବିସ୍ମୃତ ସ୍ୱରମୂର୍ଚ୍ଛନା ପୁଣି ଥରେ ଜାଗ୍ରତ କଲେ । ଯେତେଦିନ ଯାଏ ମୋଗଲ ରାଜବଂଶର ଅଗ୍ରଜ ଭ୍ରାତାମାନଙ୍କରୁ ଜଣେ ବି ବଂଶଧର ଜୀବିତ; ସେତେଦିନ ଯାଏ ଆଉରଙ୍ଗଜେବଙ୍କର ଶାନ୍ତି ନାହିଁ । ଦୁଇ ବର୍ଷ ମଧ୍ୟରେ ସମସ୍ତ ମୋଗଲ ବଂଶଧର ବନ୍ଦୀ ହେଲେ ଓ ଗୋୟାଲିୟର ଦୁର୍ଗରେ ସେମାନଙ୍କୁ ହତ୍ୟା କରାଗଲା ।

ମୁଁ ମୋ ଆତ୍ମଜୀବନୀ ନଷ୍ଟ କରିଦେବି ? ନା, ନା, ନଷ୍ଟ କରିବି କାହିଁକି ? ଏଇ ଆତ୍ମଜୀବନୀ ମୋର ରୁଦ୍ଧ କାରାର ସଖା । ଏହା ହିଁ ମୋ

ବୁକୁର ରକ୍ତ ଦେଇ ଲେଖା—ଏଥିରେ ଯେ ମୋ ଦୁଲେରଙ୍କ ସ୍ମୃତି ଜଡ଼ିତ ଅଛି । ଏହାର ପ୍ରତ୍ୟେକଟି ଶବ୍ଦ ଯେ ମୋ ହୃଦୟର ପ୍ରତିଧ୍ୱନି । ମୁଁ ଆଜି ସମ୍ରାଟ ବାବରଙ୍କ କଥାଗୁଡ଼ିକ ସ୍ମରଣ କରୁଛି । ମୋ ନିଜ ଆତ୍ମା ପରି ବିଶ୍ୱସ୍ତ ବନ୍ଧୁ ଆଉ କେଉଁଠାରେ ପାଇ ନାହିଁ । ମୋ ନିଜ ଅନ୍ତର ବ୍ୟତୀତ ଅନ୍ୟ କୌଣସି ନିର୍ଭରଯୋଗ୍ୟ ସ୍ଥାନ ପାଇ ନାହିଁ ।" ଜେସ୍‌ମିନ୍ ପ୍ରାସାଦର ଶିଳା ତଳେ ଏଇ ଛବିଗୁଡ଼ିକ ମୁଁ ଗଚ୍ଛିତ ରଖି ଦେଇଯିବି । ହୁଏତ ସୁଦୂର ଭବିଷ୍ୟତରେ ଦିନେ କେବେ ଜେସ୍‌ମିନ୍ ପ୍ରାସାଦ ଧ୍ୱଂସ ହୋଇଯିବ । ସେତେବେଳେ ମୋର ଏଇ ଆତ୍ମଜୀବନୀ ପଥରର ଧ୍ୱଂସସ୍ତୂପ ମଧ୍ୟରୁ ମଣିଷର ଦୃଷ୍ଟିଗୋଚର ହେବ । ମଣିଷ ଜାଣିବ, ସମ୍ରାଟ ଶାହାଜାହାନଙ୍କ କନ୍ୟା ପରି ଧନୀ, ରିକ୍ତା ଆଉ କେହି ନ ଥିଲେ ।

× × × ×

ତାଜମହଲକୁ ଯିବା ପଥରେ ଆଉରଙ୍ଗଜେବ ଯେଉଁ ମସ୍‌ଜିଦରେ ପ୍ରାର୍ଥନା କରୁଥିଲେ, ମୁଁ ତାହାକୁ ଝାଲର ଏବଂ ଗାଲିଚା ଦେଇ ଶୋଭିତ କରିଛି । ମୁଁ ଦୁର୍ଗ ଅଭ୍ୟନ୍ତରରେ ଆଉରଙ୍ଗଜେବଙ୍କ ସଙ୍ଗେ ସାକ୍ଷାତ୍ କରିବା ପାଇଁ ପ୍ରସ୍ତୁତ ହେଉଛି । ତାଙ୍କ ପାଇଁ ମଣିମୁକ୍ତାରେ ପୂର୍ଣ୍ଣ ଏକ ସ୍ୱର୍ଣ୍ଣପାତ୍ର ସଙ୍ଗରେ ନେଇ ଯିବି । ତାହା ତାଙ୍କର ବହୁଦିନର ସଞ୍ଚିତ ସମ୍ପତ୍ତି । ଆଉ ମଧ୍ୟ ସଙ୍ଗରେ ନେବି କ୍ଷମା, ଯେଉଁ କ୍ଷମା ସେ ବହୁବାର ପିତାଙ୍କ ନିକଟରେ ଭିକ୍ଷା କରିଛନ୍ତି; କିନ୍ତୁ ପିତା ତାଙ୍କୁ ସେ କ୍ଷମା ଦେଇନାହାନ୍ତି । ମୁଁ ପିତାଙ୍କ ପକ୍ଷରୁ ତାଙ୍କୁ କ୍ଷମା କରିବି । ମୁଁ ତାଙ୍କ ନିକଟକୁ ଏକ ପତ୍ର ଲେଖିଛି । ସେ ପତ୍ରରେ ମୋ ମୁମୂର୍ଷୁ ପିତାଙ୍କର ପୁତ୍ର ନିକଟରେ ଶେଷ ଇଚ୍ଛା ବିଷୟରେ ମୋ ଭାଷାରେ ଲେଖିଛି । ମୃତ୍ୟୁ ପୂର୍ବରୁ ପିତା ସ୍ନେହରେ ଥରେ ତାଙ୍କ ପୁତ୍ରକୁ ଦେଖିବାକୁ ଚାହିଁଥିଲେ ।

ଏଇ ଗୋୟାଲିୟର ଦୁର୍ଗରେ ହିଁ ଆଉରଙ୍ଗଜେବଙ୍କ ପୌତ୍ର ସୁଲ୍‌ତାନ୍ ମହମ୍ମଦଙ୍କୁ "ଖାପୀର" ସରବତ ପାନ କରାଇ ଦିଆଯାଇଥିଲା, କାରଣ ତାଙ୍କର ଆତ୍ମସମ୍ମାନବୋଧ ଥିଲା ।

ମାତ୍ର କୋରାଣର ନିର୍ଦ୍ଦେଶ କୌଣସି ମଣିଷକୁ ବିନା ଦୋଷରେ ଶାସ୍ତି ଦେବା ଅନୁଚିତ । ଘୋଷଣା କରାଗଲା—ମୁରାଦ୍ ଥରେ ଏକ ନିର୍ଦ୍ଦୋଷ

ବ୍ୟକ୍ତିକୁ ହତ୍ୟା କରିଥିଲେ । ଅଭିଯୋଗକାରୀ ଉପସ୍ଥିତ ହେଲେ । ହତ୍ୟାର ଅପରାଧରେ ମୁରାଦ ପ୍ରାଣଦଣ୍ଡରେ ଦଣ୍ଡିତ ହେଲେ । ମୁରାଦଙ୍କ ଦୋଷ ଅନୁସନ୍ଧାନ କରିବା ଏବଂ ପ୍ରମାଣ କରିବା ହିଁ ଆଉରଙ୍ଗଜେବଙ୍କର ପ୍ରୟୋଜନ ଥିଲା ।

ବନ, ପର୍ବତ, ଅରଣ୍ୟରେ ବହୁ କଷ୍ଟ ଭୋଗିବା ପରେ ସୁଲେମାନ ଶୁକୋ ବିଶ୍ୱାସଘାତକ କର୍ତ୍ତୃକ ପ୍ରତାରିତ ହୋଇ ଆରଙ୍ଗଜେବଙ୍କ ସମ୍ମୁଖକୁ ଆନୀତ ହେଲେ । ଏଇ ସୁଗଠିତ ତରୁଣ ଯୋଦ୍ଧା ଯେତେବେଳେ ପିତୃହନ୍ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ, ରାଜଦରବାରରେ ଏକ ଅସ୍ଫୁଟ ଆଲୋଡ଼ନ ସୃଷ୍ଟି ହେଲା ଏବଂ ଅନ୍ତଃପୁରରେ ଅବଗୁଣ୍ଠନର ଅନ୍ତରାଳରେ ବହୁ ଅଶ୍ରୁପାତ ହୋଇଥିଲା । ସୁଲେମାନ ଏବଂ ସମ୍ରାଟଙ୍କ ରକ୍ତ ଏକ । ତାଙ୍କୁ ହତ୍ୟା କରିବା ପୂର୍ବରୁ 'ପାପୀର' ସରବତ୍ ପାନର ଅପମାନରୁ ନିଷ୍କୃତି ଦିଆଯାଇ ପାରି ନ ଥାନ୍ତା କି ?

ଏଇ ବୀରପୁରୁଷ ପ୍ରାର୍ଥନା କରିଥିଲେ, "ଦାଦା, ମୋତେ ହତ୍ୟା କର, କିନ୍ତୁ ମୋତେ 'ପାପୀର' ସରବତ ପାନ କରିବାକୁ ଦିଅ ନାହିଁ । ତୁମ ନିକଟରେ ଏଇ ଅନୁଗ୍ରହ ପ୍ରାର୍ଥନା କରୁଛି ।" ଆଉରଙ୍ଗଜେବ କୋରାଣ ସ୍ପର୍ଶ କରି ପ୍ରତିଶ୍ରୁତି ଦେଇଥିଲେ, "ତୁମକୁ 'ପାପୀର' ବିଷ ଦିଆଯିବ ନାହିଁ ।" କିନ୍ତୁ ପ୍ରଥମ ଦିବସରେ ହିଁ ଗୋୟାଲିୟର ଦୁର୍ଗରେ ସୁଲେମାନ ଶୁକୋଙ୍କୁ 'ପାପୀର' ବିଷାକ୍ତ ସର୍ବତ ପାନ କରିବାକୁ ଦିଆଗଲା । ଏକମାସ ପରେ ତାଙ୍କୁ ହତ୍ୟା କରାଗଲା ।

କିଏ ଯେପରି ଆଗ୍ରା ଉପରେ ଶୁଭ୍ର ଉଷ୍ଣବାଷ୍ପ ଆଚ୍ଛାଦନ ବସ୍ତ୍ର ପରି ବିଛାଇ ଦେଇଛି । କାଶ୍ମୀର ପରିଦର୍ଶନ ପାଇଁ ମୁଁ କେତେଥର ଇଚ୍ଛା ନ କରିଛି ! ସେଠାରେ ଦେବଦାରୁ ବୃକ୍ଷ ଅରଣ୍ୟର ରକ୍ଷୀ ପରି ପର୍ବତ ଶିଖରରେ ଦଣ୍ଡାୟମାନ । ହରିଦ୍ରାଭ ରକ୍ତିମୁଖା ବନପୁଷ୍ପଗଣି ସମସ୍ତ ବନକୁ ମଣ୍ଡିତ କରିଛି । ସେ ବନ କେବେ ମଣିଷର ରକ୍ତ ପଦ-କ୍ଷେପରେ ଦଳିତ ହୋଇ ନାହିଁ । ମୁଁ ଯଦି ସେଠାରେ ଜାଫ୍‌ରାନ୍ ଓ ଟୋଲିପଗାଥି ଅତିକ୍ରମ କରି, ଚଲ୍ଲିବାର୍ଣ୍ଣ ବୃକ୍ଷରାଜି ମଧ୍ୟ ଦେଇ ଏକ ସରୋବର ତୀରରେ କମ୍ପା ପର୍ବତରୁ ପର୍ବତାନ୍ତରରେ ଭ୍ରମଣ କରିପାରନ୍ତି !

ପର୍ବତ ଯେପରି କେଉଁ ବିରାଟ ରହସ୍ୟକୁ ଗୋପନ ରଖିବା ପାଇଁ ଆକାଶର ପ୍ରଚ୍ଛଦପଟରେ ଏକ ଅର୍ଗଳ ରଚନା କରିଛି ! ଏକ ମୃଦୁମନ୍ଦ ବାୟୁପ୍ରବାହ ଶୁଭ୍ର ତୁଷାରର ଦେଶରୁ ଭସି ଆସି ପର୍ବତ ଉପରେ ଚନ୍ଦ୍ରାର ଆବରଣ ଉନ୍ମୁକ୍ତ କରି ଏକ ନିରବଚ୍ଛିନ୍ନ ଆନନ୍ଦର ଦେଶକୁ ମୋତେ ନେଇଯିବ ।

ମୋର ବିନିଦ୍ର ରଜନୀରେ ବହୁବାର ମୁଁ ଜାଗ୍ରତ ସ୍ୱପ୍ନ ମଧ୍ୟରେ ଫତେପୁର ଶିକ୍ରିରେ ଘୂରି ଆସିଛି । ଆଜ ଫତେପୁର ଶିକ୍ରି ସବୁଠାରୁ ବେଶୀ ପରିଚିତ—କିନ୍ତୁ ଫତେପୁର ଶିକ୍ରିର ଗୌରବର ଭଗ୍ନାଂଶମାନ ମୋ ସ୍ମୃତିରେ ଲାଗି ରହିଛି । ସମ୍ରାଟ ଆକ୍‌ବରଙ୍କ ସ୍ୱପ୍ନପୁରୀ ଫତେପୁର ଶିକ୍ରି ହୁଏ ତ ଆଜି କୌଣସି ତୈମୁର ବଂଶର ଶାସନକାଳରେ ଜୀବନର ସ୍ପନ୍ଦନ ଅନୁଭବ କରିବ ନାହିଁ । ପାଳନକର୍ତ୍ତା ବିଷ୍ଣୁଙ୍କ ଆସନରେ ଧ୍ୱଂସକର୍ତ୍ତା ଶିବ କେବେ ଉପବିଷ୍ଟ ହୁଅନ୍ତି ନାହିଁ । ହୁଏତ ଏପରି ଦିନ ଆସିବ, ଯେଉଁଦିନ ଭାରତମାତାର ସନ୍ତାନ ଦିଲ୍ଲୀ ସିଂହାସନ ଆରୋହଣ କରିବ ଏବଂ ମ୍ଳେଚ୍ଛ ନରପତି ମନ୍ଦିର ଦ୍ୱାରରେ ନିଜର ଯୁଦ୍ଧାସ୍ତ୍ର ତ୍ୟାଗ କରି, ମନ୍ଦିରରେ ପ୍ରବେଶ କରିବ । ସେଇ ମହାନରେଣ ଉପଲବ୍ଧି କରିବ— ଏକମେବାଦ୍ୱିତୀୟମ୍ ।



# ଏକାଦଶ ସ୍ତବକ

[ ପାଣ୍ଡୁଲିପିର ଅଂଶଗୁଡ଼ିକ ଛିନ୍ନ ଭିନ୍ନ ଓ ଅସଂଲଗ୍ନ; କେଉଁଠି ବା ସାମାନ୍ୟ ଘଟନାର ଇଙ୍ଗିତ ମାତ୍ର । ପତ୍ର ଗୁଡ଼ିକ ପାଣ୍ଡୁଲିପି ସଙ୍ଗେ ଏକତ୍ର ଗ୍ରଥିତ ନ ଥିଲା । ମଝିରେ ଅନେକଗୁଡ଼ିଏ ପତ୍ର ନାହିଁ । ବୋଧହୁଏ ଜାହାନାରା ତାଙ୍କ ଜୀବନ କାହାଣୀ ନଷ୍ଟ କରିବାକୁ ଇଚ୍ଛା କରିଥିଲେ ଏବଂ କେତେକାଂଶ ନଷ୍ଟ କରିଥିଲେ । ପରେ ହୁଏତ ମତ ପରିବର୍ତ୍ତନ କରି ଅସଂଲଗ୍ନ ପତ୍ରସବୁ ପାଣ୍ଡୁଲିପି ପାର୍ଶ୍ୱରେ ରଖିଦେଲେ ।]

× × × ×

ମୋର ଯଦି ଘୃଣା କରିବାର ଶକ୍ତି ଥାନ୍ତା, ତେବେ ସେ ଘୃଣା ଆଓରଙ୍ଗଜେବ୍‌ଙ୍କ ପ୍ରାଣ ହରଣ ପର୍ଯ୍ୟନ୍ତ ଶାନ୍ତ ହୁଅନ୍ତା ନାହିଁ;— ଆଉରଙ୍ଗଜେବ ଯେ ବହୁ ନିରପରାଧଙ୍କ ପ୍ରାଣ ହରଣ କରିଛନ୍ତି । ଓଃ ! ସେ ତ ନିଜ ପିତାଙ୍କ ପ୍ରାଣ ହରଣ କରିବାକୁ ଚାହିଁଥିଲେ ।

ଏକଦା ସମ୍ରାଟ ଜାହାଙ୍ଗୀର ନାସୀର୍ ଉଦ୍ଦିନ ଖିଲଜୀଙ୍କ କବରରେ ପଦାଘାତ କରିଥିଲେ ଏବଂ ଆଦେଶ ଦେଇଥିଲେ, "ଶତାବ୍ଦୀର ବ୍ୟବଧାନ ପରେ ଏଇ ପିତୃହନ୍ତାର ଶବଦେହର ଯାହା କିଛି ଅବଶିଷ୍ଟାଂଶ ଅଛି, ସେସବୁ ଖନନ କରି ଏବଂ ନଦୀ ଜଳରେ ନିକ୍ଷେପ କର, କାରଣ ସେ ତାର ପିତା ମୁବାରକ ଖିଲଜୀଙ୍କୁ ପଦାଘାତରେ ହତ୍ୟା କରିଥିଲା ।"

ଯେଉଁ ବ୍ୟକ୍ତି ପ୍ରତିହିଂସାର ପ୍ରେରଣାରେ ଉଦ୍ଦୀପ୍ତ, ତାର ଜୀବନ ବିଷମୟ । ହେ ଆଲ୍ଲାହ୍ ! ତୁମେ ମୋତେ କ୍ଷମା କରିବାକୁ ଶିଖାଅ । ମୋ ମନରୁ ପ୍ରତିହିଂସାର ପ୍ରେରଣା ଦୂର କରିଦିଅ ।

ସବୁ ନିଃଶେଷ ହୋଇ ଯାଇଛି; ଆଲୋକ ଲିଭି ଯାଇଛି; ଜୀବନର ଉତ୍ସବ ଶେଷ ହୋଇଛି । ସମସ୍ତେ ଚାଲି ଯାଇଛନ୍ତି; ମୁଁ ଆଜି ଏକାକିନୀ । ମୋର କୌଣସି ସଙ୍ଗୀ ନାହାନ୍ତି । ମୁଁ ପରିତ୍ୟକ୍ତା ।

ମୋ ବାହାରେ ଶୂନ୍ୟ, ଅନ୍ତରରେ ବିରାଟ ଶୂନ୍ୟତା । ଏଇ ସମସ୍ତ ଜଗତରେ ଶୂନ୍ୟତା ଭିନ୍ନ ଆଉ କ'ଣ ଅଛି ? ଆଜ ମନେପଡୁଛି, ମୋ ସହୋଦରଗଣ ପିତୁଳା-ସୈନ୍ୟ ନେଇ କ୍ରୀଡ଼ା କରୁଥିଲେ । ଦିନେ କ୍ରୀଡ଼ା ସମୟରେ ସାମାନ୍ୟ ଆଘାତରେ ପିତୁଳାସବୁ ଭୂପତିତ ହେଲେ; ମାତ୍ର କେତୋଟି ପିତୁଳା-ସୈନ୍ୟ ତଥାପି ଠିଆ ରହିଥିଲେ । କେଉଁଟି ପଡ଼ିଗଲା, କେଉଁଟି ଠିଆ ରହିଲା; କିନ୍ତୁ ସେଥିରେ କ'ଣ ଯାଏ ଆସେ ? ସେ ଥିଲା ସାମାନ୍ୟ ପିତୁଳା-କ୍ରୀଡ଼ା ।

ଆମ ଭିତରୁ ଯେଉଁମାନେ ପଡ଼ିଗଲେ ବା ଯେଉଁମାନେ ଠିଆ ହୋଇ ରହିଲେ, ତା ମଧ୍ୟରେ ପାର୍ଥକ୍ୟ କ'ଣ ? ସମସ୍ତେ କ'ଣ ଭଗବାନଙ୍କ ହସ୍ତରେ କ୍ରୀଡ଼ା ପିତୁଳା ନୁହନ୍ତି ?

ମୋର ଏଇ ଜୀବନ—ଏକ ଭଗ୍ନ ମୁକୁଟ; କିନ୍ତୁ ସେଇ ମୁକୁଟର ପ୍ରତିଟି ଛିନ୍ନ ଅଂଶ ପରିପୂର୍ଣ୍ଣ ।

...... ଆନନ୍ଦ ? ତାହା ତ ପ୍ରାଚୀର ଗାତ୍ରରେ ପ୍ରତିଫଳିତ ଅସ୍ତ-ସୂର୍ଯ୍ୟର ରଶ୍ମି ମାତ୍ର ! ନୁହେଁ କି ?

ପ୍ରତ୍ୟେକ ମସ୍‌ଜିଦ୍ ହିଁ ଏକ ଏକ କାରାଗାର । ପ୍ରତ୍ୟେକ ରାଜପ୍ରାସାଦ ଏକ କାରଗୃହ । ଯେଉଁମାନେ ଈଶ୍ୱରଙ୍କ ନିର୍ଦ୍ଦିଷ୍ଟ ପଥରେ ପରିଭ୍ରମଣ କରନ୍ତି, ସେହିମାନେ ହିଁ ପୃଥିବୀ ଜୟ କରନ୍ତି ।

ମୋର ଏଇ ଜୀବନ ବର୍ଷା-ବାତ୍ୟା-ବିଧ୍ୱସ୍ତ ଏକ ବୃକ୍ଷପତ୍ର ମାତ୍ର, କେବଳ କେତୋଟି ତନ୍ତୁ ହିଁ ଅବଶିଷ୍ଟ ରହିଛି । ଆଜ ଅଉ ସ୍ୱର୍ଗର ମାଳମା ସେଇ ତନ୍ତୁ ମଧ୍ୟଦେଇ ଆଲୋକ ସ୍ଫୁରିତ କରିପାରିବ କି ?

ସମ୍ରାଟ୍ ଆଲମ୍‌ଗୀର ପଞ୍ଚ ପୁତ୍ରଙ୍କ ପିତା । ଆଉରଙ୍ଗଜେବ ତାଙ୍କ ପୁତ୍ରଙ୍କ ଉପରେ କମ୍ପମାନ୍ । ସୁଲତାନ ମହମ୍ମଦ ଏହା ଭିତରେ କାରାବନ୍ଦ । ଯେଉଁ ବ୍ୟକ୍ତି ଏକଦା ଯୁଦ୍ଧରତ ସୈନ୍ୟମାନଙ୍କ ମେଳରେ ଠିଆ ହୋଇ ଆଲ୍ଲାହଙ୍କୁ ପ୍ରାର୍ଥନା କରୁଥିଲେ, ଯେଉଁ ବ୍ୟକ୍ତି ମୃତ୍ୟୁକୁ ସମ୍ମୁଖରେ ଦେଖି ମଧ୍ୟ ହସ୍ତୀପୃଷ୍ଠରୁ ଅବତରଣ କରି ନ ଥିଲେ, ଆଜ ତାଙ୍କର ମେରୁଦଣ୍ଡ ଶାସ୍ତିର ଉପରେ କ୍ରୀତଦାସ ପରି ଅବନମିତ ହୋଇ ପଡ଼ିଛି ।

× × × ×

ଧନେ ମୁଁ ମୀଗ୍‌ବାଈଙ୍କ ଉଦ୍ଦେଶ୍ୟରେ ରଚିତ ତାନ୍‌ସେନଙ୍କର ଗୋଟିଏ ଗୀତ ଶୁଣି ଜାଗି ଉଠିଥିଲି । କୋଏଲ୍ ଅଙ୍ଗୁରିବାଗ୍‌ରୁ ଏକ ଗୁଚ୍ଛ ଗୋଲାପଫୁଲ ମୋତେ ଉପହାର ଦେଇଥିଲ,—ସେଦିନ ଥିଲା ମୋର ଶାନ୍ତିର ମୁହୂର୍ତ୍ତି । ଦାସୀ ଆସି ସମ୍ବାଦ ଦେଲା ଯେ, ଆଉରଙ୍ଗଜେବ ବୃନ୍ଦୀରାଜ ଛତ୍ରଶାଳଙ୍କ ପୁତ୍ର ଗ୍ରଓ ଭାଓଙ୍କୁ କ୍ଷମା ଦେଇଛନ୍ତି । ମୃତ ପିତାଙ୍କ ପ୍ରତି ଘୃଣାକ୍ରୋଧବଶ ହୋଇ ଆଉରଙ୍ଗଜେବ ପୁତ୍ର ରାଓ ଭାଓଙ୍କୁ ବହୁ ଶାସ୍ତି ଦେଇଥିଲେ । ଆଜ ପୁଣ୍ୟକୀର୍ତ୍ତି ଛତ୍ରଶାଳଙ୍କ ପୁତ୍ର ରାଓ ଭାଓ ଆଉରଙ୍ଗଜେବଙ୍କ ଶାସନକର୍ତ୍ତା ନିଯୁକ୍ତ ହୋଇଛନ୍ତି । ମୁଁ କେବେ ଏହା ଭୁଲିବ ନାହିଁ । ଏ ଅପମାନ ମୁଁ କେବେ ଭୁଲିବ ନାହିଁ । ଏହା ମାନ ବନିମୟରେ ଅପମାନ ।

× × × ×

ଆଉରଙ୍ଗଜେବ ଅନ୍ତତଃ ଜଣକୁ ଭଲ ପାଉଥିଲେ, ଏକଥା ମୁଁ ଜାଣେ । ଏକଦା ଜୈନାବାଈଙ୍କ ମୃତ୍ୟୁରେ ଆଉରଙ୍ଗଜେବ ଅଶ୍ରୁ ବିସର୍ଜନ କରିଥିଲେ । ଜୈନାବାଈ ପ୍ରେମର କ୍ରୀଡ଼ାରେ ସଙ୍ଗୀତ ମଧ୍ୟ ଦେଇ ଆଉରଙ୍ଗଜେବଙ୍କ ହୃଦୟର ଗୁପ୍ତତମ କକ୍ଷରେ ପ୍ରବେଶ କରିଥିଲେ । ଜୈନାବାଈ ପ୍ରେମ ପାଇଁ ଆଉରଙ୍ଗଜେବଙ୍କ ସ୍ୱାର୍ଥତ୍ୟାଗର କ୍ଷମତା ପରୀକ୍ଷା କରିବା ଉଦ୍ଦେଶ୍ୟରେ ପ୍ରେମ ଛଳରେ ତାଙ୍କୁ ସୁରା ଦେଇ ଅଭ୍ୟର୍ଥନା କରିଥିଲେ । ଜୈନାବାଈଙ୍କ ପ୍ରେମରେ ଆଉରଙ୍ଗଜେବ ଅନ୍ତତଃ କେତୋଟି ମୁହୂର୍ତ୍ତି ପାଇଁ ବିଶ୍ୱଜଗତ୍ ଭୁଲି ଯାଇ ପାରୁଥିଲେ । ପ୍ରେମମୟୀ ଜୈନାବାଈଙ୍କୁ ମୁଁ ଚିରକାଳ ସ୍ମରଣ କରିବ ।

× × × ×

ପିତା ଅସୁସ୍ଥ ଧନେ ପିତାଙ୍କର ମୃତ୍ୟୁ ହେବ; କିନ୍ତୁ ମୁଁ ମୋ ହସ୍ତୀଗୁଡ଼ିକ ତଥାପି ଦାନ କରିପାରୁ ନାହିଁ । ମୁଁ ମୋ କ୍ରୀତଦାସମାନଙ୍କୁ ତଥାପି ମୁକ୍ତି ଦେଇ ପାରୁ ନାହିଁ । କାରଣ ହୁଏତ ସେମାନେ ସମ୍ରାଟଙ୍କୁ ରୋଗମୁକ୍ତ କରି ଦେଇ ପାରିବେ । (୧) ମୁଁ କିନ୍ତୁ ପିତାଙ୍କ ରୋଗମୁକ୍ତି ଚାହେଁନା । ବର୍ତ୍ତମାନ ମୁଁ ମୃତ୍ୟୁକୁ ତାଙ୍କ ଆତ୍ମାର ମୁକ୍ତିଦାତା ସ୍ୱରୂପ ଆମନ୍ତ୍ରଣ କରୁଛି ।

---

(୧) ମୁସଲମାନମାନଙ୍କ ଧାରଣା ଯେ, ରୋଗୀର କଲ୍ୟାଣ ଉଦ୍ଦେଶ୍ୟରେ ଜୀବବଳି ବା ଦାନ ଅଥବା ଦାସଦାସୀଙ୍କ ମୁକ୍ତିସାଧନ କଲେ ରୋଗ ନିରାମୟ ହୁଏ ।

ମୋର ସହୋଦର ଭାଇ ଆଉରଙ୍ଗଜେବ ପ୍ରାୟତଃ ପିତାଙ୍କ ନିକଟକୁ ପତ୍ର ଲେଖୁଥିଲେ । ତାଙ୍କର ଇଚ୍ଛା ନୁହେଁ ଯେ, ପ୍ରଜାବର୍ଗ ତାଙ୍କୁ କଠୋର ଶତ୍ରୁ ବୋଲି ଆଖ୍ୟାୟିତ କରନ୍ତୁ । ବୃଦ୍ଧ ସମ୍ରାଟ ଅନେକ କଥା ଭୁଲି ପାରନ୍ତି, କିନ୍ତୁ ସେ କେବେ ଆଉରଙ୍ଗଜେବଙ୍କୁ କ୍ଷମା ଦେଇ ନାହାନ୍ତି । କାରଣ ଦାରାଙ୍କ ରକ୍ତାକ୍ତ ଛିନ୍ନମୁଣ୍ଡ ଏକଦା ତାଙ୍କ ନିକଟକୁ ପ୍ରେରିତ ହୋଇଥିଲା । ତାହା ସେ ବିସ୍ମୃତ ହୋଇ ପାରିନାହାନ୍ତି । ତା' ପରେ ସେହି ମୁଣ୍ଡ ଦୁର୍ଗର ବିପରୀତ ଦିଗରେ ତାଜମହଲରେ ପ୍ରୋଥିତ କରାହୋଇଛି । ସେ ଲିକ୍ତସ୍ମୃତି ଶାହାଜାହାନ ଆଜି ମଧ୍ୟ ଭୁଲି ନାହାନ୍ତି । ଆଉରଙ୍ଗଜେବଙ୍କ ବହୁ ଅନୁରୋଧ ସତ୍ତ୍ୱେ ସମ୍ରାଟ ତାଙ୍କୁ ମୁକୁଟମଣିର ସନ୍ଧାନ ଦେଇ ନାହାନ୍ତି ।

ବର୍ତ୍ତମାନ ମନେ ପଡ଼ୁଛି, ଦିନେ ଫତେପୁର ଶିକ୍‌ରିରେ ଭାରତ-ବର୍ଷରେ ତୈମୁର ବଂଶଧରଗଣଙ୍କ ରକ୍ତ ପଦଚିହ୍ନ ରେଖା ବିଷୟ ଚିନ୍ତା କରୁଥିଲି । ସେଇ ପଦଚିହ୍ନ ଆଜି କେତେ ବେଶୀ ରକ୍ତାକ୍ତ ହୋଇ ଉଠିଛି !

ବହୁ ଶତାବ୍ଦୀ ପୂର୍ବେ ମହମ୍ମଦ ତୁଘଲକ୍ ଦିଲ୍ଲୀର ସମ୍ରାଟ ଥିଲେ । ସେ ତାଙ୍କ ନୃଶଂସ କାର୍ଯ୍ୟଦ୍ୱାରା ପ୍ରଜାଙ୍କ ହୃଦୟରେ ଭୟର ସଞ୍ଚାର କଲେ । ଶେଷ ବିଚାର ଦିନ ମହମ୍ମଦ ତୁଘଲକଙ୍କ ଦୁଷ୍କୃତିର ପ୍ରାୟଶ୍ଚିତ୍ତ କଥା ଭାବି ଫିରଜଶାହ ମହମ୍ମଦ ତୁଘଲକଙ୍କ ନିର୍ଯ୍ୟାତିତ ଶତ୍ରୁମାନଙ୍କ ପ୍ରତି ଅତ୍ୟନ୍ତ ସଦୟ ବ୍ୟବହାର କରିଥିଲେ ଏବଂ ସେମାନଙ୍କ ଦ୍ୱାରା ଏକ କ୍ଷମାପତ୍ର ଲେଖାଇଥିଲେ । ସେଇ ପତ୍ର ସେ ମକ୍କାରେ ମହମ୍ମଦଙ୍କ ସମାଧି ମନ୍ଦିରର ଗମ୍ବୁଜ ପାର୍ଶ୍ୱରେ ରଖି ଦେଇଥିଲେ । ଶେଷ ବିଚାରର ଦିନରେ ଅତ୍ୟାଚାରିତ-ମାନଙ୍କ କ୍ଷମାପତ୍ର ହୁଏତ ଆଲ୍ଲାହଙ୍କ କରୁଣା ଉଦ୍ରେକ କରିବ ! ପତ୍ରଟି ଏବେ ବି ସେହିଠାରେ ରକ୍ଷିତ ଅଛି । (୧)

× × × ×

---

(୧) ତୈମୁର ମୃତ୍ୟୁ ପୂର୍ବରୁ ମହମ୍ମଦଙ୍କ ବଂଶଧର ଆଲବରେକାଙ୍କୁ ତାଙ୍କ ସଙ୍ଗେ କବର ଦେବା ପାଇଁ ଆଦେଶ ଦେଇଥିଲେ । ଶେଷ ବିଚାରର ଦିନ ଆଲ୍‌ବରେକା ମହମ୍ମଦଙ୍କ ନିକଟରେ ତୈମୁରଙ୍କ ମଙ୍ଗଳ ପାଇଁ ପ୍ରାର୍ଥନା କରିବେ, ଏହାହିଁ ଥିଲା ଉଦ୍ଦେଶ୍ୟ । ବାସ୍ତବିକ ଆଲ୍‌ବରେକାଙ୍କୁ ତୈମୁରଙ୍କ ସଙ୍ଗେ କବର ଦେଇ ଏକ ସଙ୍ଗେ ବସ୍ତ୍ରଦ୍ୱାରା ବାନ୍ଧି ଦିଆଯାଇଥିଲା ।

ମୁଁ ଯଦି କେବେ କାରାମୁକ୍ତ ହୁଏ ଏବଂ ଆଉରଙ୍ଗଜେବ ଯଦି କେବେ ମୋର ଉପଦେଶ ଶୁଣନ୍ତି, ତେବେ ମୁଁ ତାଙ୍କୁ ପାପ ପାଇଁ ପ୍ରାୟଶ୍ଚିତ୍ତ କରିବାକୁ ଉପଦେଶ ଦେବି । ତାଙ୍କ ନିର୍ଯ୍ୟାତିତ ଶତ୍ରୁମାନଙ୍କ ମଧ୍ୟରୁ ଅନେକେ ମୋର ନିକଟତମ ଓ ପ୍ରିୟତମ ଆତ୍ମୀୟ ଥିଲେ । ସେମାନଙ୍କ ପକ୍ଷରୁ ମୁଁ ଆଉରଙ୍ଗଜେବଙ୍କୁ କହିବି, "ରାଜ୍ୟ ଲାଭ ପାଇଁ ଆଉ ରକ୍ତପାତ କର ନାହିଁ । ଦାନବର ଦୁର୍ଗ ମନେକରି ହିନ୍ଦୁର ମନ୍ଦିର ଧ୍ୱଂସ କର ନାହିଁ । ବିଜୟୀ ଇସ୍‌ଲାମ ଜ୍ଞାନର ଆଲୋକରେ ବିକଶିତ ହେଉ । ଧ୍ୱଂସ ମଧ୍ୟରେ ଇସ୍‌ଲାମର ବିଜୟ-ଶକଟ ପରିଚାଳିତ କରନାହିଁ ।"

ମୁଁ ତାଙ୍କୁ ଆନନ୍ଦରେ ଗୋଟିଏ ବସ୍ତୁଦାନ କରନ୍ତି ଓ ସେଇ ବସ୍ତୁର ଶକ୍ତି ତାଙ୍କୁ ହିଂସ୍ରଶିକାର ରାଜ୍ୟ ଅତିକ୍ରମ କରିବା ପାଇଁ ଶକ୍ତି ଦିଅନ୍ତା ! ଯଦି ଏଇ ସମ୍ରାଟଙ୍କ ଚିତ୍ତବୃତ୍ତି ଅନ୍ୟ ପ୍ରକାର ହୋଇଥାନ୍ତା, ତେବେ ଏଇ ତୀକ୍ଷ୍ଣବୁଦ୍ଧି ଅଦମ୍ୟ ଅଧ୍ୟବସାୟୀ ରାଜକୁମାର କି ମହତ୍ ହୋଇ ନ ଥାନ୍ତେ ! ମୁଁ ତାଙ୍କ ଅନ୍ତରର ଶୁଦ୍ଧ ଆତ୍ମାର ଅସ୍ପଷ୍ଟ ଛାୟା ଦେଖିପାରୁଛି । ଗହ୍ୱର ଗଭୀର କ୍ଷୀଣ ଆଲୋକ ରେଖା ଏବଂ ଏଇ ଆଲୋକରେଖା ଉପରେ ନିର୍ଭର କରି ମୁଁ ତାଙ୍କ ହୃଦୟରେ ଭଗ୍ନୀପ୍ରୀତି ସଞ୍ଚାରିତ କରିବି ।

× × × ×

ମୋ ପିତାଙ୍କ ମୃତ୍ୟୁ ହୋଇଛି । ଏକ ଆଲୋକ ଶିଖା ପୃଥିବୀରୁ ବିଚ୍ଛିନ୍ନ ହୋଇଗଲା । ସେଇ ଆଲୋକ ଶିଖା ଅଦୃଶ୍ୟ ଲୋକରେ ପୁଣି ଜଳି ଉଠିବ । ପିତାଙ୍କ ମୃତ ଦେହକୁ ସେଇ ଚଶ୍ମୃତମର୍ମର ପ୍ରାସାଦକୁ ନିଆ-ଯାଇଛି, ଯେଉଁଠାରେ ମୋ ମାଆ ତାଙ୍କ ପାଇଁ ଅପେକ୍ଷା କରିଥିଲେ । ପ୍ରତି ସନ୍ଧ୍ୟାରେ ସେମାନଙ୍କ ସମାଧିରେ ଦୁଇଜଣଙ୍କ ପାଇଁ ଆଲୋକ ଜଳି ଉଠିବ । ଦୁଇ ଜଣଙ୍କ ପାଇଁ କୋରାଣର ଆବୃତ୍ତି କରାଯିବ ।

× × × ×

ମୃତ୍ୟୁପରେ ଶାହଜାହାନଙ୍କ ମୃତଦେହକୁ ଦୁର୍ଗର ପଶ୍ଚାତ୍ ଭାଗରେ ପ୍ରାଚୀର ଭଗ୍ନ କରି ଦ୍ୱାର ଉଦ୍‌ଘାଟନ କରି ଦିବସର ଆଲୋକ ପ୍ରତିଭାତ ହେବା ପୂର୍ବରୁ ବିନା ସମାରୋହରେ ନିଆ ଯାଇଛି । ଆଉରଙ୍ଗଜେବଙ୍କ ଭୟ ଥିଲା, ଯଦି ପ୍ରଜାକୁଳ ସେମାନଙ୍କ ସ୍ନେହମୟ ସମ୍ରାଟଙ୍କ ମୃତଦେହ

ଦର୍ଶନରେ କ୍ଷୁବ୍ଧ ହୋଇ ବିଦ୍ରୋହ କରନ୍ତୁ ! ଆଉରଙ୍ଗଜେବ ସର୍ବଦା ଶଙ୍କିତ, କିନ୍ତୁ ମୁଁ ତାଙ୍କୁ କ୍ଷମା କରିବି ।

× × × ×

ମୁଁ ପୁଷ୍ପର ନିର୍ଯ୍ୟାସ ଦେଇ ମୋ କେଶଦାମ ସିକ୍ତ କରିବି । ମୋର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଯୂଥିକାର ସ୍ନେହରେ ଅନୁଲେପନ କରିବି । ତା'ପରେ ଏକ ଶୁଭ୍ର ଶାଢ଼ୀ ପିନ୍ଧି ମୁଁ ମୋ ଭାଇଙ୍କ ସଙ୍ଗେ ସାକ୍ଷାତ୍ କରିବି । ସେଦିନ ହେବ ଭାଇ ଭଉଣୀଙ୍କ ପୁଣ୍ୟ ମିଳନର ପୁଣ୍ୟ ଦିବସ । ମନେ ପଡ଼ୁଛି, ଗୋୟାଲିୟର ଦୁର୍ଗରେ ମୋ ପିତାଙ୍କ ବଂଶଧରଗଣଙ୍କ ମସ୍ତିଷ୍କର ଶକ୍ତି ବିଲୋପ କରିବା ପାଇଁ ଆଉରଙ୍ଗଜେବ ପାନପାତ୍ରରେ ବିଷ ମିଶାଇଥିଲେ; ମୁଁ କିନ୍ତୁ ତାଙ୍କୁ ଏକ ପାନପାତ୍ର ଦେବି । ସେ ପାନପାତ୍ରରେ ବିଷ ନ ଥିବ—ଥିବ ଘୃଣା ଓ ବାସନା ବିନଷ୍ଟ କରିବାର ଅମୃତଧାରା । ସେ ପାନପାତ୍ରର ଯେଉଁ ଧାରା ନିଃସୃତ ହେବ, ତାହାର ନାମ ଦୁଃଖ' । ଆଉରଙ୍ଗଜେବ ! ମୋ'ଠାରୁ ତୁମର ଭୟର କୌଣସି କାରଣ ନାହିଁ ।

କେହି ବିଷ ପାନ କରାଇ ମୋତେ ହତ୍ୟା କରି ପାରିବେ ନାହିଁ କିମ୍ବା ବିଷପାନ କରି ମୁଁ ଆତ୍ମହତ୍ୟା କରିବି ନାହିଁ । ମୋ କବରପାର୍ଶ୍ୱରେ ଅଖଣ୍ଡ ମାରବଲର ରାଜ୍ୟ ରଚିତ ହେବ । ମୁଁ ଉନ୍ମୋଚନ କରିବି ଶାନ୍ତି—ଯେଉଁ ଶାନ୍ତି ମଣିଷ ସମାଧି ପାର୍ଶ୍ୱରେ ଆକାଂକ୍ଷା କରେ । ସେ ସମାଧିରେ ଆଜି ମଧ୍ୟ ମର୍ମର ସୌଧ ନିକଟରେ ଟୋଲିପ ଗନ୍ଧ ବିଚ୍ଛୁରିତ ହୋଇପଡ଼େ ।

ଶାରଦା ଉତ୍ସବରେ ଭାରତର ଲଳନା ଦେବତାର ଅର୍ଘ୍ୟ ରୂପେ ନଦୀର ଜଳସ୍ରୋତରେ ପ୍ରଦୀପ ଭସାଇ ଦିଏ । ମୁଁ ମଧ୍ୟ ମହାକାଳର ନଦୀରେ ଦିବ୍ୟଶକ୍ତିର ସ୍ରୋତରେ ଭସାଇ ଦେବି ମୋ ଅନ୍ତରର ଆଲୋକଶିଖା ।

